# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January 2014**


**୭୦ ଭାଗ　　୬ଷ୍ଠ ସଂଖ୍ୟା　　ପୌଷ-ମାଘ　ଜାନୁଆରୀ -୨୦୧୪**



**ପ୍ରଦୀପ କୁମାର ଜେନା,** ଭା.ପ୍ର.ସେ.
ପ୍ରମୁଖ ଶାସନ ସଚିବ

**ପ୍ରମୋଦ କୁମାର ଦାସ,** ଓ.ପ୍ର.ସେ.
ନିର୍ଦ୍ଦେଶକ

**ଡକ୍ଟର ହୁସେନ ରବିଗାନ୍ଧୀ**
ସମ୍ପାଦକ

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ
**ମାନସ ନାୟକ**

ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

ସମ୍ପାଦନା ସହଯୋଗୀ
**ଗୋବିନ୍ଦ ଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**



**ପ୍ରତିଖଣ୍ଡ : ଟ. ୫.୦୦**


---


ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

ଜାନୁଆରୀ ୨୦୧୪

# ସୂଚୀ

# ଜାତୀୟ ସଙ୍ଗୀତ



ଜନ–ଗଣ–ମନ–ଅଧିନାୟକ ଜୟ ହେ
ଭାରତ–ଭାଗ୍ୟ–ବିଧାତା
ପଞ୍ଜାବ–ସିନ୍ଧୁ–ଗୁଜରାଟ–ମରାଠା
ଦ୍ରାବିଡ଼–ଉତ୍କଳ–ବଙ୍ଗ
ବିନ୍ଧ୍ୟ–ହିମାଚଳ–ଯମୁନା–ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ–ମଙ୍ଗଳଦାୟକ ଜୟ ହେ,
ଭାରତ–ଭାଗ୍ୟ–ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– ରବୀନ୍ଦ୍ରନାଥ ଠାକୁର



# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଶ୍ରଦ୍ଧାଞ୍ଜଳି



ବୀର ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ






ଚାଖି ଖୁଣ୍ଟିଆ



ନେତାଜୀ ସୁଭାଷ ବୋଷ

# THE CONSTITUTION OF INDIA

## PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

# ସାଧାରଣତନ୍ତ୍ର ଦିବସ -୨୦୧୪ ଅବସରରେ

# HÝÉæÀÿ þææÿ¿¯ÿÀÿ Àÿæf¿¨æÁÿ

# ଡକ୍ଟର ଏସ୍.ସି. ଜମିର୍‌ଙ୍କ

# ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ !

୨୦୧୪ ମସିହା ସାଧାରଣତନ୍ତ୍ର ଦିବସ ପାଳନ ଅବସରରେ ଆପଣମାନଙ୍କୁ ମୁଁ ମୋର ସାଦର ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

୧୯୫୦ ମସିହାର ଏହି ଐତିହାସିକ ଦିବସରେ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ପରିଚୟ ପାଇଥିଲା । ଏହି ଦିବସ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଏକ ଗର୍ବ, ଗୌରବ ଓ ଆନନ୍ଦ ଉଲ୍ଲାସର ଦିବସ । ଆଜିର ଏହି ଦିବସ ଆମକୁ ସବୁବେଳେ ସ୍ୱତଃ ସ୍ମରଣ କରାଇଦିଏ ସେହି ଶହୀଦମାନଙ୍କର ତ୍ୟାଗକୁ– ଯେଉଁମାନେ କି ମାତୃଭୂମିର ସ୍ୱାର୍ଥ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଯେଉଁମାନଙ୍କର ଆତ୍ମବଳିଦାନ ଯୋଗୁଁ ଆମେ ସ୍ୱାଧୀନତାର ସ୍ୱାଦ ପାଇପାରିଛୁ, ଏହି ପବିତ୍ର ଦିବସରେ ଆମେ ସେହି ଅମର ଆତ୍ମା, ସ୍ୱାଧୀନତା ସଂଗ୍ରାମୀ ତଥା ଶହୀଦମାନଙ୍କୁ ସାଦର ସ୍ମରଣ କରୁଛୁ ।

ଏହି ପବିତ୍ର ଅବସରରେ ଆମକୁ ପୃଥିବୀର ବୃହତ୍ତମ ଗଣତନ୍ତ୍ରର ଶାସନ ବ୍ୟବସ୍ଥାର ଆଧାର ପ୍ରଦାନ କରିଥିବା ସମ୍ବିଧାନ ପ୍ରଣେତାମାନଙ୍କ ଅନବଦ୍ୟ ଅବଦାନକୁ ଆମେ ଅତ୍ୟନ୍ତ କୃତଜ୍ଞତାର ସହିତ ସ୍ମରଣ କରୁଛୁ ।

ଆମ ସମ୍ବିଧାନ– ଆମ ଦେଶର ବିଧି ବ୍ୟବସ୍ଥାର ଭିତ୍ତିଭୂମି ନିର୍ଦ୍ଧାରଣ କରୁଥିବା ମୌଳିକ ନିୟମଗୁଡିକର କେବଳ ମାତ୍ର ଏକ ସଂଗ୍ରହାବଳୀ ନୁହେଁ, ବରଂ ଏହା ଆମ ଦେଶବାସୀଙ୍କର ଅଭିଳାଷ ଓ ଆକାଂକ୍ଷା ତଥା ଉତ୍ତୁଙ୍ଗ ଗଣତାନ୍ତ୍ରିକ ଆଦର୍ଶବୋଧର ପ୍ରତିଫଳନ ।

ଜନସାଧାରଣଙ୍କ ସାର୍ବଭୌମତ୍ୱ ପ୍ରତିପାଦନରେ ସାଧାରଣତନ୍ତ୍ରର ମହତ୍ତ୍ୱ ନିହିତ । ଏହି ଦିବସରୁ ଜନସାଧାରଣଙ୍କ ସାର୍ବଭୌମତ୍ୱ ସାବ୍ୟସ୍ତ ହେଲା । ଆମେ ଆମର ଭାଗ୍ୟ ନିୟନ୍ତା ହେଲୁ । ଜାତି, ଧର୍ମ, ଲିଙ୍ଗ, ବର୍ଣ୍ଣ, ପଦପଦବୀ ଏବଂ କ୍ଷମତା ନିର୍ବିଶେଷରେ ସମସ୍ତ ନାଗରିକ ଆଇନ୍ ଆଖିରେ ସମାନ ବିବେଚିତ ହେଲେ ଏବଂ ବିଧି ପ୍ରଣୟନ ଦ୍ୱାରା ସମସ୍ତଙ୍କ ନିମନ୍ତେ ସମାନ ଆଇନଗତ ସୁରକ୍ଷା ସୁନିଶ୍ଚିତ ହେଲା ।

ଏ ପର୍ଯ୍ୟନ୍ତ ଆହରଣ କରାଯାଇଥିବା ଏବଂ କରିବାକୁ ଥିବା ସଫଳତା ଲାଭ ନିମନ୍ତେ ଯିବାକୁ ଥିବା ପଥ ସମ୍ପର୍କରେ, ଏହି ସାଧାରଣତନ୍ତ୍ର ଦିବସ ଆମକୁ ସ୍ମରଣ କରାଇଦିଏ । ପ୍ରଗତି ଏବଂ ବିକାଶ– ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । କେବଳ ଶୃଙ୍ଖଳା ଏବଂ କଠିନ ଶ୍ରମ ଜରିଆରେ ଆମ ଆଗରେ ଥିବା ଆହ୍ୱାନଗୁଡ଼ିକୁ ଆମେ ସଫଳତାର ସହ ପରିପୂରଣ କରିପାରିବା । ଓଡ଼ିଶା ପ୍ରଭୂତ ପ୍ରାକୃତିକ ସମ୍ବଳ ଓ ବିଶାଳ କାର୍ଯ୍ୟଶକ୍ତିରେ ଭରପୂର । ଏହାର ବିନିଯୋଗରେ ଓଡ଼ିଶା ଏକ ସମୃଦ୍ଧ ରାଜ୍ୟରେ ପରିଣତ ହୋଇପାରିବ । ପରନ୍ତୁ, ଆମର ବହୁ ପ୍ରତୀକ୍ଷିତ ଲକ୍ଷ୍ୟ ହାସଲ ପାଇଁ ଏକ କର୍ମ ସଂସ୍କୃତିର ବିକାଶ ଦ୍ୱାରା ସମସ୍ତ ଆହ୍ୱାନଗୁଡ଼ିକୁ ମୁକାବିଲା କରିବା ନିମନ୍ତେ ଆମକୁ ଏକନିଷ୍ଠ ଉଦ୍ୟମ କରିବାକୁ ପଡ଼ିବ । ଆଜିର ଦିବସରେ କ୍ଷୁଦ୍ର ବିଚାରଧାରାର ଊର୍ଦ୍ଧ୍ୱରେ ରହି ଓଡ଼ିଶାକୁ ଆମ ଦେଶର ଏକ ଅଗ୍ରଣୀ ରାଜ୍ୟରୂପେ ପରିଗଣିତ କରାଇବା ସକାଶେ ଓ ସମ୍ମୁଖରେ ଥିବା ଲକ୍ଷ୍ୟ ହାସଲ କରିବାକୁ ସଂକଳ୍ପବଦ୍ଧତାର ସହ ଏକତ୍ର କାମ କରିବାକୁ ଆଗେଇ ଆସିବାକୁ ମୁଁ ଆପଣ ସମସ୍ତଙ୍କୁ ନିବେଦନ କରୁଅଛି ।

**ଜୟହିନ୍ଦ୍**

# ସାଧାରଣତନ୍ତ୍ର ଦିବସ -୨୦୧୪ ଅବସରରେ

## HÝÉæÀÿ þææÿ¿ ¯ÿÀÿ þQ¿þ ¦ê

## ଶ୍ରୀ ନବୀନ ପଟ୍ଟନାୟକଙ୍କ

## ବାର୍ତ୍ତା



ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି । ଆଜି ଏହି ପବିତ୍ର ଦିବସ ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଆଜାଦ ଓ ଆମ ସମ୍ବିଧାନର ଜନକ ଡକ୍ଟର ବି.ଆର୍.ଆମ୍ବେଦକରଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ମୁଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ସହିଦ୍ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ସଂଗ୍ରାମୀମାନଙ୍କୁ ଯେଉଁମାନଙ୍କ ତ୍ୟାଗ, ସଂଗ୍ରାମ ଓ ଦେଶଭକ୍ତି ଆମ ସମସ୍ତଙ୍କୁ ପ୍ରେରଣା ଯୋଗାଇ ଚାଲିଛି ।

ଦେଶର ସୁରକ୍ଷା ଓ ଏକତା ପାଇଁ ବଳିଦାନ ଦେଇଥିବା ସହିଦ୍‌ମାନଙ୍କ ପ୍ରତି ମଧ ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

୨୬ ଜାନୁଆରୀ ଭାରତ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ସ୍ୱାଧୀନ ଭାରତ ପାଇଁ ଆମ ସମ୍ବିଧାନ ଆଜିର ଦିନରେ ହିଁ କାର୍ଯ୍ୟକାରୀ ହୋଇଥିଲା । ନୂଆକରି ସ୍ୱାଧୀନ ହୋଇଥିବା ଭାରତ ପାଇଁ ଏକ ଆଦର୍ଶ ଶାସନ ବ୍ୟବସ୍ଥାର ରୂପରେଖ ଏବଂ ଏକ ବିକଶିତ ଭାରତର ସଂକଳ୍ପ ହେଉଛି ଆମ ସମ୍ବିଧାନ । ବହୁ ଭାଷା, ବହୁ ଜାତି ଓ ବହୁ ଧର୍ମର ଲୋକ ବାସ କରୁଥିବା ଭାରତ ପରି ବିରାଟ ଦେଶକୁ ଏକତା ସୂତ୍ରରେ ଧରି ରଖିଛି ଆମ ସମ୍ବିଧାନ ।

କୋଟି କୋଟି ଭାରତୀୟଙ୍କ ଅସୀମ ତ୍ୟାଗ, ଅହିଂସ ସଂଗ୍ରାମ ଏବଂ ବଳିଦାନ ଯୋଗୁଁ ଭାରତ ସ୍ୱାଧୀନ ହୋଇଛି । ଆମ ସ୍ୱାଧୀନତା ସଂଗ୍ରାମ ସାରା ବିଶ୍ୱରେ ନୂତନ ଆଦର୍ଶ ପ୍ରତିଷ୍ଠା କରିଛି । ସତ୍ୟ, ଅହିଂସା ଏବଂ ମାନବିକ ମୂଲ୍ୟବୋଧର ଜୟଗାନ କରିଛି । ଆମ ସ୍ୱାଧୀନତା ସଂଗ୍ରାମର ମହାନ ଲକ୍ଷ୍ୟ ଓ କୋଟି କୋଟି ଭାରତୀୟଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଆମ ସମ୍ବିଧାନ ବାଟ ଦେଖାଇଛି ।

ଗଣତନ୍ତ୍ର ଓ ଧର୍ମ ନିରପେକ୍ଷ ଆଦର୍ଶ ହେଉଛି ଆମ ସମ୍ବିଧାନର ଆତ୍ମା । ଗଣତନ୍ତ୍ର ଶାସନ ବ୍ୟବସ୍ଥା ସହିତ ଏକ ଗଣତାନ୍ତ୍ରିକ ଓ ବିକାଶମୁଖୀ ସମାଜ ଗଠନ ଆମ ସମ୍ବିଧାନର ଲକ୍ଷ୍ୟ । ତା' ସଙ୍ଗେ ସଙ୍ଗେ ସବୁ ନାଗରିକଙ୍କ ଦାୟିତ୍ୱ ଓ ଅଧିକାର

ଉପରେ ମଧ୍ୟ ଏଥିରେ ଗୁରୁତ୍ୱ ଦିଆଯାଇଛି । ସମାଜର ଅବହେଳିତ ଓ ଦୁର୍ବଳ ଶ୍ରେଣୀର ଲୋକଙ୍କ ବିକାଶ, ସମସ୍ତଙ୍କ ପାଇଁ ନ୍ୟାୟ ଓ ସମାନ ସୁଯୋଗ ଆମ ସମ୍ବିଧାନର ମହତ୍ୱ ବଢାଇଛି ।

ସ୍ୱାଧୀନତା ପରେ ଭାରତରେ ଗଣତନ୍ତ୍ର ମଜବୁତ ହୋଇଛି । ଲୋକଙ୍କ ଭିତରେ ଗଣତନ୍ତ୍ର ପ୍ରତି ଗଭୀର ଆସ୍ଥା ରହିଛି । ଦେଶର ବିକାଶ ପାଇଁ ଗଣତନ୍ତ୍ର ଶାସନ ବ୍ୟବସ୍ଥା ସଫଳ ଭାବରେ କାର୍ଯ୍ୟ କରି ଚାଲିଛି । ଜନତା ତା'ର ଅଧିକାର ପ୍ରତି ଅଧିକ ସଚେତନ ହୋଇଛି । ପ୍ରଶାସନର ଉତ୍ତରଦାୟିତ୍ୱ ବଢିଛି । ବିକାଶ ପ୍ରତି ପ୍ରଶାସନ ଅଧିକ ନିଷ୍ଠାବାନ ହୋଇଛି । ଶିକ୍ଷାର ପ୍ରସାର ସମାଜରେ ପରିବର୍ତ୍ତନ ଆଣିବାରେ ସଫଳ ହୋଇଛି । ଧର୍ମ ନିରପେକ୍ଷ ଆଦର୍ଶ ପ୍ରତି ଲୋକଙ୍କ ଆସ୍ଥା ବଢିଛି ।

ଶାନ୍ତି ଓ ଅହିଂସାର ପବିତ୍ର ଭୂମି ଓଡ଼ିଶା, ଦେଶର ବିକାଶର ଏହି ଧାରା ସହିତ ନିଜକୁ ସଫଳ ଭାବରେ ଯୋଡି ପାରିଛି । ଦୁର୍ନୀତି ବିରୋଧରେ ସଂଗ୍ରାମ ଅଧିକ ଶକ୍ତିଶାଳୀ ହୋଇଛି । ବିକାଶର ସୁଫଳ ସମସ୍ତଙ୍କ ପାଖରେ ପହଞ୍ଚି ପାରିଛି । ଗଣତନ୍ତ୍ର ଓ ଧର୍ମନିରପେକ୍ଷବାଦର ଭିତ୍ତି ଅଧିକ ମଜବୁତ ହୋଇଛି । ଶାସନ ପ୍ରତି ଲୋକଙ୍କ ଭରସା ବଢିଛି ଏବଂ ପ୍ରଶାସନ ଅଧିକ ସମ୍ବେଦନଶୀଳ ହୋଇ କାମ କରୁଛି । ଜନତାର ସଶକ୍ତିକରଣ ଗୁରୁତ୍ୱଲାଭ କରିଛି । ସ୍ୱାଭିମାନର ସହିତ ବଞ୍ଚିବା ପାଇଁ ଗରିବ ଲୋକର ଆତ୍ମ ବିଶ୍ୱାସ ବଢିଛି । ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣ ଆଜି ଏକ ନୂଆ ଯୁଗର ଆରମ୍ଭ କରିଛି ।

ଏକ ବିକଶିତ ଭାରତ ଓ ଏକ ବିକଶିତ ଓଡ଼ିଶା ଆମ ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ । ବିକାଶ ପାଇଁ ଆମ ସମସ୍ତଙ୍କର ପ୍ରତିବଦ୍ଧତା ରହିବା ଜରୁରୀ । କେବଳ ବିକାଶ ଜରିଆରେ ହିଁ ଗରିବ ଲୋକ ଓ ଅବହେଳିତ ବର୍ଗ ସ୍ୱାଧୀନତାର ଅର୍ଥ ବୁଝିପାରିବେ ଏବଂ ନିଜେ ସଶକ୍ତ ହେବା ସହିତ ଶକ୍ତିଶାଳୀ ଭାରତ ଗଠନରେ ନିଜର ଯୋଗଦାନ ରଖିପାରିବେ । ତେଣୁ ବିକାଶ କ୍ଷେତ୍ରରେ ଆସୁଥିବା ସବୁ ବାଧାର ସଫଳ ମୁକାବିଲା ସହିତ ଗଣତନ୍ତ୍ର ଓ ଧର୍ମନିରପେକ୍ଷ ଆଦର୍ଶର ସୁରକ୍ଷା ପାଇଁ ସଂକଳ୍ପ ନେଇ କାମ କରିବାକୁ ମୁଁ ଆପଣମାନଙ୍କୁ ଆହ୍ୱାନ ଜଣାଉଛି ।

**ଜୟହିନ୍ଦ୍**

# ସାଧାରଣତନ୍ତ୍ର ଦିବସ -୨୦୧୪ ଅବସରରେ

# HÝÉæÀÿ þææÿ¿¯ÿÀÿ ÉÑÿ, Ó`ÿœÿæ H {àÿæLÿ Óó¨Lÿ þ¦ê

# ଡକ୍ଟର ଅରୁଣ କୁମାର ସାହୁଙ୍କ

# ବାର୍ତ୍ତା



ସାଧାରଣତନ୍ତ୍ର ଦିବସ ପାଳନର ଶୁଭ ଅବସରରେ ମୁଁ ଓଡ଼ିଶାର ସମସ୍ତ ଭାଇଭଉଣୀମାନଙ୍କୁ ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଜାନୁଆରୀ ୨୬ ତାରିଖ ଆମ ସମସ୍ତଙ୍କ ପାଇଁ ଗର୍ବ ଓ ଗୌରବର ଦିବସ । ଏହା ସ୍ମୃତି ଓ ସଙ୍କଳ୍ପର ତିଥି । ଆଜିର ଏହି ପବିତ୍ର ଦିବସରେ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବେ ଘୋଷଣା କରୁଥିବା ଏକ ସମ୍ବିଧାନ ଆମେ ନିଜ ପାଇଁ ପ୍ରଣୟନ କରିଥିଲେ । ଭାରତୀୟ ଗଣତନ୍ତ୍ର ହେଉଛି ବିଶ୍ୱର ସବୁଠାରୁ ବଡ଼ ଓ ସଫଳ ଗଣତନ୍ତ୍ର । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭାରତର ସମସ୍ତ ନାଗରିକଙ୍କ ମୌଳିକ ଅଧିକାର ହେଉଛି ଆମ ସମ୍ବିଧାନର ବିଶେଷତ୍ୱ । ଭାରତ ପରେ ସ୍ୱାଧୀନ ହୋଇଥିବା ରାଷ୍ଟ୍ରଗୁଡ଼ିକ ଆମର ଗଣତନ୍ତ୍ର ଓ ସମ୍ବିଧାନ ଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇଛନ୍ତି । ଆମ ସମ୍ବିଧାନ ବ୍ୟକ୍ତିକୁ ବ୍ୟକ୍ତି ସହିତ ଓ ରାଷ୍ଟ୍ର ସହିତ ସଂଯୁକ୍ତ କରିଛି । ଆମ ସମ୍ବିଧାନ ପୃଥିବୀର ସର୍ବବୃହତ ଲିଖିତ ଓ ଆଦର୍ଶ ସମ୍ବିଧାନ । ଭାରତୀୟ ପରମ୍ପରା ଓ ପରିବେଶ ଆଧାରରେ ଏହି ସମ୍ବିଧାନ ପ୍ରସ୍ତୁତ ହୋଇଛି । ସାମ୍ବିଧାନିକ ଶାସନର ପ୍ରାଣପିଣ୍ଡ ହେଲେ ଜନସାଧାରଣ । ସେମାନଙ୍କର ଅଧିକାରକୁ ସୁରକ୍ଷିତ ଓ ସଂରକ୍ଷିତ କରି ରଖିବାରେ ସମ୍ବିଧାନର ମୂଲ୍ୟ ଓ ମହତ୍ତ୍ୱ ପ୍ରକାଶ ପାଇଥାଏ । ସାମଗ୍ରୀକ ଭାବରେ ଭାରତର ସମ୍ବିଧାନ ଶ୍ରେଷ୍ଠ ଓ ଆଦର୍ଶ ସ୍ଥାନୀୟ । ଏହି ସମ୍ବିଧାନରେ କୋଟି କୋଟି ଭାରତୀୟଙ୍କର ସ୍ୱପ୍ନ ଓ ଅଭୀପ୍ସା ପ୍ରତିଫଳିତ ହୋଇଛି । ଆଜିର ଏହି ସ୍ମରଣୀୟ ତିଥିରେ ଆମର ବୀର ସ୍ୱାଧୀନତା ସଂଗ୍ରାମୀ ତଥା ସମ୍ବିଧାନ ପ୍ରଣେତାମାନଙ୍କ ଶ୍ରଦ୍ଧା ଓ ସମ୍ମାନର ସହ ସ୍ମରଣ କରୁଛି ।

ଯେଉଁମାନଙ୍କ ସଂଗ୍ରାମ, ସାଧନା, ତ୍ୟାଗ ଓ ବଳିଦାନ ଫଳରେ ଆମକୁ ସ୍ୱାଧୀନତା ମିଳିଛି, ସେହି ପ୍ରାତଃ ସ୍ମରଣୀୟ ସ୍ୱାଧୀନତା ସଂଗ୍ରାମୀ ତଥା ରାଷ୍ଟ୍ରନିର୍ମାତାମାନଙ୍କୁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଷ୍ଟ୍ର ନିର୍ମାଣରେ ନିଜକୁ ସମର୍ପଣ କରିବା ସହ ସେମାନଙ୍କ ଆଦର୍ଶକୁ ଆଧାର କରି କାର୍ଯ୍ୟ କରିବା ହିଁ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ବିଭିନ୍ନତା ମଧ୍ୟରେ ଏକତା ହେଉଛି ଆମର ପରମ୍ପରା ଏବଂ ଏହି ପରମ୍ପରାର ଧାରକ ଓ ବାହକ ହେବା ଆମର ପରମ କର୍ତ୍ତବ୍ୟ । ଏହା ହେବ ଆମର ଗଣତନ୍ତ୍ର ଓ ସମ୍ବିଧାନ ପ୍ରତି ସର୍ବଶ୍ରେଷ୍ଠ ସମ୍ମାନ । ସ୍ୱାଧୀନତା ପ୍ରାପ୍ତିଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ହେଉଛି ସ୍ୱାଧୀନତା ବଜାୟ ରଖିବା । ଏଥିପାଇଁ ପ୍ରତ୍ୟେକ ନାଗରିକ ନିଜ ନିଜ ସ୍ତରରେ ସଜାଗ ରହି କର୍ତ୍ତବ୍ୟ କରିବା ଉଚିତ ।

ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତ ଓ ସ୍ୱାଧୀନତା ପରବର୍ତ୍ତୀ ଭାରତ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଛି । ଭାରତ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଯଥେଷ୍ଟ ପ୍ରଗତି ହାସଲ କରିଛି । ସବୁଠାରୁ ବଡ଼କଥା ହେଲା ଭାରତରେ ଗଣତାନ୍ତ୍ରିକ ଚେତନାର ବିକାଶ ଘଟିଛି, ଯା'ର ପ୍ରତିଫଳନ ପ୍ରତ୍ୟେକ କ୍ଷେତ୍ରରେ ପରିଲକ୍ଷିତ ହୋଇଛି । ଭାରତର ସମ୍ବିଧାନ ଗଣତନ୍ତ୍ର, ନ୍ୟାୟ, ସମତା ଓ ଧର୍ମନିରପେକ୍ଷତା ଉପରେ ଗୁରୁତ୍ୱ ଦେଇ ଆସିଛି । ଆଇନର ଶାସନ ପାଇଁ ମାର୍ଗ ଦେଖାଇ ଆସିଛି । ନାଗରିକ ଅଧିକାରକୁ ସର୍ବୋଚ୍ଚ ମର୍ଯ୍ୟାଦା ପ୍ରଦାନ କରିଆସିଛି ।

ଭାରତର ଐତିହାସିକ ସ୍ୱାଧୀନତା ସଂଗ୍ରାମ ଶୌର୍ଯ୍ୟ, ବିକ୍ରମ ଓ ତ୍ୟାଗର ଏକ ଗୌରବଗାରିମାମୟ କାହାଣୀ । ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହା ଗର୍ବ ଓ ଗୌରବର କଥା ଯେ ସର୍ବଭାରତୀୟ ସ୍ତରରେ ୧୮୫୭ ମସିହାରୁ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ହୋଇଥିଲା ବେଳେ ତା'ର ବହୁ ପୂର୍ବରୁ ଓଡ଼ିଶାରେ ସ୍ୱାଧୀନତାର ସ୍ୱର ଶୁଭିଥିଲା ।

ଆମ ରାଜ୍ୟ ଓଡ଼ିଶା ଦ୍ରୁତ ପ୍ରଗତି ପଥରେ ଆଗେଇ ଚାଲିଛି । କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଭିତ୍ତିଭୂମିର ବିକାଶ ଆଦି ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଶା ସମଗ୍ର ଭାରତବର୍ଷରେ ଦୃଷ୍ଟି ଆକର୍ଷଣ କରିପାରିଛି । ଏହି ପ୍ରଗତିର ଧାରାକୁ ବଜାୟ ରଖିବା ତଥା ଆହୁରି ତ୍ୱରାନ୍ୱିତ କରିବାକୁ ବିଭିନ୍ନ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଉଛି ।

ସାଧାରଣତନ୍ତ୍ର ଦିବସ ସଙ୍କଳ୍ପର ଦିବସ । ଆସନ୍ତୁ, ଆଜିର ଦିନରେ ରାଜ୍ୟ ତଥା ଦେଶର ଉନ୍ନତି ପାଇଁ ନିଜ ଦାୟିତ୍ୱ ଓ କର୍ତ୍ତବ୍ୟକୁ ସୁଚାରୁରୂପେ ନିର୍ବାହ କରିବା ପାଇଁ ଦୃଢ଼ ଶପଥ ନେବା ।

**ଜୟହିନ୍ଦ୍**

**ସମ୍ପାଦକୀୟ**

# ସମୟର କଷଟି ପଥରରେ ଭାରତୀୟ ସାଧାରଣତନ୍ତ୍ର

୧୯୫୦ ସାଲ୍ ଜାନୁଆରୀ ମାସର ୨୬ ତାରିଖ ଦିନ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ ପାଇଁ ଗଠିତ ସମ୍ବିଧାନ ପ୍ରଣୟନ ସଭାରେ ଆମ ଦେଶର ନୂତନ ସମ୍ବିଧାନକୁ ଗ୍ରହଣ କରି ଭାରତକୁ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରଭାବେ ଘୋଷଣା କରାଯାଇଥିଲା । ସେହି ଘୋଷଣାନାମାରେ ପ୍ରାରମ୍ଭରେ ଆମେ ଭାରତବାସୀ ଭାରତକୁ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବେ ଘୋଷଣା କରିଥିଲେ ବୋଲି ଉଲ୍ଲେଖ କରାଯାଇଛି ।

ସେହିଦିନଠାରୁ ଆଜିକୁ ୬୪ବର୍ଷ ବିତିଯାଇ ୬୫ ବର୍ଷରେ ଆମ ସାଧାରଣତନ୍ତ୍ର ପଦାର୍ପଣ କରିଛି । ଏହି ୬୫ତମ ସାଧାରଣତନ୍ତ୍ର ଦିବସରେ ଆମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଅନେକ ଆହ୍ୱାନ ଓ ପ୍ରତିଆହ୍ୱାନର ସମ୍ମୁଖୀନ ହୋଇଛି । କେତେବେଳେ ବିଚ୍ଛିନ୍ନତାବାଦ ତ କେତେବେଳେ ଉଗ୍ରବାଦ, ପୁଣି କେତେବେଳେ ରାଜନୈତିକ ଅସ୍ଥିରତା ତ କେତେବେଳେ ସାଂପ୍ରଦାୟିକତା ଓ ଜାତିଆଣବାଦର ବିକଟ ଅନ୍ଧାରୀ ଗୁହା ଦେଇ ଏ ଦେଶକୁ ଅଗ୍ରସର ହେବାକୁ ପଡିଛି । କିନ୍ତୁ ସବୁ ଆହ୍ୱାନ ଓ ପ୍ରତିଆହ୍ୱାନର ସମ୍ମୁଖୀନ ହୋଇ ମଧ୍ୟ ଏ ମହାଜାତି ବିବ୍ରତ ବା ବ୍ୟସ୍ତ ହୋଇନାହିଁ । ଏଇ ଭାରତ ପୃଥିବୀର ମହାମାନବର ସାଗର କୂଳରେ ହଜାର ହଜାର ବର୍ଷ ଧରି ଯେପରି ନିଜର ସ୍ୱକୀୟ ସ୍ୱଭାବରେ ଚିର ଯୌବନା ଥିଲା, ସ୍ୱାଧୀନତା ପରେ ସାଧାରଣତନ୍ତ୍ର ଭାବେ ଘୋଷିତ ହୋଇ ବିଭିନ୍ନ ସମସ୍ୟାକୁ ସାମ୍ନା କରି ମଧ୍ୟ ଏ ଦେଶ ସେହିପରି ଚିର ଯୌବନା, ସତେଜ ଓ ସବୁଜ ରହିଅଛି ।

ବିଗତ ଶତାବ୍ଦୀର ସତୁରୀ ଦଶକରେ ଭୟାବହ ଜରୁରିକାଳୀନ ପରିସ୍ଥିତି ମଧ୍ୟ ଦେଇ ଗତିକରି ବି ଏ ଜାତି ସ୍ତିମିତ ହୋଇଯାଇ ନାହିଁ । କଂସର କାରାଗାରରେ ମୁକ୍ତିଦାତା କୃଷ୍ଣଙ୍କ ଆବିର୍ଭାବ ପରି, ଜରୁରିକାଳୀନ କରାଳ ସମୟର କାଳରାତ୍ରିରେ ବନ୍ଦୀଶାଳାରେ ଭାରତୀୟ ଗଣତନ୍ତ୍ରକୁ ଉଦ୍ଧାର କରିବା ପାଇଁ ଜନତା– କୃଷ୍ଣଙ୍କର ଆର୍ବିଭାବ ଘଟିଥିଲା ।

ପୁନରାୟ ଗତ ଶତାବ୍ଦୀର ୯୦ ଦଶକର ପ୍ରାରମ୍ଭରେ 'ମଣ୍ଡଳ–କମଣ୍ଡଳ'ର ସଂଘର୍ଷ ତଥା ବାବ୍ରିମସ୍‌ଜିଦ୍‌ର ଧ୍ୱଂସ ସାଧନର ବିଭୀଷିକାମୟ ସମୟରେ ଯେତେବେଳେ ଏ ଦେଶର ଗଣତାନ୍ତ୍ରିକ ମୂଲ୍ୟବୋଧ ଶକୁନିର କପଟ ପାଶା ଭିତରେ ବନବାସୀ ହେବାକୁ ବାଧ୍ୟ ହେଉଥିଲା, ଏ ମହାଜାତିର ସାଗର କୂଳରେ ପୁନରାୟ ସେଇ ମହାଜନତାର ଆବିର୍ଭାବ ଘଟି ଭାରତକୁ ତା'ର ଇପ୍ସିତ ଲକ୍ଷ୍ୟ ପଥରେ ଅଗ୍ରସର କରାଇ ପାରିଥିଲା ।

ଆଜି ଏ ମହାଜାତିର ସଂକଳ୍ପ, ଏଇ ପ୍ରାଚୀନ ତେଜୋଦୀପ୍ତ ଦେଶକୁ ପ୍ରଥମେ ମହାଶୂନ୍ୟ ଓ ପରେ ଚନ୍ଦ୍ର, ମଙ୍ଗଳ ଇତ୍ୟାଦି ଗ୍ରହ, ଗ୍ରହାଂତର ଯାତ୍ରା ପାଇଁ ପ୍ରଚୋଦିତ ଓ ପ୍ରୋତ୍ସାହିତ କରିପାରିଛି । ପ୍ରଗତିର ଏଇ ରାଜମାର୍ଗରେ ତଥାପି ଦାରିଦ୍ର୍ୟ, କ୍ଷୁଧା, ବ୍ୟାଧି ଓ ପରିବେଶ ପ୍ରଦୂଷଣ ପରି ବହୁବିଧ ବାଧା ରହିଅଛି, ଯାହାକୁ ଦୂର କରିବା ପାଇଁ କିଛି ବର୍ଷ ହେବ ଆଖିବୁଜି ଆର୍ଥିକ

ଉଦାରୀକରଣ ମାଧ୍ୟମରେ କେନ୍ଦ୍ର ସରକାରମାନେ ଚେଷ୍ଟା କରୁଛନ୍ତି । ଏହାର ଫଳସ୍ୱରୂପ, ଏ ଦେଶରେ ପ୍ରାଚୁର୍ଯ୍ୟର ବିକାଶ ସହିତ ତାଳ ଦେଇ କ୍ଷୁଧା ଓ ଦାରିଦ୍ର୍ୟ ବହୁଗୁଣ ଅଧିକ ବେଗରେ ବନ୍ୟାଜଳ ପରି ମାଡି ଯାଉଛି । ଅଳ୍ପ କିଛି ଲୋକ ପୃଥିବୀର ଶ୍ରେଷ୍ଠ ବିତ୍ତଶାଳୀଙ୍କ ତାଲିକାରେ ସଂଯୁକ୍ତ ହେଉଥିବା ବେଳେ ତା'ଠାରୁ ବହୁଗୁଣ ଅଧିକ ସାଧାରଣ ମଣିଷ ଦାରିଦ୍ର୍ୟ, କ୍ଷୁଧା ଓ ବ୍ୟାଧିର କରୁଣ କାହାଣୀର ନାୟକ/ନାୟିକା ସାଜି ଏକ କରୁଣ ସାମାଜିକ ସ୍ଥିତି ଭିତରେ କାଳାତିପାତ କରିବାକୁ ଏକରକମ ବାଧ୍ୟ ହୋଇଯାଉଛନ୍ତି ।

ଏତଦ୍‌ଭିନ୍ନ ଜାତିଆଣବାଦ ଓ ସାଂପ୍ରଦାୟିକତାର ଶୀକାର ହୋଇ ଅନେକ ନିରପରାଧ ମଣିଷର ଜୀବନ ପ୍ରଦୀପ ଅକାଳରେ ଅସ୍ତମିତ ହୋଇଯାଉଛି । ଏଥିପାଇଁ କୌଣସି ଅପରାଧି ଉପଯୁକ୍ତଭାବେ ଚିହ୍ନଟ ହୋଇପାରୁ ନାହାନ୍ତି କି ଶାସ୍ତି ମଧ୍ୟ ପାଇ ପାରୁନାହାନ୍ତି । ସାମ୍ପ୍ରଦାୟିକତାବାଦ ଅନେକ ସମୟରେ ବିଶ୍ୱସ୍ତରରେ ଭାରତକୁ ଅପଦସ୍ତ ଓ ନିନ୍ଦିତ କରୁଅଛି । ଦୁଃଖର କଥା, ଏଥିପାଇଁ ଦାୟୀ ବ୍ୟକ୍ତିକୁ ସମଗ୍ର ପୃଥିବୀ ଘୋର ନିନ୍ଦା କରୁଥିବା ବେଳେ ଆମର କତିପୟ ଶ୍ରେଷ୍ଠିପୁତ୍ର ତାଙ୍କୁ ଭାରତର ସର୍ବୋଚ୍ଚ ପଦବୀରେ ବସାଇବାକୁ ପ୍ରୟାସୀ ହେଉଛନ୍ତି ।

ତେଣୁ ଆମ ଗଣତାନ୍ତ୍ରିକ ବ୍ୟବସ୍ଥା ଏଇ ଯେଉଁ ନୂଆ ଆହ୍ୱାନର ସାମ୍ନା କରିବାକୁ ଯାଉଛି, ତାକୁ ସାମ୍ନା କରିବା ପାଇଁ ଭାରତୀୟ ମହାଜାତି ମଧ୍ୟ ପ୍ରସ୍ତୁତ ହୋଇଥିବା ଏକ ଶୁଭ ଲକ୍ଷଣ । ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ନବୀନ ପଟ୍ଟନାୟକ, ତାମିଲନାଡୁର ସର୍ବାଧିକ ଜନପ୍ରିୟ ନେତ୍ରୀ ଜୟଲଳିତା, ବିହାରର ନୀତିବାଗୀଶ ନେତା ନୀତିଶ କୁମାର ଓ ଭାରତର ସମାଜବାଦୀ ଚିନ୍ତାଧାରାର ବାହକ ଶକ୍ତିମାନଙ୍କ ସମ୍ମିଳିତ ଉଦ୍ୟମରେ ଭାରତୀୟ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଆଗାମୀ ଦିନରେ ଅସାଧାରଣ ସଫଳତା ପ୍ରାପ୍ତି ହେବାର ସୂଚନା ଦେଶର ଚତୁର୍ଦ୍ଦିଗରୁ ମିଳୁଅଛି । ଏହା ଏ ମହାଜାତି ପାଇଁ ଏକ ଶୁଭ ଲକ୍ଷଣ ଏବଂ ସମୟର କଷଟି ପଥରରେ ଭାରତୀୟ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଯେ ଶୁଦ୍ଧ ସୁବର୍ଣ୍ଣ ବୋଲି ପ୍ରମାଣିତ ହୋଇଯିବ ଏବଂ ଏ ମାଟିରେ ଫାସୀବାଦୀ ଶକ୍ତିଙ୍କର କସ୍ମିନକାଳେ ଅଭ୍ୟୁଦୟ ସମ୍ଭବପର ହୋଇପାରିବ ନାହିଁ ବୋଲି ଜଗତବାସୀ ଅବଶ୍ୟ ପ୍ରତ୍ୟକ୍ଷ ଭାବେ ଅବଲୋକନ କରିବେ ।

ସାଧାରଣତନ୍ତ୍ର ଦିବସରରେ ଭାରତୀୟ ମହାଜାତି ବିଶ୍ୱର ସର୍ବଶ୍ରେଷ୍ଠ ଜାତିରେ ରୂପାନ୍ତରିତ ହେଉ, ଏହାହିଁ ଆମର ଧ୍ୟେୟ ହେବା ଉଚିତ ।

ଜୟହିନ୍ଦ୍



# ସମ୍ବିଧାନର ମୂଲ୍ୟ ଓ ନାଗରିକ ଅଧିକାର

ଅଧ୍ୟାପକ ବିଶ୍ୱରଂଜନ

ଗୋଟିଏ ସମ୍ବିଧାନ ନଥାଇ କୌଣସି ରାଷ୍ଟ୍ରର ପରିଚାଳନା ଓ ଶାସନ କଳ୍ପନା କରାଯାଇ ପାରିବ ନାହିଁ । କାରଣ ଯେ କୌଣସି ରାଷ୍ଟ୍ର ହେଉଛି ଆଇନର ଶାସନ ପାଇଁ ଏକ ସଂଗଠନ । ଆଇନ ନଥିଲେ ଶୃଙ୍ଖଳା ରହିବ ନାହିଁ । ଶୃଙ୍ଖଳା ନରହିଲେ ଅରାଜକତା ଲାଗି ରହିବ । ଅରାଜକତା ବ୍ୟାପିଲେ ସ୍ଥିତି ବିପନ୍ନ ହୋଇଯିବ । ନାଗରିକ ତା'ର ନ୍ୟାଯ୍ୟ, ମୌଳିକ ଅଧିକାରରୁ ବଞ୍ଚିତ ହୋଇଯିବ । ତେଣୁ ଏକ ଆଦର୍ଶ ରାଷ୍ଟ୍ର ଗଠନ ଲାଗି ଆଦର୍ଶ ସମ୍ବିଧାନର ଆବଶ୍ୟକତା ରହିଛି । ବିଶେଷ କରି ଗଣତନ୍ତ୍ରକୁ ଏକଶାସନବ୍ୟବସ୍ଥା ରୂପେ ଗ୍ରହଣ କରି ନେଇଥିବା ରାଷ୍ଟ୍ର ପାଇଁ ସମ୍ବିଧାନର ଆବଶ୍ୟକତା ଏକାନ୍ତ ଜରୁରୀ । ଏକ ଏକଛତ୍ରବାଦୀ ରାଷ୍ଟ୍ର ବା ସ୍ୱେଚ୍ଛାଚାରୀ ଶାସକ ପାଇଁ ସମ୍ବିଧାନର କୌଣସି ମୂଲ୍ୟ ନଥାଇ ପାରେ । ସେଠି ଶାସକର ମୁଖ ନିଃସୃତ ବାଣୀ ହିଁ ସେ ରାଷ୍ଟ୍ରପାଇଁ ଶେଷକଥା ହୋଇପାରେ । ମାତ୍ର ସମ୍ବିଧାନର ମନ୍ତ୍ର ଉଚ୍ଚାରଣ ବିନା ଗଣତନ୍ତ୍ରର ଅଭିଷେକ ଉତ୍ସବ ଆଦୌ ସମ୍ଭବପର ନୁହେଁ । ସେଥିପାଇଁ ରାଷ୍ଟ୍ର ବିଜ୍ଞାନର ଆଦି ଗୁରୁ, ଗ୍ରୀକ୍ ଦାର୍ଶନିକ ଏରିଷ୍ଟୋଟଲ୍ ଯଥାର୍ଥରେ କହିଥିଲେ- 'ସମ୍ବିଧାନର ଶାସନଦ୍ୱାରା ବଞ୍ଚିବାକୁ ଦାସତ୍ୱ ରୂପେ ବିବେଚନା ନକରି ମୁକ୍ତିର କ୍ରିୟାରୂପେ ଗ୍ରହଣ କରିବା ଉଚିତ୍ ।' କାରଣ ଗୋଟିଏ ସମ୍ବିଧାନ ସବୁବେଳେ ବ୍ୟକ୍ତିକୁ ବ୍ୟକ୍ତି ସହିତ ଏବଂ ରାଷ୍ଟ୍ର ସହିତ ଯୁକ୍ତ କରିଦିଏ । ମୁକ୍ତ କରିଦିଏ ତାକୁ ତା'ର ସ୍ୱାର୍ଥପର, ସଂକୀର୍ଣ୍ଣ ମନୋଭାବର ଶୃଙ୍ଖଳ ଭିତରୁ । ଏକରାଷ୍ଟ୍ରୀୟ ଜୀବନଧାରା ପାଇଁ ସମ୍ବିଧାନ ହେଉଛି କେତେକ ନିର୍ଦ୍ଦିଷ୍ଟ ତଥା ନିର୍ଦ୍ଧାରିତ ନୀତି, ନିୟମ, ଆଦର୍ଶ ଏବଂ ଆଚାର-ବିଚାରର ସ୍ୱୀକୃତ ନିର୍ଦ୍ଦେଶନାମା । ଏହା ଲିଖିତ ହୋଇପାରେ, ଅଲିଖିତ ମଧ୍ୟ ରହିପାରେ ।



THE CONSTITUTION OF INDIA

WE, THE PEOPLE OF INDIA, having solemnly resolved to constitute India into a SOVEREIGN DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity; and to promote among them all

FRATERNITY assuring the dignity of the individual and the unity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

ଭାରତର ମୂଳ ସଂବିଧାନର ଫଟୋ କପି : ଏଥିରେ ବିଶ୍ୱଭାରତୀ ଶାନ୍ତିନିକେତନର ଚିତ୍ରଶିଳ୍ପୀ ନନ୍ଦଲାଲ ବୋଷ ଓ ଅନ୍ୟାନ୍ୟ ଚିତ୍ରଶିଳ୍ପୀମାନଙ୍କର ଚିତ୍ରାଙ୍କନ ନିହିତ ।

> ସାମ୍ବିଧାନିକ ଶାସନର ପ୍ରାଣପିଣ୍ଡ ହେଲେ ଜନସାଧାରଣ । ଦେଶର ନାଗରିକ । ସେମାନଙ୍କର ଅଧିକାରକୁ ସଂରକ୍ଷିତ ଓ ସୁରକ୍ଷିତ କରି ରଖିବାରେ ସମ୍ବିଧାନର ମୂଲ୍ୟ ଓ ମହତ୍ତ୍ୱ ପ୍ରକାଶ ପାଇଥାଏ ।

ଭାରତର ସମ୍ବିଧାନ ହେଉଛି ପୃଥିବୀର ସର୍ବବୃହତ୍ ଲିଖିତ ସମ୍ବିଧାନ । ଅପରପକ୍ଷରେ ଭାରତ ଶତାଧିକ ବର୍ଷକାଳ ଯେଉଁ ଦେଶର ଶାସନାଧୀନ ହୋଇ ରହିଥିଲା ଏବଂ ଯେଉଁ ଦେଶର ଶାସନ ବ୍ୟବସ୍ଥାର ଆଧାରଶିଳା ଉପରେ ମୁଖ୍ୟତଃ ନିଜ ସମ୍ବିଧାନ ପ୍ରସ୍ତୁତ କଲା, ସେହି ଗ୍ରେଟ୍ ବ୍ରିଟେନରେ ସମ୍ବିଧାନ ବୋଲି କୌଣସି ଦଲିଲ ଖୋଜିଲେ ମିଳିବ ନାହିଁ । କାରଣ ସେ ଦେଶରେ କୌଣସି ସମ୍ବିଧାନ କେବେ ଲେଖାଯାଇ ନାହିଁ । ସମ୍ବିଧାନ ପ୍ରଣୟନ କରିବା ପାଇଁ



ଭାରତ କିମ୍ବା ଅନ୍ୟ ଦେଶ ଭଳି ସେଠାରେ କୌଣସି ସଭା, ସମ୍ମିଳନୀ ମଧ୍ୟ କେବେ ବସି ନାହିଁ । ସମୟ ସ୍ରୋତରେ, ସ୍ୱାଭାବିକ ବିକାଶଧାରାରେ ଗଢ଼ି ଉଠିଥିବା କେତେ ପ୍ରଥା, ପରମ୍ପରା, ଚଳଣିର ସମାହାରରେ ତାହାର ସମ୍ବିଧାନ ରୂପ ପାଇଛି । ଅବଶ୍ୟ ସେଥିସହିତ ମିଶି ରହିଛି ପାର୍ଲାମେଣ୍ଟଦ୍ୱାରା ପ୍ରଣୀତ କେତେକ ଆଇନ – ଯାହାକି ବ୍ରିଟିଶ ସମ୍ବିଧାନର ଲିଖିତ ଅଂଶ ରୂପେ ଗ୍ରହଣ କରାଯାଇପାରେ । ଏଇଠି କହିରଖେ ଯେଉଭଳି କୌଣସି ରାଷ୍ଟ୍ରର ସମ୍ବିଧାନ ଲିଖିତ ହେବ କି ଅଲିଖିତ ରହିବ – ତା'ର କୌଣସି ଧରାବନ୍ଧା ନିୟମ ନାହିଁ, ସେହିଭଳି କୌଣସି ସମ୍ବିଧାନ କେବେ ସମ୍ପୂର୍ଣ୍ଣ ଲିଖିତ କିମ୍ବା ସମ୍ପୂର୍ଣ୍ଣ ଅଲିଖିତ ମଧ୍ୟ ନୁହେଁ । ପରମ୍ପରା ଆଧାରିତ ବ୍ରିଟେନ୍‌ର ସାମ୍ବିଧାନିକ ବ୍ୟବସ୍ଥାରେ ଯେଉଭଳି କିଛି ଲିଖିତ ଆଇନକାନୁନ୍‌ର ମିଶ୍ରଣ ଘଟିଛି, ଏକ ବୃହତମ ଲିଖିତ ସମ୍ବିଧାନ ଥାଇ ସୁଦ୍ଧା ଭାରତର ଶାସନ ବ୍ୟବସ୍ଥାରେ କେତେକ ପରମ୍ପରା ସ୍ୱାଭାବିକ ଭାବରେ ଅଙ୍ଗୀଭୂତ ହୋଇଯାଇଛି ।

ସୁତରାଂ ସମ୍ବିଧାନର ମୂଲ୍ୟ ଓ ମହତ୍ୱ ରହିଛି, ଏହାର ପରିପାଳନରେ, ଏଥିରେ ଉଚ୍ଚାରିତ ଆଦର୍ଶକୁ କାର୍ଯ୍ୟକାରୀ କରିବାରେ । ଏହାର ଆକାର ପ୍ରକାର ଦୀର୍ଘ ହୋଇଗଲେ, ସବୁକଥା ଏଥିରେ ବିସ୍ତାରିତ ଭାବରେ ଲେଖା ହୋଇଗଲେ ଯେ ସମ୍ବିଧାନର ଶାସନ ବଳବତ୍ତର ରହିବ ଏଭଳି କିଛି କଥା ନାହିଁ । ବଡ଼ କଥା ହେଲା, ବିଧି–ବିଧାନ–ଦ୍ୱାରା ଶାସିତ ହେବାର ମନୋବୃତ୍ତି । ବ୍ରିଟିଶ ସମ୍ବିଧାନ ମୁଖ୍ୟତଃ ଅଲିଖିତ ହେଲେ ହେଁ, ସେଠାରେ ସଂସଦୀୟ ଗଣତନ୍ତ୍ରର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବାରେ ଲାଗିଛି ସିନା କମିବାର କୌଣସି ଆଶଙ୍କା କେବେ ଦେଖାଦେଇ ନାହିଁ । ଏପରିକି ରାଷ୍ଟ୍ରମୁଖ୍ୟ ଭାବରେ ବଂଶାନୁକ୍ରମିକ ନୀତିରେ ଜଣେ ରାଜା ବା ରାଣୀ ଅବସ୍ଥାପିତ ହେଉଥିଲେ ହେଁ ତାହାଦ୍ୱାରା ଗଣତନ୍ତ୍ରର ମୂଲ୍ୟ ଓ ମର୍ଯ୍ୟାଦା କେବେ ମ୍ଳାନ ପଡ଼ିନାହିଁ କିମ୍ବା ନାଗରିକଙ୍କ ଅଧିକାରପ୍ରତି କୌଣସି ବିପଦ ମଧ୍ୟ ସୃଷ୍ଟି ହୋଇନାହିଁ । ଗଣତନ୍ତ୍ର ଓ ରାଜତନ୍ତ୍ରର ଅପୂର୍ବ ମିଳନ ହେଉଛି ବ୍ରିଟିଶ ସାମ୍ବିଧାନିକ ବ୍ୟବସ୍ଥାର ଫଳଶ୍ରୁତି । ସେହିଭଳି ସମଗ୍ର ବିଶ୍ୱରେ ଏକ ବୃହତ୍ ଶକ୍ତି ରୂପେ ବିବେଚିତ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ହେଉଛି ସବୁଠାରୁ କ୍ଷୁଦ୍ର । ମାତ୍ର ସାତଗୋଟି ସରଳଧାରାର ସମାହାରରେ ଲେଖାଯାଇଛି ଆମେରିକା ସମ୍ବିଧାନ । ତଥାପି ଏହାର ଗଣତନ୍ତ୍ର କକ୍ଷଚ୍ୟୁତ ବା ଲକ୍ଷ୍ୟଚ୍ୟୁତ ହୋଇନାହିଁ । ନାଗରିକମାନଙ୍କର ଅଧିକାର ବେଶ୍ ସୁରକ୍ଷିତ ରହିଛି, ବରଂ ଏହାର ପରିସର କ୍ରମଶଃ ବିସ୍ତାରିତ ହେବାରେ ଲାଗିଛି । ଭାରତରେ ମାତ୍ର ପଚାଶବର୍ଷର ସାମ୍ବିଧାନିକ ଶାସନରେ ସମ୍ବିଧାନଟି ଯେତେଥର ସଂଶୋଧିତ ହେଲାଣି, ଆମେରିକାରେ ଦୀର୍ଘ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ସମ୍ବିଧାନ ତା'ର ଅଧାରେ ମଧ୍ୟ ପହଞ୍ଚି ପାରିନାହିଁ । ସେଠାରେ ମଧ୍ୟ ଦଳୀୟ ଶାସନରେ ପରିବର୍ତ୍ତନ ହୋଇଛି ଏବଂ ହେଉଛି । ମାତ୍ର ସମ୍ବିଧାନକୁ ସେଠାରେ ବ୍ୟକ୍ତିଗତ ଇଚ୍ଛା–ଅନିଚ୍ଛାର ବା ଦଳୀୟ ନୀତି–ଅନୀତିର ଖେଳଣା ଭାବରେ ବ୍ୟବହାର କରାଯାଇ ନାହିଁ । ମନେ ରଖିବାକୁ ହେବ, ଯେକୌଣସି ଗଣତାନ୍ତ୍ରିକ ରାଷ୍ଟ୍ର ପାଇଁ ସମ୍ବିଧାନ ହେଉଛି ଏକ ପବିତ୍ର ଦଲିଲ୍ । ଏହାକୁ ବେଶ୍ ସତର୍କତାର ସହିତ ବ୍ୟବହାର କରିବାକୁ ପଡ଼ିବ । ଏଥିରେ କୌଣସି ଯୋଗ–ବିୟୋଗ ବା ଆନୁଷଙ୍ଗିକ ପରିବର୍ତ୍ତନ ରାଷ୍ଟ୍ରୀୟ ସ୍ୱାର୍ଥ ଅନୁକୂଳ ଆବଶ୍ୟକତାକୁ ଦୃଷ୍ଟିରେ ରଖି କରିବାକୁ ହେବ । ତା' ନହେଲେ ଏହା ତା'ର ମୂଲ୍ୟ ହରାଇ ବସିବ । ନାଗରିକମାନଙ୍କର ସମ୍ବିଧାନ ଉପରେ ଆସ୍ଥା ଯେପରି ଅତୁଟ ରହିବ, ସେଥିଲାଗି ସମ୍ବିଧାନର ଘନ ଘନ ପରିବର୍ତ୍ତନ ଯେଉଭଳି ଅନାବଶ୍ୟକ, ସେହିଭଳି ଏକ ପରିବର୍ତ୍ତନଶୀଳ ଦେଶର ଜନସାଧାରଣଙ୍କ ଆବଶ୍ୟକତାକୁ ଚାହିଁ ସମ୍ବିଧାନର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ସମ୍ବିଧାନ ଗତିଶୀଳ ଓ ଯୁଗୋପଯୋଗୀ ନହୋଇ ସ୍ଥାଣୁ ହୋଇ ରହିଗଲେ ମାର୍କ୍‌ସଙ୍କ ନିୟମ ଅନୁସାରେ ଏକ ବିପ୍ଳବର ସୂତ୍ରପାତ ହୋଇ ସମ୍ବିଧାନ ଧ୍ୱଂସ ପାଇଯିବ ।

ଭାରତରେ ସେଥିପାଇଁ ସମ୍ବିଧାନ ପ୍ରସ୍ତୁତି ସମୟରେ ଏହାର ପରିବର୍ତ୍ତନର ଆବଶ୍ୟକତାକୁ ସ୍ୱୀକାର କରାଯାଇଥିଲା । ପଣ୍ଡିତ ଜବାହରଲାଲ ନେହରୁ ଶାସନ ବିଧାୟକ ସଭାରେ କହିଥିଲେ ଯେ– 'ସମ୍ବିଧାନରେ ଚିରସ୍ଥାୟୀ ବ୍ୟବସ୍ଥା କିଛି ରହି ନପାରେ । ସବୁକିଛି କଠିନ ଓ ସ୍ଥାୟୀ ହୋଇ ରହିଲେ ଦେଶର ପ୍ରଗତି ଅସମ୍ଭବ । ସମଗ୍ର ପୃଥିବୀ ଯେତେବେଳେ ଆନ୍ଦୋଳନର ସମ୍ମୁଖୀନ ଏବଂ ଆମେ ଯେତେବେଳେ ଦ୍ରୁତ ପରିବର୍ତ୍ତନ ମଧ୍ୟରେ ଗତି କରୁଛୁଁ, ଆଜି ଆମେ ଯାହା କରୁଛୁଁ, ଆସନ୍ତା କାଲିକୁ ତାହା ସଂପୂର୍ଣ୍ଣ ଅକାମୀ ହୋଇଯାଇପାରେ । ତେଣୁ ସମ୍ବିଧାନ କେତେକାଂଶରେ କମନୀୟ ହେବା ଉଚିତ୍ ।' ଅନୁରୂପ ଅଭିବ୍ୟକ୍ତି ଥିଲା ଡଃ ଆମ୍ବେଦକରଙ୍କର । ସେ କହିଥିଲେ ଯେ, 'ଶାସନ ବିଧାୟକ ସଭା ସମ୍ବିଧାନରେ ଏକ ଚୂଡ଼ାନ୍ତ ମୋହର ମାରି ଜନସାଧାରଣଙ୍କୁ ସମ୍ବିଧାନର ଅଧିକାରରୁ ବଞ୍ଚିତ କରିନାହିଁ । ଯେତେଦିନ ପର୍ଯ୍ୟନ୍ତ ସରକାର ଜନସାଧାରଣଙ୍କ ନିକଟରେ ଦାୟୀ ରହି ଶାସନ କାର୍ଯ୍ୟ ପରିଚାଳନା କରୁଥିବେ, ସେତେଦିନ ପର୍ଯ୍ୟନ୍ତ ସମ୍ବିଧାନର ପରିବର୍ତ୍ତନ ଦେଶର ଆବଶ୍ୟକତାର ପ୍ରତିଫଳନ ବ୍ୟତୀତ ଆଉ କିଛି

> ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ, ସ୍ୱାଧୀନତା ଓ କ୍ଷମତା ମଧ୍ୟରେ ଏକ ସମନ୍ୱୟ ସ୍ଥାପନରେ ହିଁ ସମ୍ବିଧାନର ଏକ ବିଶେଷ ଭୂମିକା ରହିଥାଏ ।





ନୁହେଁ ।' ଏହି ଦୃଷ୍ଟିରୁ ଭାରତରେ ସମ୍ବିଧାନର ପୁନଃ ସମୀକ୍ଷା ଲାଗି ବର୍ତ୍ତମାନର କେନ୍ଦ୍ର ସରକାର ସୁପ୍ରିମକୋର୍ଟର ଜଣେ ପୂର୍ବତନ ନ୍ୟାୟାଧୀଶଙ୍କ ଅଧକ୍ଷତାରେ ଏକ କମିଟି ଗଠନ କରିଛନ୍ତି । ସମ୍ବିଧାନର ମୌଳିକ ଲକ୍ଷ୍ୟ ଓ ଆଦର୍ଶକୁ ଅକ୍ଷୁଣ୍ଣ ରଖି ଏହାକୁ ଅଧିକ ଫଳପ୍ରଦ କରାଯାଇପାରେ । ଅନାବଶ୍ୟକ, ଅପ୍ରାସଙ୍ଗିକ ବ୍ୟବସ୍ଥାକୁ ମଧ୍ୟ ବାଦ୍ ଦିଆଯାଇପାରେ ।

ସାମ୍ବିଧାନିକ ଶାସନର ପ୍ରାଣପିଣ୍ଡ ହେଲେ ଜନସାଧାରଣ । ଦେଶର ନାଗରିକ । ସେମାନଙ୍କର ଅଧିକାରକୁ ସଂରକ୍ଷିତ ଓ ସୁରକ୍ଷିତ କରି ରଖିବାରେ ସମ୍ବିଧାନର ମୂଲ୍ୟ ଓ ମହତ୍ତ୍ୱ ପ୍ରକାଶ ପାଇଥାଏ । ଶାସନ ପାଇଁ ଆଇନ ପ୍ରଣୟନ କରୁଥିବା ବ୍ୟବସ୍ଥାପିକା ସଭା ଏବଂ ଆଇନକୁ କାର୍ଯ୍ୟରେ ପରିଣତ କରୁଥିବା କାର୍ଯ୍ୟପାଳିକା ବା ଶାସକବର୍ଗଙ୍କ ସେମାନଙ୍କ ସୀମା ସଂପର୍କରେ ସଚେତନ କରି ଦେଇଥାଏ ସମ୍ବିଧାନ । ମାତ୍ର ସେମାନେ ସୀମା ବହିର୍ଭୂତ କାର୍ଯ୍ୟ କଲେ କିମ୍ବା କ୍ଷମତାର ଆଧିପତ୍ୟ ବଳରେ ସମ୍ବିଧାନର ବିଧିବିଧାନକୁ ଉଲ୍ଲଙ୍ଘନ କରିବାର ଉଦ୍ୟମ କଲେ, ସମ୍ବିଧାନକୁ ସୁରକ୍ଷା ଦେବ କିଏ ? ଏ ଦାୟିତ୍ୱ ବହନ କରିଥାଏ ନ୍ୟାୟପାଳିକା । ଅଗଣିତ ଜନସାଧାରଣଙ୍କର ମୌଳିକ ଅଧିକାରର ସଂରକ୍ଷକ ତଥା ସମ୍ବିଧାନର ରକ୍ଷକ ହେଉଛି ନ୍ୟାୟାଳୟ ।

ଭାରତରେ ଉଚ୍ଚତମ ନ୍ୟାୟାଳୟ ତଥା ରାଜ୍ୟର ଉଚ୍ଚ ନ୍ୟାୟାଳୟ ହିଁ ଏହି ମର୍ଯ୍ୟାଦାର ଅଧିକାରୀ । ସେହିଭଳି ଭାରତ ସମ୍ବିଧାନରେ ନାଗରିକର ଅଧିକାର ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଏହାର ସଂପୂର୍ଣ୍ଣ ତୃତୀୟ ଭାଗଟି ମୌଳିକ ଅଧିକାର ପାଇଁ ସମର୍ପିତ । ସମସ୍ତ ମୌଳିକ ଅଧିକାରର ସୁରକ୍ଷା ପାଇଁ ସମ୍ବିଧାନର ୩୨ ଧାରାକୁ ମଧ୍ୟ ଏକ ମୌଳିକ ଅଧିକାରର ମାନ୍ୟତା ମିଳିଛି । ମାତ୍ର ଭାରତରେ ନାଗରିକର ଅଧିକାରଗୁଡ଼ିକ ସୁରକ୍ଷିତ ହେଲେ ହେଁ ନିରଙ୍କୁଶ ନୁହେଁ । ଆମେରିକାର ସମ୍ବିଧାନ ମୌଳିକ ଅଧିକାର ଉପରେ କୌଣସି ପ୍ରତ୍ୟକ୍ଷ କଟକଣା ଲାଗୁ କରିନଥିବା ସ୍ଥଳେ ଆମ ସମ୍ବିଧାନରେ ମୌଳିକ ଅଧିକାର ଉପରେ ଅଙ୍କୁଶ ଲଗାଯାଇଛି । କେତେକ ସମ୍ବିଧାନ ଦ୍ୱାରା ଏବଂ ଆଉ କେତେକ ସଂସଦ ଦ୍ୱାରା କରାଯାଉଛି । ଜାତୀୟ ଜରୁରୀ ପରିସ୍ଥିତି କାଳରେ ରାଷ୍ଟ୍ରପତି ସେଗୁଡ଼ିକ ଅସ୍ଥାୟୀ ଭାବରେ ବାତିଲ୍ କରିଦେଇ ପାରିବେ ।

ଭାରତୀୟ ସମ୍ବିଧାନରେ ନାଗରିକର ଅଧିକାର ମଧ୍ୟରେ ଅର୍ଥନୈତିକ ଅଧିକାର, ଯଥା– କାମ କରିବାର, ନିଯୁକ୍ତିର ଅଧିକାର, ବିଶ୍ରାମ ନେବାର ଅଧିକାରଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ପ୍ରଦତ୍ତ ଅଧିକାରଗୁଡ଼ିକ ରାଜନୈତିକ ଗଣତନ୍ତ୍ରର ଭିତ୍ତିଭୂମି ଅବଶ୍ୟ ପ୍ରତିଷ୍ଠା କରିଛି । ମାତ୍ର ଅର୍ଥନୈତିକ ଗଣତନ୍ତ୍ର ବିନା ଯଥାର୍ଥ ଗଣତନ୍ତ୍ରର ବିକାଶ କେବେ ସମ୍ଭବ ନୁହେଁ । ତା'ଛଡ଼ା ଲୋକଙ୍କ ଅଧିକାର ଲାଗି ଉଦ୍ଦିଷ୍ଟ ସମ୍ବିଧାନ ଲୋକଙ୍କ ଭାଷାରେ ଅର୍ଥାତ୍ ସରଳ ଭାବରେ ଲେଖାଯିବା ଉଚିତ – ଯାହା ସେମାନେ ସହଜରେ ପଢ଼ି ବୁଝିପାରିବେ ଏବଂ କାହାର ସହାୟତା ବିନା ନିଜ ଅଧିକାର ଲାଗି ନିଜେ ଲଢ଼ି ପାରିବେ । ଭାରତରେ ସମ୍ବିଧାନ ପ୍ରଦତ୍ତ ନାଗରିକମାନଙ୍କ ଅଧିକାର ଏ ଦୃଷ୍ଟିରୁ ସମାଲୋଚନାମୁକ୍ତ ନୁହେଁ । ଏଗୁଡ଼ିକ ଏତେ କ୍ଲିଷ୍ଟ ଭାଷାରେ ଲେଖାଯାଇଛି ଯେ, ଏହାର ତର୍ଜମା ପାଇଁ ଆଇନଜୀବୀମାନଙ୍କ ସହାୟତା ନିହାତି ଆବଶ୍ୟକ । ସେଥିପାଇଁ ଆମ ସମ୍ବିଧାନର ମୌଳିକ ଅଧିକାର ଅଧ୍ୟାୟକୁ ବ୍ରିଟିଶ୍ ସମ୍ବିଧାନବିତ୍ ଆଇଭର ଜେନିଙ୍ଗସ୍ 'ଆଇନଜୀବୀଙ୍କ ଅମରାବତୀ' କହି ସମାଲୋଚନା କରିଛନ୍ତି । ତଥାପି ଆମେ କହିପାରିବା, ଆମ ସମ୍ବିଧାନର ଅସଲ ମହତ୍ତ୍ୱ ରହିଛି ଏହାଦ୍ୱାରା ସ୍ୱୀକୃତ ନାଗରିକଙ୍କ ମୌଳିକ ଅଧିକାରରେ । ଏହି ଅଧ୍ୟାୟଟି ଆମ ଗଣତନ୍ତ୍ରର ଏକ ସୁଦୃଢ଼ ପ୍ରାଚୀର ।

କଥା ହେଲା, ପ୍ରତ୍ୟେକ ରାଷ୍ଟ୍ରରେ ଜନସାଧାରଣ ଚାହାନ୍ତି ଅଧିକ ସ୍ୱାଧୀନତା ଏବଂ ଶାସକ ଚାହାନ୍ତି ଅଧିକ କ୍ଷମତା । ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ, ସ୍ୱାଧୀନତା ଓ କ୍ଷମତା ମଧ୍ୟରେ ଏକ ସମନ୍ୱୟ ସ୍ଥାପନରେ ହିଁ ସମ୍ବିଧାନର ଏକ ବିଶେଷ ଭୂମିକା ରହିଥାଏ । କ୍ଷମତାର ଆଧିପତ୍ୟ ବା ଉପଦ୍ରବ ଏବଂ ବ୍ୟକ୍ତି ସ୍ୱାଧୀନତାର ଯଥେଚ୍ଛାଚାରକୁ ସଂକୁଚିତ କରି ଏକ ଯଥାର୍ଥ ଲୋକାଭିମୁଖୀ ଶାସନ ପ୍ରତିଷ୍ଠା ଦିଗରେ ଏକ ସମ୍ବିଧାନ ପ୍ରୟାସ କରିଥାଏ । ଏହି ଉତ୍ତମ ସମ୍ବିଧାନଦ୍ୱାରା ହିଁ କୃତ୍ରିମ ଜଳଭଣ୍ଡାରର ଜଳ ଭଳି ଗଣତନ୍ତ୍ରକୁ ସର୍ବଦା ଶାନ୍ତ, ଶୀତଳ ରଖାଯାଇପାରିବ । ଉଭୟ ବ୍ୟକ୍ତି ଏବଂ ରାଷ୍ଟ୍ରକୁ ନିଜ ନିଜର ସୀମା ତଥା କ୍ଷେତ୍ରାଧିକାର ସଂପର୍କରେ ସଚେତନ କରିବାରେ ସମ୍ବିଧାନର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ନେତାଜୀ ନିବାସ
୧୯୯, କଂସାଇ ଛକ
ୟୁନିଟ୍–୬, ଭୁବନେଶ୍ୱର–୧









# ଭାରତର ସମ୍ବିଧାନ ନିର୍ମାଣରେ ଆମ୍ବେଦକରଙ୍କ ଭୂମିକା

**ମହେନ୍ଦ୍ର କୁମାର ନାୟକ**

ପବିତ୍ର ଭାରତ ଭୂଇଁ ବହୁ ମୁନୀଋଷି, ସାଧୁସନ୍ଥ, ମହାମନିଷୀ ତଥା ମହାପୁରୁଷଙ୍କୁ ଜନ୍ମ ଦେଇଛି ତା'ର ପଟାନ୍ତର ନାହିଁ। ଏହି ଜନ୍ମ ଭୂମିରେ ଜନ୍ମ ଲାଭ କରି କୋଟି କୋଟି ମଣିଷ ଚାଲି ଗଲେଣି, ତା'ର ହିସାବ ନାହିଁ। ହେଲେ କିଛି ଲୋକଙ୍କର ହିସାବ ଜନ୍ମ ଭୂମିର ପ୍ରଚ୍ଛଦପଟରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥାଏ। ସେମାନଙ୍କୁ ଅମର ବୋଲି କୁହାଯାଏ। ଏ ଧରାପୃଷ୍ଠରେ ଅମର ହୋଇ କେହି ରହିଛି କି ? ନା, ତାଙ୍କର କାମ ତାଙ୍କୁ ଅମର କରି ରଖିଛି। ଯିଏ ଭଲ କାମ କରନ୍ତି, ତାଙ୍କୁ ସମସ୍ତେ ମନେ ରଖିଥାନ୍ତି। ସେହିଭଳି ଏକ ଅମର ବ୍ୟକ୍ତି ହେଉଛନ୍ତି ଡକ୍ଟର ଭୀମରାଓ ଆମ୍ବେଦକର ।



ସଂସାରର ଧର୍ମ ବଡ଼ ବିଚିତ୍ର, ବହୁ ପୁରାଣ ଯୁଗରୁ ତଥା ପ୍ରାଗ୍ ଐତିହାସିକ ଯୁଗରୁ ମଧ୍ୟ ଜଣାଯାଇଛି ଯେ, ପଙ୍କରୁ ପଦ୍ମ ଫୁଟେ, କଳାବାଦଲରୁ ଝଙ୍କୁରିତ ହୁଏ ବିଜୁଳୀ, କଳା କୋକିଳର କଣ୍ଠରୁ ଝଙ୍କୁରିତ ହୁଏ ସପ୍ତରାଗିଣୀର ସ୍ୱର, ସମୁଦ୍ରର ଶାମୁକାରୁ ଜନ୍ମନିଏ ମୁକ୍ତା। ଠିକ୍ ସେହିଭଳି ମହାରାଷ୍ଟ୍ର ପ୍ରଦେଶର ରତ୍ନଗିରି ଜିଲ୍ଲା ଅଧୀନସ୍ଥ 'ଆମ୍ବାବାଦ' ଗାଁର ଏକ ଅଛୁଆଁ ମାହାର ପରିବାର ମେଜର ସୁବେଦାର ରାମଜୀ ଶକପାଲ୍ ଓ ଭୀମାବାଇଙ୍କର କୋଳରେ ୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖରେ ଏକ ଗରିବ କୁଟୀରରେ ଯେଉଁ ଅମାବାସ୍ୟା ଅନ୍ଧାରରେ ଖୋଦ୍ୟୋତିକା ସଦୃଶ୍ୟ ଆଲୋକିତ କରିଥିଲେ, ସେ ହେଉଛନ୍ତି ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର। ପାଞ୍ଚଟି ପୁତ୍ର ସନ୍ତାନ ପରେ ଏହି ପୁତ୍ର ସନ୍ତାନର ନାମ ପାଣ୍ଡବମାନଙ୍କ ନାମାନୁସାରେ ଭୀମ ବୋଲି ରଖାଯାଇଥିଲା। ତେଣୁ ବାପା ମାଆ ପିଲାଟିର ନାମ ଭୀମ ଦେଲେ।

ଯେତେବେଳେ ଭୀମରାଓଙ୍କୁ ଦୁଇ ବର୍ଷ ବୟସ ହୋଇଥିଲା । ସେତେବେଳେ ତାଙ୍କ ମାଆ ଆରପାରିକୁ ଚାଲିଗଲେ । ଫଳରେ ରାମଜୀଙ୍କ ଭଉଣୀ ମୀରାବାଈଙ୍କ ଲାଳନ ପାଳନରେ ଶିଶୁ ଭୀମରାଓ ପାଳିତ ହେଲେ। ପୁରାଣରେ ଅଛି ଭଗବାନ ଶ୍ରୀକୃଷ୍ଣ ଦେବକୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଯଶୋଦାଙ୍କ ଦ୍ୱାରା ପାଳିତ ହୋଇଥିଲେ। ତେଣୁ ଭୀମରାଓଙ୍କ ଭାଗ୍ୟରେ ମଧ୍ୟ ସେହି ପରିସ୍ଥିତି ସୃଷ୍ଟି ହୋଇଥିଲା। ଚଗଲା ଶ୍ରୀକୃଷ୍ଣ ଦିନେ ଏ ଧରାଧାମରେ ସର୍ବନିୟନ୍ତା ଭଗବାନର ଆଖ୍ୟା ପାଇଥିଲେ। ଠିକ୍ ସେହିଭଳି ଏକ ଛୋଟ ଅଛୁଆଁ ଜାତିର ଗରିବ ପିଲା ଯେ, ଗୋଟିଏ ଉପମହାଦେଶର ଭାଗ୍ୟ ବିଧାତା ହେବ, କିଏ ଜାଣିଥିଲା ? ପିତା-ମାତା ତଥା ପାଳିତା ମା'ର ଆଧ୍ୟାତ୍ମିକତା ଓ ଉପଦେଶ ଯୋଗୁଁ ପିଲାଟି ଜଣେ ସଂଯମୀ, କର୍ମଯୋଗୀ ଓ ଜ୍ଞାନୀ ହୋଇପାରିଥିଲେ।

ମହାରାଷ୍ଟ୍ରର ସାତାରାଠାରେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ। ସେତେବେଳେ ଭାରତବର୍ଷରେ ଛୁଆଁ ଅଛୁଆଁ ଉଚ୍ଚନୀଚ ଭେଦଭାବ ବହୁ ଗୁଣରେ ଲାଗି ରହିଥାଏ। ସେତେବେଳେ



ଆମ ସମାଜରେ ଛୋଟ ଜାତିର ଲୋକଙ୍କୁ ଘୃଣ୍ୟ ଚକ୍ଷୁରେ ଦେଖାଯାଉଥିଲା । ଛୋଟ ଜାତିର ଲୋକଙ୍କ ସହ ମିଳାମିଶା, ସ୍କୁଲରେ ମିଳାମିଶା ହୋଇ ପାଠ ପଢ଼ିବା ହେଉ ନଥିଲା । ଏମିତିକି ଶିକ୍ଷକ ମଧ ପିଲାମାନଙ୍କୁ ଛୁଇଁ ପାରୁ ନଥିଲେ । ସେତେବେଳେ ସ୍ୱଇଚ୍ଛାରେ କୌଣସି ଜିନିଷ ଖାଇବା କିମ୍ବା ପାଣି ଟୋପେ ପିଇବାକୁ ଇଚ୍ଛା ହେଲେ ମଧ ପିଇ ପାରୁ ନଥିଲେ । ବରଂ ଅଲଗା ଜାଗାରେ ଖାଇବାକୁ ଓ ପାଟିରେ ପାଣି ଢ଼ାଳି ଦିଆଯାଉଥିଲା, ଏପରି ଛୁଆ-ଅଛୁଆଁ ଘୃଣାଭାବ ତାଙ୍କ ଆତ୍ମାରେ ଖୁବ୍ ବାଧୁଥିଲା । ଭୀମରାଓ ପିଲାଟି ଦିନରୁ ସଚ୍ଚୋଟ ଓ ଜିଦ୍‌ଖୋର ଥିଲେ । ଜଣେ ଉଚ୍ଚାଭିଳାଷୀ, କର୍ମଯୋଗୀ ଓ ଜ୍ଞାନୀ ଭଳି ଥିବାରୁ ବିଦ୍ୟାଳୟରେ ଜଣେ ପରୋପକାରୀ ଶିକ୍ଷକ ଯାହାଙ୍କର ସାଙ୍ଗିଆ ଥିଲା ଆମ୍ବେଦକର । ସେ ଭୀମରାଓଙ୍କୁ ବହୁତ ଭଲ ପାଉଥିଲେ ଏବଂ ଭୀମରାଓଙ୍କ ଗ୍ରାମର ନାମ ଥିଲା 'ଆମ୍ବାଭାଡ଼େ' । ତେଣୁ ଶିକ୍ଷକ ଓ ନିଜର ଗ୍ରାମର ମହାନତାକୁ ବିଶ୍ୱଦରବାରରେ ପରିପ୍ରକାଶ କରିବା ନିମନ୍ତେ ନିଜର ନାମକୁ ଭୀମରାଓ ଆମ୍ବେଦକର ହିସାବରେ ପରିପ୍ରକାଶ କଲେ ।

୧୯୦୭ ମସିହାରେ ବମ୍ବେର ଏଲ୍‌ଫିନ୍ ଷ୍ଟୋନ୍ ହାଇସ୍କୁଲରୁ ମ୍ୟାଟ୍ରିକ୍ ପାସ୍ କଲେ, ସେ ହେଉଛନ୍ତି ଅଛୁଆଁ ଜାତିର ପ୍ରଥମ ମ୍ୟାଟ୍ରିକ ପାସ୍ । ଫଳରେ ବିଖ୍ୟାତ ମରହଟ୍ଟା ଲୋକକୃଷ୍ଣଜୀ ଅର୍ଜୁନ କେଲୁସ୍କାର ତାଙ୍କୁ 'ଗୌତମ ବୁଦ୍ଧ' ନାମକ ପୁସ୍ତକ ଉପହାର ଦେବା ସହ ଅଞ୍ଚଳବାସୀ ଧନ୍ୟ ଧନ୍ୟ କରିଥିଲେ । ବହୁ ଅସୁବିଧାର ସମ୍ମୁଖୀନ ହୋଇ ସେ କଲେଜ ଶିକ୍ଷା କଲେ । ବରୋଦାର ରାଜା ସାୟଜୀ ରାଓ ଗାଇକୱାର୍ଡଙ୍କ ବୃତ୍ତି ପ୍ରଦାନ ଯୋଗୁଁ ୧୯୧୨ ମସିହାରେ ବିଏ ପାସ୍ କଲେ ଏବଂ ପରବର୍ତ୍ତୀ ସମୟରେ ଏକ ଚୁକ୍ତି ସ୍ୱାକ୍ଷର କରି ଭୀମରାଓ ଆମ୍ବେଦକର ବିଦେଶକୁ ଉଚ୍ଚଶିକ୍ଷା ନିମନ୍ତେ ଯାଇଥିଲେ । ଯେଉଁ ଚୁକ୍ତି ଥିଲା କି, ବିଦେଶରୁ ପଢ଼ା ଶେଷ କରିବା ପରେ ଅତି କମ୍‌ରେ ଦଶ ବର୍ଷ ବରୋଦା ରାଜାଙ୍କ ଅଧୀନରେ ଚାକିରି କରିବାକୁ ପଡିବ ।

୧୯୧୩ ମସିହାରେ ଭୀମରାଓ ଆମ୍ବେଦକର ଉଚ୍ଚଶିକ୍ଷା ନିମନ୍ତେ ଆମେରିକାର ନ୍ୟୁୟର୍କ ଗଲେ । ସେଠାରେ କୌଣସି ଭାବବିଚାର-ଉଚ୍ଚନୀଚ-ଛୁଆଁ-ଅଛୁଆଁ ଭେଦଭାବ ନଥିଲା । ସମସ୍ତେ ସମାନ ଓ ସମସ୍ତେ ସ୍ୱାଧୀନ । ଯାହାଫଳରେ ବହୁ ଆନନ୍ଦରେ ଦିନ ବିତାଇ ଥିଲେ । ୧୯୧୫ ମସିହାରେ ଏମ୍‌ଏ ପାସ୍ କରି ୧୯୧୬ ମସିହାରେ ପିଏଚ୍‌ଡି ଉପାଧି ପାଇଲେ । ଆମେରିକା ଛାଡି ଅଧିକା ଜ୍ଞାନ ଅର୍ଜନ ନିମନ୍ତେ ଇଂଲଣ୍ଡ ଯିବାକୁ ମନସ୍ଥ କଲେ । କିନ୍ତୁ ପରିତାପର ବିଷୟ ବରୋଦା ରାଜାଙ୍କ ଚୁକ୍ତି ଅନୁସାରେ ନିଜର ଜବାବ ଓ ସତ୍ୟର ମହତ୍ତ୍ୱ ରକ୍ଷା କରି ନିଜର ଜନ୍ମମାଟି ଭାରତକୁ ଫେରି ଆସିଲେ । ସେ ନିଜ ଦେଶରେ ଆସି ବଡ଼ ଅଫିସର ହୋଇଥିଲେ ସୁଦ୍ଧା ଛୁଆଁ ଅଛୁଆଁ ଉଚ୍ଚନୀଚ ଭେଦଭାବ ଯୋଗୁଁ ବହୁ ଦୁଃଖ କଷ୍ଟରେ ଦିନ କାଟୁଥିଲେ । ଅଛୁଆଁ ଜାତିର ହେତୁ ସମସ୍ତଙ୍କର ଆଖିରେ ଘୃଣ୍ୟର ପାତ୍ର ହୋଇଥିଲେ । ପରବର୍ତ୍ତୀ ସମୟରେ ଉଚ୍ଚଶିକ୍ଷା କରିବା ପାଇଁ ଲଣ୍ଡନ ଗଲେ । ୧୯୨୩ ମସିହାରେ ଅର୍ଥଶାସ୍ତ୍ର ଓ ଆଇନ୍ ଶାସ୍ତ୍ରରେ ଉଚ୍ଚଶିକ୍ଷା ଲାଭକରି ଭାରତକୁ ଫେରିଲେ । ସେ ଭାରତରେ ଛୁଆଁ ଅଛୁଆଁ ଜାତିର ଲୋକମାନଙ୍କର ଉନ୍ନତି କରିବାକୁ ଠିକ୍ କଲେ । କିଛି ଦିନପରେ ସରକାର ଆଇନ୍ କଲେ ଯେ ଛୁଆଁ ହେଉ ବା ଅଛୁଆଁ ହେଉ ସମସ୍ତେ ଅଫିସରେ କାର୍ଯ୍ୟ କରିପାରିବେ । ତେଣୁ ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ଭଳି ବିରାଡ଼ି କପାଳକୁ ଶିକା ଛିଡ଼ିଲା । ଫଳରେ ଅଛୁଆଁ ଲୋକଙ୍କର ପିଲାମାନଙ୍କର ପାଠପଢ଼ା ପାଇଁ 'ବହିଷ୍କୃତ ହିତକାରିଣୀ ସଭା' ଗଠନ କଲେ । ଆମ୍ବେଦକର ଜାତି ଏକ, ସମସ୍ତେ ଈଶ୍ୱରଙ୍କ ସନ୍ତାନ, ପୃଥିବୀର ସବୁ ମଣିଷ ସମାନ ବୋଲି ଭାବୁଥିଲେ । ପରବର୍ତ୍ତୀ ସମୟରେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ସେ ଯୋଗଦେଲେ । ମହାତ୍ମାଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଇଂରେଜ ସରକାରଙ୍କ ଗୋଲଟେବୁଲ ବୈଠକରେ ଲଣ୍ଡନ ଯାଇଥିଲେ । ଗୋଲଟେବୁଲ ବୈଠକରେ ଅଛୁଆଁ ଜାତି ପାଇଁ ଗୋଟିଏ ଲେଖାଏଁ ନିର୍ବାଚନ ମଣ୍ଡଳୀ ରଖାଯାଉ ବୋଲି ଘୋଷଣା କରାଗଲା । ତେଣୁ ଆମ୍ବେଦକର ଅଛୁଆଁ ଲୋକଙ୍କୁ ଅନ୍ୟ ଜାତି ସହିତ ସମାନ କରିବାକୁ ସାରା ପୃଥିବୀର ଦୃଷ୍ଟିକୁ ଆଣିଲେ ।

ଡକ୍ଟର ଆମ୍ବେଦକର ଜଣେ ଉଚ୍ଚକୋଟୀର ରାଜନୀତିଜ୍ଞ, ଆଇନଜ୍ଞ ତଥା ଜଣେ ଅର୍ଥନୀତିଜ୍ଞ ଥିଲେ ତାହା ନୁହେଁ, ସେ ବହୁ ପୁସ୍ତକ ମଧ ରଚନା କରିଥିଲେ । ସେ ଯେତେବେଳେ ବିଦେଶ ଯାତ୍ରା କରୁଥିଲେ, ବହୁ ପୁସ୍ତକ ସଂଗ୍ରହ କରି ଆଣୁଥିଲେ । ସେ ନ୍ୟୁୟର୍କ ଗସ୍ତରେ ଯାଇଥିବା ସମୟରେ ୩୦୦୦ରୁ ଊର୍ଦ୍ଧ୍ୱ ବହି କିଣି ଆଣିଥିଲେ । ସେ ନିଜଘରେ ଏକ ପୁସ୍ତକ ସଂଗ୍ରହାଳୟ ତିଆରି କରି 'ରାଜଗୃହ' ନାମ ଦେଇଥିଲେ । ଲିଖନ ଓ ପଠନ ପ୍ରିୟ ଆମ୍ବେଦକର ବହୁ ଗୁଡିଏ ପୁସ୍ତକ ରଚନା କରିଥିଲେ । ସେଗୁଡିକ ହେଲା-

a) Essay on Untouchables and Untouchability: Social.





b) Small holdings in India and their Remedies.

c) Buddha or Karl Max

d) Manu and the Sudras

e) Ranade, Gandhi and Jinha

f) Untouchables or the children of India's Ghetto

g) Who were the Sudras?

h) Statement of Evidence to the Royal commission on Indian Currency

i) Buddha and his Dhamma

j) Revolution and Counter Revolution in India

k) History of Indian Currency and Banking

l) Notes on Acts and Laws

m) Philosophy of Hinduism

n) Ancient Indian Commerce

o) Castes in India! Their Mechanism, Genesis and Development.

p) The Constitution of British India

q) Pakistan or the Partition of India

r) Riddles of Hinduism

s) Preservation of Social order

t) Lectures on English Constitution.

ତାଙ୍କ ଦ୍ୱାରା ଲିଖିତ ଗ୍ରନ୍ଥରୁ ଜଣାଯାଇଛି ଯେ, ତାଙ୍କର ଅଧ୍ୟୟନ କେତେ ବିଶାଳ, ଜାଣିବାର ଇଚ୍ଛା ଓ ସ୍ୱତନ୍ତ୍ର ବିଚାରଶୈଳୀ ଭଳି ମହାନ ଗୁଣବତ୍ତା ତାଙ୍କଠାରେ ଭରପୂର ହୋଇ ରହିଥିଲା । ତେଣୁ ସେ ଜଣେ ଉଚ୍ଚକୋଟୀର ଲେଖକ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

୧୯୩୨ ମସିହା ନଭେମ୍ବର ୧୭ ତାରିଖରେ ଲଣ୍ଡନ ଗୋଲଟେବୁଲ ବୈଠକରେ ଆମ୍ବେଦକର ଯୋଗ ଦେଇଥିଲେ । ଯେଉଁଥିରେ କି, ଅଛୁଆଁ ଜାତିର ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ନିର୍ବାଚନମଣ୍ଡଳୀ ରଖାଯିବାର ସ୍ଥିର ହେଲା । କିନ୍ତୁ ଏଭଳି ନିର୍ବାଚନ ମଣ୍ଡଳୀ ଅଛୁଆଁ ଜାତିଙ୍କ ପାଇଁ ସଂରକ୍ଷିତ ହେଲେ ଜାତିଆଣ ଭାବ ବଢ଼ିବ ବୋଲି ମହାତ୍ମାଗାନ୍ଧୀ ଅନଶନ କରିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଏକ ଚୁକ୍ତି ସ୍ୱାକ୍ଷର ହୋଇ ହରିଜନମାନଙ୍କ ପାଇଁ ପାର୍ଲିଆମେଣ୍ଟରେ ୭୧ଟି ବଦଳରେ ୧୮୪ଟି ସ୍ଥାନ ପାଇଲେ । ପରବର୍ତ୍ତୀ ସମୟରେ ୧୯୪୧ ମସିହା ଜୁଲାଇ ମାସରେ ଇଂରେଜ ସରକାରଙ୍କ ଦ୍ୱାରା ଗଠନ କରାଯାଇଥିବା ସେନାବାହିନୀ କମିଟିର ସଦସ୍ୟ ରୂପେ ଆମ୍ବେଦକରଙ୍କୁ ନିଆଯାଇଥିଲା । ଫଳରେ ମାହାରା ଶ୍ରେଣୀର ଅଛୁଆଁ ଜାତିକୁ ସେନାଛାଉଣୀରେ ନିଯୁକ୍ତି ଦେବାକୁ ଦୃଢ଼ ଦାବୀ କଲେ ଏବଂ ସଫଳ ହୋଇ ମାହାରା ବାଟାଲିୟନ ମଧ୍ୟ ଗଠନ କରିଥିଲେ । ଛୁଆଁ ଅଛୁଆଁ ଭେଦଭାବ ଯୋଗୁଁ ମାହାରା ଜାତିର ଲୋକେ ଉଚ୍ଚଶିକ୍ଷା ପାଇଁ ବଞ୍ଚିତ ହେଉଥିଲେ । ତେଣୁ ସେମାନଙ୍କୁ ଉଚ୍ଚଶିକ୍ଷା ଦେବା ନିମନ୍ତେ ୧୯୪୭ ମସିହା ଜୁନ୍ ମାସ ୨୦ ତାରିଖରେ ଜାତି ଭାଷା ଓ ହୀନମାନ୍ୟତାର ଊର୍ଦ୍ଧ୍ୱରେ ରଖିବାର ଲକ୍ଷ୍ୟ ନେଇ ବୁଦ୍ଧଙ୍କ ସ୍ମୃତିରେ 'ସିଦ୍ଧାର୍ଥ କଲେଜ' ନାମକ ଏକ କଲେଜ୍ ଗଠନ କଲେ । ୧୯୪୭ ମସିହାରେ ଯେତେବେଳେ ହିନ୍ଦୁସ୍ଥାନ ଓ ପାକିସ୍ଥାନ ଭଳି ଦୁଇଟି ଦେଶ ବିଭାଜନ ହେବାକୁ ଲାଗିଲା, ସେତେବେଳେ ପାକିସ୍ଥାନ ଅଞ୍ଚଳରେ ମୁସଲମାନଙ୍କ ସହ ବସବାସ କରୁଥିବା ଅଛୁଆଁ ଜାତିର ଲୋକମାନଙ୍କର କ'ଣ ହେବ ବୋଲି ଆମ୍ବେଦକର ପ୍ରଶ୍ନ ଉଠାଇ ସରକାରଙ୍କ ନିକଟରେ ଆନ୍ଦୋଳନ କଲେ । ଯାହାଫଳରେ କି ୧୯୪୭ ମସିହା ଏପ୍ରିଲ୍ ୨୯ ତାରିଖରେ ଆନ୍ଦୋଳନ ସଫଳ ହେଲା । ସର୍ଦ୍ଦାରବଲ୍ଲଭ ଭାଇ ପଟେଲ ଶାସନ ବିଧାୟକ ସଭାରେ ଅସ୍ପୃଶ୍ୟତା ଉଠାଇବା ପାଇଁ ବିଲ ଆଗତ କଲେ ଏବଂ ତାହା ଗୃହୀତ ହୋଇ 'ଅସ୍ପୃଶ୍ୟତା' ଏକ ଦଣ୍ଡନୀୟ ଅପରାଧ ଘୋଷଣା ହେଲା । ଯାହାକି ଭାରତ ଇତିହାସରେ ଏହା ଏକ ଗୌରବର ଦିନ ଅଟେ । ଆମ୍ବେଦକରଙ୍କ ଅକ୍ଲାନ୍ତ ଉଦ୍ୟମ ଓ ଆନ୍ଦୋଳନ ଯୋଗୁଁ ଏପରି ଏକ ସାମାଜିକ କଳଙ୍କ ସବୁଦିନ ପାଇଁ ଧୋଇ ହୋଇଯାଇଥିଲା । ତେଣୁ ସାରା ବିଶ୍ୱର ନେତାମାନେ ତାଙ୍କୁ ପ୍ରଶଂସା କରିଥିଲେ ।

ଯେଉଁ ପିଲାଙ୍କୁ ଦିନେ ଘୃଣା କରି ସ୍କୁଲରେ ଓ ଶଗଡ଼ ଗାଡ଼ିରେ ବସାଇ ଦିଆଯାଇ ନଥିଲା, କୂଅ ପୋଖରୀରୁ ପାଣି ପିଇବାର ସୁଯୋଗରୁ ବଞ୍ଚିତ କରାଯାଇଥିଲା, ସେହି ପିଲାଟି ଦିନେ ୧୯୪୨ ମସିହା ଜୁନ୍ ମାସରେ ଭାଇସ୍‌ରାୟଙ୍କ କାଉନ୍‌ସିଲ୍‌ରେ ଶ୍ରମମନ୍ତ୍ରୀ ରୂପେ ଯୋଗଦେଇ ଶ୍ରମିକମାନଙ୍କର ଉନ୍ନତି ପାଇଁ ଅନେକ ପଦକ୍ଷେପ ନେଇଥିଲେ ଏବଂ ବିଧାୟକ ସଭାରେ ଅସ୍ପୃଶ୍ୟତା ଏକ ଦଣ୍ଡନୀୟ ଅପରାଧ ରୂପେ ପାସ୍ କରାଇଥିଲେ ।

ଭାରତବର୍ଷ ୧୯୪୭ ମସିହା ଅଗଷ୍ଟ ୧୫ରେ ସ୍ୱାଧୀନ ହେଲା । ଜବାହରଲାଲ୍ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ଆମ୍ବେଦକର ସ୍ୱତନ୍ତ୍ର ଭାରତର ପ୍ରଥମ ଆଇନ୍ ମନ୍ତ୍ରୀ ହେଲେ । ସମଗ୍ର ଦେଶ ଜବାହରଲାଲ୍ ନେହେରୁଙ୍କ ମନ୍ତ୍ରୀ ପରିଷଦକୁ ସ୍ୱାଗତ କଲେ । ଦେଶକୁ ସ୍ୱାଧୀନତା ମିଳିଗଲା । କିନ୍ତୁ କୋଟି କୋଟି ଲୋକଙ୍କ



ଏହି ଦେଶରେ ଶାସନ କିଏ କରିବ ବା କିଏ ଚଳାଇବ, ନିର୍ବାଚନ କିପରି ହେବ, ଦେଶର ଦରକାରୀ କାର୍ଯ୍ୟ, ଆଇନକାନୁନ୍ କିପରି ହେବ, ସରକାର କେମିତି କାର୍ଯ୍ୟ କରିବେ, ନ୍ୟାୟାଳୟ କିପରି କାମ କରିବ, ଏହି ସବୁ ମାମଲାକୁ ନିର୍ଣ୍ଣୟ କିପରି ହେବ ଏବଂ କାନୁନ୍ କେମିତି ହେବ, ଏହାର ବୃହତ୍ ଚିଠା ବା ସମ୍ବିଧାନ ତିଆରି କରିବା ଦରକାର ହେଲା। ସମ୍ବିଧାନ ତିଆରି କରିବା କୌଣସି ସହଜ କାମ ନୁହେଁ। ଭାରତୀୟ ସମ୍ବିଧାନର କାହାଣୀ ଖୁବ୍ ଆକର୍ଷଣୀୟ। ପ୍ରାଚୀନ ଭାରତର ଶାସକଗଣ ଧର୍ମ ସହ ଜଡ଼ିତ ଥିଲେ। ପ୍ରଜାମାନଙ୍କୁ ଧର୍ମର ପାଳନ କରିବାକୁ ହେଉଥିଲା। ଧର୍ମ କୌଣସି ମାନ୍ୟତା, ସଂପ୍ରଦାୟ ବା ଗୋଷ୍ଠୀ ସହ ସଂପୃକ୍ତ ନଥିଲା। କେବଳ ଧର୍ମୀୟ ଶାସନର ଭାବନାରେ ଶାସନ ଚାଲୁଥିଲା। ସେସମୟରେ ରାଜଧର୍ମ ହିଁ ସମ୍ବିଧାନ ଥିଲା। ଭାରତୀୟ ଶାସନତନ୍ତ୍ର ସମ୍ବିଧାନର ପ୍ରଥମ ସୂତ୍ର– ବେଦ, ପୁରାଣ, ମହାଭାରତ ଓ ରାମାୟଣରୁ ମିଳେ। ଏତଦ୍‌ବ୍ୟତୀତ ବୌଦ୍ଧ, ଜୈନ ସାହିତ୍ୟ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଏବଂ ଶୁକ୍ରନୀତିରୁ ପ୍ରାଚୀନ ଭାରତର ସମ୍ବିଧାନ ସମ୍ବନ୍ଧୀୟ ସୂତ୍ର ମିଳିଥାଏ। ଭାରତର ସ୍ୱାଧୀନତା ପୂର୍ବରୁ ସମ୍ବିଧାନ ପ୍ରସ୍ତୁତ କରିବା ନିମନ୍ତେ ବହୁବାର ଚିନ୍ତା କରାଯାଇଥିଲା। କିନ୍ତୁ ଇଂରେଜ ଶାସକମାନେ ମତ ଦେଲେ ଯେ ନିଜ ପାଇଁ ସମ୍ବିଧାନ ତିଆରି କରିବାର କ୍ଷମତା ଭାରତୀୟଙ୍କ ନାହିଁ। ଫଳରେ ସମ୍ବିଧାନ ସଂଶୋଧନ ବାବଦରେ ନିଷ୍ପତ୍ତି ନେବା ପାଇଁ ଇଂରେଜମାନଙ୍କର ସାଇମନ୍ କମିଶନ ଭାରତକୁ ଆସିଲା। ତେଣୁ ସମ୍ବିଧାନ ସଂଶୋଧନ ବା ସମ୍ବିଧାନ ତିଆରି ସମସ୍ୟାର ସମାଧାନ ପାଇଁ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରି ଏକ ଖସଡ଼ା ପ୍ରସ୍ତୁତ କଲା, ଯାହାକି ନେହେରୁ ରିପୋର୍ଟ ନାମରେ ପ୍ରସିଦ୍ଧ। ଏହା ଥିଲା ଭାରତୀୟମାନଙ୍କ ଦ୍ୱାରା ପ୍ରଥମ ରୂପରେଖ ।

ସମ୍ବିଧାନ ତିଆରି କରିବା କୌଣସି ସହଜ କାମ ନୁହେଁ। ବିଭିନ୍ନ ଦେଶର ସମ୍ବିଧାନକୁ ଅଧ୍ୟୟନ, ବିଧିର ଜ୍ଞାନ, ଭାରତ ଇତିହାସର ଘନିଷ୍ଠ ପରିଚୟ, ବିଭିନ୍ନ ଆଇନ୍‌କାନୁନ୍ ସଂପର୍କରେ ଦେଶ ଚଳାଇବା ପାଇଁ ବିଭିନ୍ନ ମତାମତର ବୁଦ୍ଧିମତା ଏହି ସବୁ ଗୁଣର ନିତାନ୍ତ ଆବଶ୍ୟକତା ଥିଲା।

ଭାରତୀୟ ସମ୍ବିଧାନ ଯେଉଁଭଳି ବିଶାଳକାୟ, ଏହାର ପ୍ରଣୟନ ପ୍ରକ୍ରିୟା ସେହିଭଳି ସୁଦୀର୍ଘ ସ୍ୱୀକୃତ। ସମ୍ବିଧାନ ପ୍ରଣୟନ ସଭାକୁ ଏହି ସମ୍ବିଧାନର ରୂପରେଖ ଦେବାପାଇଁ ପ୍ରାୟ ଦୁଇ ବର୍ଷ ଏଗାର ମାସ ୧୮ ଦିନ ଲାଗିଥିଲା। ଏଥିପାଇଁ ଗଠିତ କ୍ୟାବିନେଟ୍ ମିଶନ୍ ଯୋଜନା ଅନୁଯାୟୀ ୧୯୪୬ରେ ଅପ୍ରତ୍ୟକ୍ଷ ରୂପେ ରାଜ୍ୟ ବିଧାନ ପରିଷଦର ଅଙ୍ଗୀକାର ଆହ୍ୱାନ କରାଯାଇଥିଲା। ଏହି ସମ୍ବିଧାନ ସଭାରେ ମୋଟ୍ ୩୮୯ ଜଣ ସଦସ୍ୟ ଥିଲେ। ଇତ୍ୟବସରରେ ପାକିସ୍ଥାନ ବିଭାଜନ ହେତୁ ୧୯୪୭ ଅକ୍ଟୋବର ୩୧ ତାରିଖରେ ନିର୍ବାଚିତ ସଦସ୍ୟଙ୍କ ସଂଖ୍ୟା ୨୯୯ରେ ସୀମିତ ରହିଥିଲା। ୧୯୪୯ ନଭେମ୍ବର ୨୬ରେ ଅନୁଷ୍ଠିତ ସାମ୍ବିଧାନିକ ସଭାରେ ଉପସ୍ଥିତ ୨୪୮ ସଦସ୍ୟ ସମ୍ବିଧାନରେ ନିଜ ନିଜର ସ୍ୱାକ୍ଷର ଲିପିବଦ୍ଧ କରିଥିଲେ। ସ୍ୱାଧୀନତା ପ୍ରାପ୍ତିର ବର୍ଷକ ପୂର୍ବରୁ ୧୯୪୬ ଡିସେମ୍ବର ୧୧ ତାରିଖ ଦିନ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ସମ୍ବିଧାନ ସଭାର ସ୍ଥାୟୀ ଅଧ୍ୟକ୍ଷ ରୂପେ ନିର୍ବାଚିତ କରାଯାଇଥିଲା। ବିଭିନ୍ନ ସମିତିର ପ୍ରମୁଖଙ୍କୁ ନେଇ ସମ୍ବିଧାନ ଚିଠା ଖସଡ଼ା ବା ପାଣ୍ଡୁଲିପି ସମିତି ୧୯୪୭ ଅଗଷ୍ଟ ୨୯ ତାରିଖରେ ଗଠିତ ହୋଇଥିଲା । ଡକ୍ଟର ଭୀମରାଓ ଆମ୍ବେଦକର ଏହାର ଅଧ୍ୟକ୍ଷ ରୂପେ ମନୋନୀତ ହୋଇଥିଲେ । ଅନ୍ୟତମ ସଦସ୍ୟ ରୂପେ ଏନ୍ ଗୋପାଲ ସ୍ୱାମୀ, କେ ଏମ୍ ମୁନ୍‌ସୀ, ବିଏଲ୍ ମୋରେ, ଡିପି ଖୈତାନଙ୍କ ସ୍ୱର୍ଗବାସ ଉତ୍ତାରୁ ତାଙ୍କ ସ୍ଥାନରେ କୃଷ୍ଣମାଚାରୀଙ୍କୁ ସମ୍ବିଧାନ ଚିଠା ସମିତିର ଅନ୍ୟତମ ସଦସ୍ୟ ରୂପେ ନିର୍ବାଚିତ କରାଯାଇଥିଲା। ଏହି ସମ୍ବିଧାନ ସଭା ଏଭଳି ଏକ ସମ୍ବିଧାନ ପ୍ରସ୍ତୁତ କଲା, ଯାହା ସମଗ୍ର ଦେଶରେ କାର୍ଯ୍ୟକାରୀ ହୋଇ ବିଭିନ୍ନ ବିବିଧତା ମଧ୍ୟରେ ଐକ୍ୟ ସ୍ଥାପନ କରିବାରେ ସଫଳ ହୋଇପାରିଲା। ଏହା କିଛି ସାଧାରଣ ଘଟଣା ନଥିଲା। ଡକ୍ଟର ଆମ୍ବେଦକର ୨୫ ନଭେମ୍ବର ୧୯୪୯ରେ ସମ୍ବିଧାନ ସଭାରେ ବକ୍ତବ୍ୟ ଦେଇ ଅତ୍ୟନ୍ତ ମହତ୍ତ୍ୱ ପୂର୍ଣ୍ଣ ଶବ୍ଦରେ କହିଥିଲେ, 'ମୁଁ ଅନୁଭବ କରୁଛି ଯେ ସମ୍ବିଧାନ ଯେତେ ଭଲ ହେଉନା କାହିଁକି, ଏହାକୁ ପରିଚାଳନା କରୁଥିବା ବ୍ୟକ୍ତି ବିଶେଷ ଯଦି ମନ୍ଦ ହୁଅନ୍ତି ନିଶ୍ଚିତ ରୂପେ ସମ୍ବିଧାନ ମଧ୍ୟ ମନ୍ଦ ପ୍ରମାଣିତ ହେବ। ଅପରପକ୍ଷେ, ସମ୍ବିଧାନ ଯେତେ ଖରାପ ହେଲେ ମଧ୍ୟ ଏହାକୁ ଚଳାଇବା ଲୋକ ଯଦି ଠିକ୍ ହୁଅନ୍ତି, ତେବେ ସମ୍ବିଧାନ ମଧ୍ୟ ଠିକ୍ ସାବ୍ୟସ୍ତ ହେବ।'

୧୯୪୯, ନଭେମ୍ବର ୨୬ ତାରିଖରେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ନିଜର ଉଦ୍‌ଯାପନୀ ଭାଷଣରେ ସ୍ମରଣୀୟ ଶବ୍ଦରେ ଦେଶବାସୀଙ୍କୁ ଚେତାବନୀ ଦେଇ କହିଥିଲେ ଯେ, ସାମଗ୍ରିକ ଭାବେ ସମ୍ବିଧାନ ସଭା ଏକ ସୁନ୍ଦର ସମ୍ବିଧାନ ତିଆରି କରିବାରେ ସଫଳ ହୋଇଛି ଏବଂ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଏହି ସମ୍ବିଧାନ ଦେଶର ଆବଶ୍ୟକତା ପୂରଣ କରିପାରିବ। କିନ୍ତୁ ନିର୍ବାଚିତ ହୋଇ ଆସୁଥିବା ଲୋକେ ଯଦି ଯୋଗ୍ୟ, ଚରିତ୍ରବାନ୍ ଓ ସଚ୍ଚୋଟ ହୁଅନ୍ତି ତେବେ ସେମାନେ ତ୍ରୁଟିପୂର୍ଣ୍ଣ ସମ୍ବିଧାନକୁ ମଧ୍ୟ ସର୍ବୋତ୍ତମ କରି



ତୋଳିବେ। ଯଦି ସେମାନଙ୍କଠାରେ ଏହି ଗୁଣର ଅଭାବ ଘଟେ, ତେବେ ଏହି ସମ୍ବିଧାନ ଦେଶର କୌଣସି ହିତସାଧନ କରିପାରିବ ନାହିଁ।

ଯେତେବେଳେ ୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ଡକ୍ଟର ଆମ୍ବେଦକର ଏକ ଉଚ୍ଚ ଆସନର ଅଧିକାରୀ ହେଲେ, ଗୋଟିଏ ଉପମହାଦେଶର ଶାସନ ଖସଡ଼ାର ଭାର ତାଙ୍କ ହାତରେ ଦିଆଗଲା। ଅନେକ ନିୟମ କାନୁନର ଏକ ବିଶ୍ୱ ବିଶ୍ରୁତ ବୃହତ୍ତମ ସମ୍ବିଧାନର ଜନକ ରୂପେ ତାଙ୍କୁ ବୁଝାଗଲା। କୋଟି କୋଟି ଜନତା ଓ ଦେଶର ସେ ହେଲେ ଭାଗ୍ୟ ବିଧାତା। କ୍ରିପ୍ଟ କମିଟିରେ ସେ ହେଲେ ଚେୟାରମ୍ୟାନ୍। ଆମ ଦେଶର ଇତିହାସରେ ଏହା ଏକ ଅଭୁତପୂର୍ବ ଘଟଣା।

ଆମ୍ବେଦକରଙ୍କ ମୁଣ୍ଡରେ ବିଧିବିଧାନର ଜଞ୍ଜାଳ ଲଦି ଦିଆଗଲା। ଘଣ୍ଟା ଘଣ୍ଟା ଦିନରାତି ନିରବଚ୍ଛିନ୍ନ ପରିଶ୍ରମ କରି ସମ୍ବିଧାନ ପ୍ରଣୟନରେ ଲାଗିପଡିଲେ। ଦିନେ ହିନ୍ଦୁଧର୍ମ ନିୟମକୁ ମହର୍ଷି ମନୁ ପ୍ରଣୟନ କରିଥିଲେ। ହେଲେ ଆଜି ଗୋଟାଏ ବିଶାଳ ଦେଶର ଆଇନ୍‌କୁ ଆଉ ଜଣେ ମନୁ ସୃଷ୍ଟି କଲେ। ତେଣୁ ଆଜି ଭାରତ ଇତିହାସରେ ଆମ୍ବେଦକରଙ୍କୁ ଆଧୁନିକ ମନୁ ବୋଲି କୁହାଯାଇଅଛି। ଏହାର ଗୋଟିଏ ମାତ୍ର କାରଣ ହେଲା, ଭାରତୀୟ ସମ୍ବିଧାନ ନିର୍ମାଣ ଭଳି ଏକ ମହତ୍ତ୍ୱ ପୂର୍ଣ୍ଣ କାର୍ଯ୍ୟରେ ତାଙ୍କର ଯୋଗଦାନ। କେହି କେହି ତାଙ୍କୁ କହିଲେ– 'ଏ ଯୁଗର ଶୁଦ୍ରମୁନି'। ମହାଭାରତର ପ୍ରଣେତା ଭାବେ ନୁହେଁ ଭାରତର ସମ୍ବିଧାନ ପ୍ରଣେତା ଭାବେ। ତାଙ୍କର ସ୍ୱାସ୍ଥ୍ୟ ଭଲ ନଥାଏ। ତଥାପି କଠୋର ପରିଶ୍ରମ କରି ଜୀବନର ସକଳ ବୁଦ୍ଧି ବିଦ୍ୟା ଲଗାଇ ଶେଷରେ ସେ ଏକ ବିରାଟ ସମ୍ବିଧାନର ମୁଣ୍ଡି ମାରିଲେ। ସେଥିରେ ଦଳିତ ଜାତିମାନଙ୍କର ସୁବିଧା ପାଇଁ ମଧ୍ୟ ସେ କେତେକ ନିୟମ ଉଲ୍ଲେଖ କରିଥିଲେ, ଯାହାର ସୁଫଳ ଆଜି ତଫସିଲଭୁକ୍ତ ଜାତି ଓ ଉପଜାତିମାନେ ଭୋଗ କରୁଛନ୍ତି।

ସମ୍ବିଧାନ ଗଢ଼ା କମିଟିରେ ସାତଜଣ ସଭ୍ୟ ଥିଲେ ବି କେହି ପୂର୍ଣ୍ଣ ସମୟ ଦେଇ କାର୍ଯ୍ୟ କରି ନଥିଲେ। ଏଣୁ ଆମ୍ବେଦକରଙ୍କୁ ଦେଶ ବିଦେଶରୁ ପ୍ରଶଂସା କରାଗଲା। ଭାରତର ସମ୍ବିଧାନର ଜନକ ବୋଲି ତାଙ୍କୁ ପରିଚିତ କରାଗଲା। ଏକ ନୂଆ ଯୁଗର ସମ୍ବିଧାନ ତାଙ୍କରିଠାରୁ ଜନ୍ମ ନେଲା।

ସମ୍ବିଧାନର ଅସ୍ପୃଶ୍ୟତା ନିବାରଣ ସଂଭାଗ ଥିଲା, ତାହା ୨୯ ନଭେମ୍ବର ୧୯୪୮ରେ ସ୍ୱୀକାର କରାଗଲା। ଆମ୍ବଦକରଙ୍କ ସଂଘର୍ଷମୟ ସୁପରିଣାମ ରୂପେ ନିଜ ଜୀବନରେ ପରିଣତ ହେଲା। ଦେଶର ସାମାଜିକ ଜୀବନରେ ଏକ ନୂଆ ଅଧ୍ୟାୟର ପ୍ରାରମ୍ଭ ହେଲା। ଭାରତୀୟ ସମ୍ବିଧାନର ନିର୍ମାଣରେ ଯେଉଁମାନେ ଅସଫଳ ହୋଇଥିଲେ, ସେମାନଙ୍କର ଜବାବ୍‌ରେ ଆମ୍ବେଦକରଙ୍କ ଏହି ଉକ୍ତି ମନେ ରଖିବାକୁ ହେବ ଯେ–

ଭାରତୀୟମାନେ ନିଜକୁ ନିଜ ବିଶ୍ୱାସଘାତକତା ଯୋଗୁଁ ହିଁ ନିଜର ସ୍ୱତନ୍ତ୍ରତା ହରାଇ ବସିବାକୁ ପଡିଥିଲା। ସିନ୍ଧୁର ରାଜା ଦାହିରଙ୍କୁ ମହମ୍ମଦ ବିନ୍ କାଶିମ୍ ଯୁଦ୍ଧରେ ପରାସ୍ତ କରିଥିଲେ। ଏହି ହାରିବାର ଏକମାତ୍ର କାରଣ ହେଉଛି କି, ସିନ୍ଧୁ ରାଜାଙ୍କ ସେନାର ସେନାପତିମାନେ କାସିମ୍ ସେନା ସହିତ ରାଜାଙ୍କ ପାଇଁ ହିଁ ଲଢ଼ି ନଥିଲେ। ପୃଥ୍ୱୀରାଜ ଚୌହାନଙ୍କ ବିରୁଦ୍ଧରେ ଲଢ଼ିବାକୁ ମହମ୍ମଦ ଘୋରୀଙ୍କୁ ଜୟଚନ୍ଦ୍ର ଡ଼କାଇ ଥିଲେ। ଯେବେ ଶିବାଜୀ ହିନ୍ଦୁଙ୍କ ସପକ୍ଷରେ ଲଢ଼ୁଥିଲେ ତ ଅନ୍ୟ ମରାଠା ଓ ରାଜପୁତ ସର୍ଦ୍ଦାର ମୋଗଲଙ୍କ ପକ୍ଷରୁ ଲଢ଼ୁଥିଲେ। ଯେବେ ଶିଖ୍ ଇଂରେଜ୍‌ଙ୍କ ବିରୁଦ୍ଧରେ ଲଢ଼ୁଥିଲେ ତେବେ ସେମାନଙ୍କ ନେତାମାନେ କିଛି କରିପାରୁ ନଥିଲେ। ଏହି ପ୍ରକାର କାର୍ଯ୍ୟ କେବେ ହେବାକୁ ଦିଆଯାଇପାରିବ ନାହିଁ। ତେଣୁ ପ୍ରତିଜ୍ଞା କରିଥିଲେ ଯେ, ତାଙ୍କର ଶେଷ ରକ୍ତ ବିନ୍ଦୁ ଥିବା ପର୍ଯ୍ୟନ୍ତ ଭାରତର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ପାଇଁ ଲଢ଼େଇ କରିବେ।

ଡକ୍ଟର ଭୀମରାଓ ଆମ୍ବେଦକର ଭାରତମାତାର ଜଣେ ମହାନ ସନ୍ତାନ। ଭାରତୀୟ ସମ୍ବିଧାନର ପ୍ରଣେତା ଭାବେ ତାଙ୍କର ଅବଦାନ ଅତୁଳନୀୟ । ବିଶେଷ କରି, ଜାତିପ୍ରଥାକୁ ଭାଙ୍ଗିବା ଓ ଅସ୍ପୃଶ୍ୟ ନିବାରଣ କ୍ଷେତ୍ରରେ ସେ ଯେଉଁ ରଚନାତ୍ମକ କାର୍ଯ୍ୟ କରିଯାଇଛନ୍ତି, ତାହା ତାଙ୍କୁ କେବଳ ଅମର କରି ରଖିବ ନାହିଁ, ବାଞ୍ଛିତ, ଅବହେଳିତ ଓ ଉପେକ୍ଷିତଙ୍କୁ ମାର୍ଗଦର୍ଶନ କରାଇବାରେ ସହାୟକ ହେବ। ଦଳିତଙ୍କ ନ୍ୟାଯ୍ୟ ଦାବି ପାଇଁ ସେ ଆଜୀବନ ଲଢ଼େଇ କରିଛନ୍ତି। ପିଲାଟି ଦିନରୁ ଛେଉଣ୍ଡ ହୋଇ ଯେପରି ଭାବେ ଅସ୍ପୃଶ୍ୟତାର ଶିକାର ହେବା ସହ ନିର୍ଯ୍ୟାତିତ ଓ ନିଷ୍ପେଷିତ ହୋଇ ନିଜର ଧୀଶକ୍ତି ବଳରେ ନିଜକୁ ଗଢ଼ିଛନ୍ତି ଏବଂ ଦୁର୍ବଳ ମୁହଁରେ ବଳ ଦେବାରେ ଯେଉଁ ପ୍ରେରଣା ଯୋଗାଇଛନ୍ତି, ସେଥିପାଇଁ ସେ ଏକ ଆଲୋକ ସ୍ତମ୍ଭ। ବ୍ରାହ୍ମଣ୍ୟବାଦ ଓ ତଥାକଥିତ ସୁବିଧାବାଦୀଙ୍କ ମୁଖା ଖୋଲିବାକୁ ଯାଇ ସେ ଆରମ୍ଭ କରିଥିଲେ ଦଳିତ ଅଭିଯାନ। ଅନୁବାଦୀ ଚିନ୍ତାଧାରାର ସେ ଥିଲେ ଘୋର ବିରୋଧୀ। ସେ ତାଙ୍କର ପୂର୍ବ ପ୍ରତିଜ୍ଞାକୁ ସାକାର କରିବା ପାଇଁ ସମ୍ବିଧାନରେ ୧୭ ଧାରାରେ ଅସ୍ପୃଶ୍ୟତା ବିରୋଧରେ ତଥା ଦଳିତ ଓ ନାରୀମାନଙ୍କର ଉତ୍‌ଥାନ ପାଇଁ ସମ୍ବିଧାନର ବିଭିନ୍ନ ଧାରାରେ ସ୍ୱତନ୍ତ୍ର ଆଇନ୍‌ର ବ୍ୟବସ୍ଥା



କରିଯାଇଛନ୍ତି । ଆମ ଦେଶକୁ ଏକ ସାର୍ବଭୌମ ଗଣତନ୍ତ୍ର ଓ ଧର୍ମ ନିରପେକ୍ଷ ରାଷ୍ଟ୍ରଭାବେ ଗଢ଼ି ତୋଳିବା ପାଇଁ ତାଙ୍କର ଅବଦାନ ଅଦ୍ୱିତୀୟ ଅଟେ ।

ବିଶ୍ୱ-ବିଶ୍ରୁତ ବହୁ ତୁଙ୍ଗ ନେତା, ରାଷ୍ଟ୍ର ପୁରୁଷ ଏବଂ ପ୍ରଜ୍ଞାଗୁରୁ, ଦାର୍ଶନିକ ଓ ସାରସ୍ୱତ ପୁରୁଷ, ଜନଗଣଙ୍କ ପ୍ରଭାବିତ କରିବା ପାଇଁ ତାଙ୍କର ପାଣ୍ଡିତ୍ୟ ତଥା ସାରସ୍ୱତ ବାଗ୍ମିତାକୁ ଏକ ଅମୋଘ ଆୟୁଧ ରୂପେ ଯୁଗଯୁଗାନ୍ତର ପ୍ରୟୋଗ କରି ଆସିଛନ୍ତି । ପ୍ରବାହୀନୀ ସମସ୍ତ ସ୍ରୋତସ୍ୱିନୀ, ନିର୍ବାକ ଧରିତ୍ରୀ, ନରୋମଣ୍ଡନ, ନଭସ୍ୱାନ, ନଭୋମଣୀଙ୍କ ସମେତ ଇତିହାସ ଓ ସାହିତ୍ୟ ତାର ପ୍ରତ୍ୟକ୍ଷ ଦର୍ଶୀ ଓ ମୁଖସାକ୍ଷୀ । ପ୍ରତ୍ୟେକ ଗତି ଓ ପ୍ରତ୍ୟେକ ଦେଶରେ ଏଭଳି ଯୁଗପୁରୁଷଙ୍କ ଆବିର୍ଭାବ ଘଟିଥାଏ ଊଣାଅଧିକେ । ସେହି ଯୁଗାନ୍ତକାରୀ କାଳଜୟୀ ଶିଖର ପୁରୁଷଗଣ ତାଙ୍କର ସ୍ୱକୀୟ ଆଦର୍ଶ ଏବଂ ବ୍ୟକ୍ତିତ୍ୱର ଅମ୍ଳାନ ରୁଗ୍ଣ ଜନଜୀବନରେ ଛାଡ଼ି ଯାଇଅଛନ୍ତି । ସେଇ ସବୁ ପ୍ରେରଣା ପୁରୁଷଙ୍କର ଜୀବନୀ ଏବଂ ଚିନ୍ତାଧାରା ଯେଭଳି ମନୋଜ୍ଞ, ସେହିଭଳି ପ୍ରଶିକ୍ଷଣାମୂଳକ ଏବଂ ପ୍ରେରଣାପ୍ରଦ । ସର୍ବତ୍ର ସର୍ବଥା ଏବଂ ସର୍ବଦା ଏହା ଅସ୍ୱୀକାର କରିବାର ନୁହେଁ ।

ଭାରତ ଭୂଖଣ୍ଡରେ ଏଭଳି କୃତବିଦ୍ୟ ଏବଂ ପ୍ରଥିତ ଯଶା ଶିଖର ପୁରୁଷଙ୍କ ଆବିର୍ଭାବ ଯେଭଳି ବହୁରେ, ବହୁତ୍ୱ ସେଭଳି ବହୁଜ୍ଞ ଏବଂ ବହୁଧାରେ ଋଦ୍ଧିମନ୍ତ । ସର୍ବବୃହତ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତବର୍ଷର ସମ୍ବିଧାନକୁ ସଂପୂର୍ଣ୍ଣ କରିବା କମ୍ କଥା ନୁହଁ । ଦୀର୍ଘ ଦିନର ପରିଶ୍ରମକୁ ସୁଫଳ କରି ୧୯୫୦ ମସିହା ଜାନୁୟାରୀ ୨୪ ତାରିଖରେ ସର୍ବସାଧାରଣଙ୍କ ନିମନ୍ତେ ସ୍ୱାକ୍ଷର କରି ଜାନୁୟାରୀ ୨୬ ତାରିଖରେ ଗୃହୀତ କରାଇବା ଭାରତ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ପଞ୍ଚାୟତଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ଏବଂ ସରପଞ୍ଚଙ୍କଠାରୁ ଆରମ୍ଭ କରି ରାଷ୍ଟ୍ରପତିଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏକ ସମ୍ବିଧାନରେ ବାନ୍ଧିବା କମ୍ କଥା ନୁହେଁ । ଡକ୍ଟର ଆମ୍ବେଦକର ଏକାଧାରରେ ଜଣେ ବାରିଷ୍ଟର, ଆଇନଜ୍ଞ, ଆଇନକର୍ତ୍ତା, ଆଇନମନ୍ତ୍ରୀ, ଆଇନ୍ କଲେଜ ଅଧକ୍ଷ, କଲେଜ ପ୍ରତିଷ୍ଠାତା, ଗୋଲଟେବୁଲ୍ ସଭାର ସଦସ୍ୟ, ବାଗ୍ମି ଓ ସଂଯମୀ । ତାଙ୍କର ବହୁ ଉପଦେଶ ଆଜି ଦଳିତ ତଥା ନିଷ୍ପେଷିତଙ୍କୁ ଉତ୍ସାହିତ କରିଅଛି । ସେ ସର୍ବସାଧାରଣଙ୍କ ନିମନ୍ତେ କିଛି ହିତବାଣୀ କହିଯାଇଥିଲେ, ସେଥି ମଧ୍ୟରେ–

କ) ଛେଳିକୁ ବଳି ଦିଆଯାଏ, ବାଘକୁ ନୁହେଁ ଆପଣମାନେ ବାଘ ହେବାକୁ ଚେଷ୍ଟା କରନ୍ତୁ ।

ଖ) ଲୁଣ୍ଠିତ ହୋଇଥିବା ଅଧିକାର ପାଇବାକୁ ହେଲେ ଅବିରାମ ସଂଘର୍ଷ ଦରକାର ।

ଗ) ଆପଣ ନିଜର ଦାସତ୍ୱର ବନ୍ଧ ନକୁ ନିଜେ ହିଁ ଛିଣ୍ଡାନ୍ତୁ ।

ଘ) ସାମାଜିକ କ୍ରାନ୍ତିର ସଂଗ୍ରାମରେ ନାରୀବର୍ଗ ମଧ୍ୟ ପୁରୁଷଙ୍କ ସହଯୋଗୀ ହେବା ଦରକାର ଇତ୍ୟାଦି ।

ସେ ଯଦିଓ ଆଜି ଇହଜଗତରେ ନାହାନ୍ତି ତଥାପି ତାଙ୍କ ଦ୍ୱାରା ରଚିତ ସମ୍ବିଧାନ ଏକ ଅମୂଲ୍ୟ ରତ୍ନ ହିସାବରେ ଦଣ୍ଡାୟମାନ । ତାଙ୍କର କୀର୍ତ୍ତିକଳାପ ଆଜି ମଧ୍ୟ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସେ ଭାରତର ଗୋଟିଏ ଅମୂଲ୍ୟ ରତ୍ନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତ ସରକାର ତାଙ୍କୁ ମରଣୋତ୍ତର ଭାବେ 'ଭାରତ ରତ୍ନ' ଉପାଧିରେ ଭୂଷିତ କରିଛନ୍ତି । କିନ୍ତୁ ତାହା ତାଙ୍କ ପାଇଁ ଯଥେଷ୍ଟ ନୁହଁ । ଯେହେତୁ ଜୀବନ ଥିବା ଭିତରେ ଯଦି ଏହି ଉପାଧିରେ ଭୂଷିତ କରିଥାନ୍ତେ, ନିଶ୍ଚିତ ରୂପେ ଆମ୍ବେଦକରଙ୍କ ପରିଶ୍ରମର ଫଳ ବିକଶିତ ହୋଇପାରିଥାନ୍ତା । ସେ ଯାହା ହେଉ, ଭାରତମାତାର ଯୋଗ୍ୟ ସନ୍ତାନ ଡକ୍ଟର ଭୀମରାଓ ଆମ୍ବେଦକର ଯୁଗ ଯୁଗ ପାଇଁ ଅମର ହୋଇ ରହିବେ, ସନ୍ଦେହ ନାହିଁ । 'ଜୟ ଭୀମ' ।

ଗାଦବା ସାହି, ନବରଙ୍ଗପୁର







# ବ୍ୟାସକବି ଫକୀର ମୋହନ

ସୁପ୍ରଭା ମିଶ୍ର

କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ଓଡ଼ିଶାର ସାମାଜିକ ଇତିହାସରେ ମଧ୍ୟ ଫକୀର ମୋହନ ଜଣେ ବଳିଷ୍ଠ ଐତିହାସିକ ଚରିତ୍ର ହୋଇ ରହିଯାଇଛନ୍ତି । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଭଳି ଫକୀର ମୋହନ ମଧ୍ୟ ଚାହିଁଥିଲେ ଓଡ଼ିଶାକୁ ଏକତ୍ର କରିବାକୁ । ଓଡ଼ିଶାର ଅଖଣ୍ଡିତ ରୂପ ଥିଲା ତାଙ୍କର ସ୍ୱପ୍ନ । ଓଡ଼ିଶା ତଥା ଓଡ଼ିଆ ଭାଷାକୁ ସର୍ବଭାରତୀୟ ସ୍ତରରେ ଗୌରବାନ୍ୱିତ କରିବା ପାଇଁ ସେ ବହୁ ଉଦ୍ୟମ କରିଯାଇଛନ୍ତି । ତାଙ୍କର ସ୍ପଷ୍ଟ ବକ୍ତବ୍ୟ, ପ୍ରଖର ବୁଦ୍ଧିମତା, ସଙ୍ଗଠନ କ୍ଷମତା, ସହୃଦୟଶୀଳତା ପାଇଁ ବହୁ ସ୍ଥାନରେ ଅସୁବିଧା, ନିନ୍ଦା ପାଇଁ ସେ ଲାଞ୍ଛନାର ଶୀକାର ହୋଇଛନ୍ତି । ତଥାପି ସେହି ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱଟି ଆଜି ମଧ୍ୟ ଆମ ଆଗରେ ଏକ କିମ୍ବଦନ୍ତୀ ହୋଇ ଛିଡ଼ା ହୋଇଛନ୍ତି । ବ୍ୟାସ, ବାଲ୍ମିକୀ ବଳରାମ ଦାସ, ସାରଳା ଦାସଙ୍କ ପରି ଘରେ ଘରେ ଫକୀର ମୋହନଙ୍କ ସାହିତ୍ୟ ଓ ବହୁମୁଖୀ ପ୍ରତିଭା ଆଦୃତ ହୋଇଅଛି ।

୧୮୪୩ ମସିହା ଜାନୁଆରୀ ୧୩ ତାରିଖରେ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁରଠାରେ ବ୍ୟାସକବି ଫକୀର ମୋହନ ସେନାପତିଙ୍କର ଜନ୍ମ । ବାଲ୍ୟକାଳରେ ତାଙ୍କର ନାମ ଥିଲା ବ୍ରଜମୋହନ । ଶୈଶବରୁ ପିତୃମାତୃହୀନ ହୋଇ ଠାକୁର ମା' କୁଚିଳା ଦେଈଙ୍କ କୋଳରେ ସେ ମଣିଷ ହୋଇଥିଲେ । ଆବାଲ୍ୟରୁ ରୋଗ ଓ ଦାରିଦ୍ର୍ୟ ସହିତ ଲଢ଼ି ସେ ଅଧିକ ଶିକ୍ଷାଲାଭ କରିପାରି ନଥିଲେ । ବଡବାପାଙ୍କ ନିର୍ଦ୍ଦେଶରେ ସେ ଚାଟଶାଳୀରୁ ଉଠିଯାଇ ଅଝାଲ ସିଲେଇ ଓ ନିମକମାହାଲ୍ କାର୍ଯ୍ୟରେ ଯୋଗଦେଲେ । ହେଲେ ଈଶ୍ୱରଙ୍କ ଅସୀମ କରୁଣାରୁ ସେ ଅଳ୍ପଦିନ ପରେ ବାରବାଟୀ ସ୍କୁଲର ତୃତୀୟ ଶିକ୍ଷକ ପଦରେ ମାତ୍ର ଅଢେଇ ଟଙ୍କା ବେତନରେ ନିଯୁକ୍ତି ପାଇଲେ । ସେହିଠାରୁ ହିଁ ତାଙ୍କର କର୍ମମୟ ଜୀବନର ଶୁଭାରମ୍ଭ ହେଲା ।

କ୍ରମେ ବାଲେଶ୍ୱର ମିଶନ୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ପଦବୀ ଖାଲି ପଡିବାରୁ ସେ ଏହି କାର୍ଯ୍ୟ ନିର୍ବାହ କଲେ । ଏହି ସମୟରେ ସେ ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନ୍ ବୀମ୍ସ୍‌ଙ୍କ ସଂସ୍ପର୍ଶରେ ଆସିଥିଲେ । ବିଦ୍ୱାନ୍ ଜନ୍ ବୀମ୍ସ୍ ରଚନା କରୁଥିବା Comparative Grammer of the Indian Languages ପୁସ୍ତକଟିର ପ୍ରଣୟନରେ ସହାୟତା କରିବା ପାଇଁ ଫକୀର ମୋହନଙ୍କ ଭଳି ପଣ୍ଡିତ ଓ ଦକ୍ଷ ବ୍ୟକ୍ତିଙ୍କୁ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କର ବନ୍ଧୁତ୍ୱ ଦୃଢୀଭୂତ ହେଲା । ଫକୀରମୋହନ ଏ ସମ୍ପର୍କରେ କହନ୍ତି– 'ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍ ବୀମ୍ସ୍' ।

୧୯୬୮ ମସିହାରେ ଫକୀର ମୋହନ ବାଲେଶ୍ୱରଠାରେ ଏକ ପ୍ରେସ୍ ପ୍ରତିଷ୍ଠା କରି ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ମସୀଯୁଦ୍ଧ ଆରମ୍ଭ କରିଥିଲେ । ଏହି ପ୍ରେସ୍ ଦ୍ୱାରା ବହୁ ପାଠ୍ୟପୁସ୍ତକ ପ୍ରକାଶ କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେବାର ଗୌରବ ଲାଭ କରିଥିଲେ । ସେତେବେଳେ ସମଗ୍ର ଓଡ଼ିଶାରେ ବଙ୍ଗବାସୀଙ୍କ ଚକ୍ରାନ୍ତରେ ଯେଉଁ ଭାଷା ଆନ୍ଦୋଳନ ଦେଖାଦେଇଥିଲା, ତାହାକୁ ଦମନ କରିବା ପାଇଁ ଫକୀର ମୋହନ ଦୃଢ ପଦକ୍ଷେପ ଗ୍ରହଣ କରିଥିଲେ ।

ଫକୀର ମୋହନଙ୍କ ପ୍ରଥମ ପତ୍ନୀ ଲୀଳାବତୀ ଥିଲେ । କିଛିଦିନ ପରେ ତାଙ୍କର ପ୍ରଥମ ପତ୍ନୀଙ୍କର ମୃତ୍ୟୁ ଓ ଦ୍ୱିତୀୟ ପତ୍ନୀ ଗ୍ରହଣ ତାଙ୍କ ଜୀବନରେ ଅମୃତଧାରା ଛୁଟାଇ ଦେଇଥିଲା । ଦ୍ୱିତୀୟ ପତ୍ନୀ କୃଷ୍ଣା କୁମାରୀଙ୍କ ଆଗମନରେ କେବଳ ବ୍ୟାସକବିଙ୍କ ଜୀବନଚିତ୍ର ଯେ ସମ୍ପୂର୍ଣ୍ଣ ଭାବେ ବଦଳି ଯାଇଥିଲା ତା ନୁହେଁ– ସେତେବେଳର ଉତ୍କଳୀୟ ସମାଜ ଉତ୍ତୁଙ୍ଗ ଶିଖରକୁ ଉଠିବା ସଙ୍ଗେ ସଙ୍ଗେ ସେଦିନର ମାଷ୍ଟର ଫକୀର ମୋହନ ହୋଇଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ବ୍ୟାସକବି– ନୂତନ ଓଡ଼ିଆ ସାହିତ୍ୟ ଇତିହାସର ଭଗୀରଥ ।



ଫକୀର ମୋହନ ଥିଲେ ଜଣେ ଅଦ୍ଭୁତ କର୍ମୀ । ଶିକ୍ଷକ ଜୀବନରେ ବହୁ ସୁଖ୍ୟାତର ଅଧିକାରୀ ହେବା ପରେ ସେ ଓହ୍ଲେଇ ଆସିଥିଲେ ପ୍ରଶାସକ ଜୀବନକୁ । ପ୍ରଶାସକ ଜୀବନର ବହୁ ତିକ୍ତ ମଧୁର ଅନୁଭୂତି ତାଙ୍କ ସୃଷ୍ଟି ସମ୍ଭାରକୁ ବାସ୍ତବିକ ବିଚିତ୍ରବର୍ଣ୍ଣା କରି ଗଢି ତୋଳିଥିଲା । ପ୍ରତ୍ୟୁତ୍ପନ୍ନମତି ଫକୀର ମୋହନ ପ୍ରତ୍ୟେକ କ୍ଷେତ୍ରରେ ଇତିହାସ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଥିଲେ । ୧୮୭୧ ମସିହାରେ ବାଲେଶ୍ୱର ମାଜିଷ୍ଟ୍ରେଟ୍ ଜନ୍ ବୀମ୍ସ୍‌ଙ୍କ ପ୍ରସ୍ତାବ ତଥା ଓଡ଼ିଶାର କମିଶନର ରେଭେନ୍ସା ସାହେବଙ୍କ ସୁପାରିଶକ୍ରମେ ଫକୀର ମୋହନ ନୀଳଗିରିର ଦେୱାନ୍ ଭାବରେ ନିଯୁକ୍ତି ପାଇଥିଲେ । ପରେ ପରେ ସେହି ଦେୱାନ ଭାବେ ଓଡ଼ିଶାର ବିଭିନ୍ନ ଗଡଜାତ ଅଞ୍ଚଳ ଭ୍ରମଣ କରି ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇଥିଲେ । ୧୮୭୧ରୁ ୧୮୯୬ ମସିହା ଭିତରେ ସେ ନୀଳଗିରି, ଡମପଡା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡା, କେନ୍ଦ୍ରାପଡା, କେନ୍ଦୁଝରର ଶାସକ ପଦରେ ଥାଇ ଓଡ଼ିଶାବାସୀଙ୍କର ବିଚିତ୍ର ଜୀବନଧାରା ଓ ପ୍ରାଣପ୍ରବାହକୁ ଗଭୀର ଭାବେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଏହି ପଚିଶି ବର୍ଷର ଅନୁଭୂତି ପରବର୍ତ୍ତୀ ସମୟରେ ତାଙ୍କୁ ଯୁଗସ୍ରଷ୍ଟା ଆସନରେ ପ୍ରତିଷ୍ଠିତ କରିଥିଲା ।

ଫକୀର ମୋହନ ଏକାଧାରରେ ଜଣେ ଶିକ୍ଷକ, ପ୍ରଶାସକ, କବି, ଅନୁବାଦକ, ଗାଳ୍ପିକ ଓ ଔପନ୍ୟାସିକ ଥିଲେ । ସେ ରାମାୟଣ, ମହାଭାରତ, ଶ୍ରୀମଦ୍ ଭଗବତ ଗୀତା, ହରିବଂଶ, ଉପନିଷଦ, ମେଘଦୂତ ଇତ୍ୟାଦି ଓଡ଼ିଆରେ ଅନୁବାଦ କରି ଜଣେ ସଫଳ ଅନୁବାଦକର ସ୍ଥାନ ନେଇପାରିଛନ୍ତି । ତାଙ୍କ ରଚିତ କବିତାଗୁଡିକ ପୁଷ୍ପମାଳା, ଅବସର ବାସରେ, ପୂଜାଫୁଲ, ଧୂଳି ଆଦି କବିତା ସଙ୍କଳନରେ ତଥା ଗ୍ରନ୍ଥାବଳୀର ପରିଶିଷ୍ଟ କବିତାବଳୀରେ ସ୍ଥାନ ପାଇଅଛି । ତାଙ୍କ 'ଉତ୍କଳ ଭ୍ରମଣଂ', 'ମୁଁ ହାଟ ବାହୁଡା', 'ଯମରାଜାଙ୍କ ଦରବାର', 'କବିର କଳିହୁଡି ସ୍ତ୍ରୀ', 'ଶନିବାର' ପ୍ରଭୃତି ରଚନାରେ ବିଶୁଦ୍ଧ ହାସ୍ୟରସର ପରିଚୟ ମିଳେ । ସେ ବିଭିନ୍ନ ସ୍ୱାଦର ୨୦ଟି ଗଳ୍ପ ରଚନା କରିଛନ୍ତି । ଏଗୁଡିକ ଗଳ୍ପସ୍ୱଳ୍ପ (ପ୍ରଥମ ଓ ଦ୍ୱିତୀୟ ଭାଗ)ରେ ସଙ୍କଳିତ । ରେବତୀ, ଗାରୁଡିମନ୍ତ୍ର, ପାଠୋଇବୋହୂ, ସୁନାବୋହୂ ଆଦି ସମାଜରୁ କୁସଂସ୍କାର ଦୂର କରିଛି ।

ଚାକିରି ଜୀବନରୁ ଅବସର ନେବା ପରେ ଜୀବନର ଶେଷ ୨୦ ବର୍ଷ ମଧ୍ୟରେ ଏସବୁ ରଚନା ସହିତ ସେ ଚାରିଖଣ୍ଡ କ୍ରାନ୍ତିକାରୀ ଉପନ୍ୟାସ ଲେଖିଯାଇଛନ୍ତି । ଏଗୁଡିକ ଓଡ଼ିଆ କଥା ସାହିତ୍ୟ ଜଗତରେ ନବଦିଗନ୍ତ ସୃଷ୍ଟି କରିଛି । ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା ଓ ପ୍ରାୟଶ୍ଚିତ ଆଦି ଉପନ୍ୟାସରେ ତତ୍କାଳୀନ ଓଡ଼ିଶାର ଦୀର୍ଘ ୨୦୦ ବର୍ଷର ସମାଜ ଜୀବନର ଇତିହାସ ପ୍ରତିଫଳିତ ହୋଇଛି । ପ୍ରବନ୍ଧ ଓ ରମ୍ୟ ରଚନା କ୍ଷେତ୍ରରେ 'ଯୋଗଶାସ୍ତ୍ର', 'ପ୍ରକୃତ', 'ଶୂଦ୍ର ଓ ବେଦାଧିକାର', ଗୋତ୍ର', 'ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ', ଉତ୍କଳ ଭାଷାର ଭୂତ ଭବିଷ୍ୟତ, 'ନନାଙ୍କ ପାଞ୍ଜି', 'ଓୟାଲ୍‌ଟେୟର ଦର୍ଶନ' ରଚନା କରି ନିଜର କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ଶାସ୍ତ୍ରୀୟ ଆଦର୍ଶ ଓ ନିୟମକୁ ପରିହାର କରି ମଧ୍ୟଯୁଗୀୟ ସାହିତ୍ୟ ନିଜର ବିଳାସବ୍ୟସନ ତ୍ୟାଗ କରି ରୋମାଣ୍ଟିକ୍ ସାହିତ୍ୟ ତା' ଶୂନ୍ୟ ସଞ୍ଚରଣ ଛାଡି ଆଜିର ସାହିତ୍ୟ ଆଧୁନିକ ଯୁଗର ପ୍ରଶସ୍ତ ରାଜପଥରେ ଦ୍ରୁତଗତିରେ ଧାବମାନ । ଫକୀର ମୋହନ ବହୁ ନୂତନ ପରମ୍ପରାର ସ୍ରଷ୍ଟା । ଜୀବନଧର୍ମୀ ସାହିତ୍ୟ ସୃଷ୍ଟି ତାଙ୍କଠାରୁ ଆରମ୍ଭ । ଗଦ୍ୟ ସାହିତ୍ୟ କ୍ଷେତ୍ରରେ ସେ ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା । 'ଆତ୍ମଜୀବନ ଚରିତ' ରଚନାର ପରମ୍ପରା ତାଙ୍କରିଠାରୁ ଆରମ୍ଭ । ତାଙ୍କ ପ୍ରବନ୍ଧ ଓ ରମ୍ୟ ରଚନାର ଗୁଣାତ୍ମକ ମାନ ଅମାପ । ତାଙ୍କ ପ୍ରେରଣାରେ ଓଡ଼ିଆ ସାହିତ୍ୟର ଏହି ବିଭାଗରେ ଅଦ୍ୟାବଧି ଲେଖନୀ ଚାଳନା ବନ୍ଦ ହୋଇନାହିଁ । 'ଉତ୍କଳ ଭ୍ରମଣଂ' ଓ 'ବୌଦ୍ଧାବତାର' କାବ୍ୟ ଦୁଇଟିର ତ ପଟାନ୍ତର ନାହିଁ । ଭାଷା ଦୃଷ୍ଟିରୁ ଫକୀର ମୋହନ ପୁଣି ନୂତନ ପରମ୍ପରାର ପ୍ରବର୍ତ୍ତକ । ଦେଶଜ ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେବା, ତତ୍ସମ ଶବ୍ଦ ପରିବର୍ତ୍ତେ ଗାଉଁଲି ଶବ୍ଦ ପ୍ରୟୋଗ କରିବା, ଆଜି ତାଙ୍କରି ସାଧନା ଓ କୃତି ତଥା ଆଦର୍ଶ । ତାଙ୍କ ସାହିତ୍ୟରୁ ଓଡ଼ିଶାର ସାମାଜିକ ବିବର୍ତ୍ତନର ଧାରାବାହିକ ଐତିହାସିକ ଚିତ୍ର ମିଳିଥାଏ ।

ଫକୀର ମୋହନ ଜଗତ ଓ ଜୀବନକୁ ଯେପରି ଚିହ୍ନିଥିଲେ ଓଡ଼ିଶାକୁ ସେହିପରି ଟିକିନିଖି ଜାଣିଥିଲେ । ସାମାଜିକ ଜୀବନରେ ଯେଉଁସବୁ ପଦାର୍ଥର ଗୁଣର ଆବଶ୍ୟକତା ରହିଛି, ପ୍ରତ୍ୟେକଟି ସେ ତାଙ୍କ ଲେଖନୀ ମୁନରେ କଳାତ୍ମକ ରୂପ ଦେଇଛନ୍ତି । ତାଙ୍କର ପ୍ରତିଟି ରଚନାରେ ଏକ ଏକ ସାମାଜିକ ମୂଲ୍ୟ ରହିଛି । ଆଜିର ପାଠକ ସେସବୁ କୃତିକୁ ଅନୁଧ୍ୟାନ କଲେ ବର୍ତ୍ତମାନ ସମାଜରେ ଏକ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହେବ– ଏଥିରେ ସନ୍ଦେହ ନାହିଁ ।

ପ୍ରାଧ୍ୟାପିକା, ବିଜେବି (ସ୍ୱୟଂଶାସିତ)
ମହାବିଦ୍ୟାଳୟ, ଭୁବନେଶ୍ୱର





# ଉତ୍କଳୀୟ ରେନାସାଁର ଆଦ୍ୟ ରୂପକାର : କବି ସାରଳା ଦାସ

ପ୍ରଭାକର ସ୍ୱାଇଁ

କବି ଦ୍ରଷ୍ଟା । ସେ ତା'ର ଦିବ୍ୟ ଦୃଷ୍ଟିରେ ମଣିଷ ଓ ସମାଜକୁ ଯେପରି ଦେଖେ ତାହା ହିଁ ପ୍ରତିଫଳିତ ହୁଏ ତା'ର ସୃଷ୍ଟି ମାନସ ମଧ୍ୟରେ । ଅନେକ ସମୟରେ ସ୍ରଷ୍ଟା ସମାଜକୁ ଅବିକଳ ଭାବରେ ତା'ର ସୃଷ୍ଟି ମଧ୍ୟରେ ପ୍ରତିବିମ୍ବିତ କରେ । ମାତ୍ର ବେଳେ ବେଳେ ପାରମ୍ପରିକ ରୀତି ନୀତି ବିରୋଧରେ ଯାଇ ସେ ନିଜର ସୃଷ୍ଟିକୁ ମୌଳିକତାରେ ଭାସ୍ୱର କରେ । ଏ କ୍ଷେତ୍ରରେ ସେ ହୁଏ ବିପ୍ଳବୀ, ଯୁଗନ୍ଧର, ନବ ଜାଗରଣର ମାନ୍ତ୍ରିକ ଏବଂ ପଥ ପ୍ରଦର୍ଶକ । ଆମ ସାହିତ୍ୟର ଆଦିଯୁଗରେ ଏହିପରି ସ୍ରଷ୍ଟା ହେଉଛନ୍ତି ଆମ ମାଟିର ମହାକବି ସାରଳା ଦାସ । ସାରଳା ଦାସ ଥିଲେ ପଞ୍ଚଦଶ ଶତକର ଉତ୍କଳର ନରପତି କପିଳେନ୍ଦ୍ର ଦେବଙ୍କ ସମକାଳୀନ । ଭାରତବର୍ଷରେ କୌଣସି ପ୍ରାନ୍ତୀୟ ଭାଷାରେ ସଂପୂର୍ଣ୍ଣ ମହାଭାରତ ରଚନା ହୋଇନଥିବା ବେଳେ ସାରଳା ଦାସ ହିଁ ପ୍ରଥମ କରି ଆଞ୍ଚଳିକ ଓଡ଼ିଆ ଭାଷାରେ ମହାଭାରତ ପରି ଏକ ମହାକାବ୍ୟ ପୂର୍ଣ୍ଣାଙ୍ଗ ଭାବେ ରଚନା କରିବାର ଯେଉଁ ଅଭିନବ ପ୍ରୟାସ କରିଥିଲେ, ତାହା ଥିଲା ସମଗ୍ର ଭାରତୀୟ ସାହିତ୍ୟରେ ବିରଳ । ସାରଳା ଦାସଙ୍କ ପୂର୍ବରୁ ଆମ ଭାଷାରେ ସାହିତ୍ୟ କହିଲେ କିଛି ଶିଳାଲେଖ, ବ୍ରତଭିତ୍ତିକ ଧର୍ମୋପଦେଶ ବା ଲୋକ ସାହିତ୍ୟ ବ୍ୟତୀତ ସେପରି କିଛି ଆଖି ଝଲସା ସୃଷ୍ଟି ନଥିଲା । ମାତ୍ର ସମକାଳୀନ ପରିବେଶ ସାହିତ୍ୟ ସୃଷ୍ଟି ନିମିତ୍ତ ଖୁବ୍ ଅନୁକୂଳ ଥିଲା । ବିଶେଷ କରି ସମକାଳରେ ଉତ୍କଳର ନରପତି କପିଳେନ୍ଦ୍ର ଦେବ ସ୍ୱୟଂ ପଣ୍ଡିତ ଓ ପଣ୍ଡିତ ସମାଜର ପୃଷ୍ଠପୋଷକ ଥିଲେ । ଭାରତବର୍ଷର ବିଭିନ୍ନ ସ୍ଥାନରେ ସେହି କାଳରେ ଶାସକ ଗୋଷ୍ଠୀଙ୍କ ଅତ୍ୟାଚାର ହେତୁ ଭାରତୀୟ ସନ୍ଥ ଓ ପଣ୍ଡିତମାନେ ପୁରୀକୁ ହିଁ ଜ୍ଞାନ ଚର୍ଚ୍ଚା ନିମିତ୍ତ ନିଜ ନିଜର ନିରାପଦ ସ୍ଥାନ ମଣିଥିଲେ । ସ୍ୱୟଂ କପିଳେନ୍ଦ୍ର ଦେବ ସଂସ୍କୃତ ଭାଷାରେ 'ପର୍ଶୁରାମ ବିଜୟ' ନାମକ ଏକ ନାଟକ ରଚନା ମାଧ୍ୟମରେ ତହିଁରେ ଓଡ଼ିଆ ଗୀତର ସଂଯୋଜନା କରିବା ସହିତ ନିଜ ଜାତିପ୍ରୀତିର ପରିଚୟ ଦେଇଥିଲେ । ଏହି ନାଟକ ରଚନା ମଧ୍ୟରେ ସେ ଓଡ଼ିଆ ପରି ଆଞ୍ଚଳିକ ଲୋକ ଭାଷାକୁ ପ୍ରୋତ୍ସାହିତ କରିଥିଲେ । କପିଳେନ୍ଦ୍ର ଦେବ ସଂସ୍କୃତ ଭାଷାର ଦୃଢ଼ ବନ୍ଧନୀ ମଧ୍ୟରୁ ଓଡ଼ିଆ ଭାଷା–ସାହିତ୍ୟକୁ ମୁକ୍ତ କରିବାର ଯେଉଁ ପ୍ରୟାସ ଆରମ୍ଭ କରିଥିଲେ, ସାରଳା ଦାସଙ୍କ ସୃଷ୍ଟି ମାନସ ସେହି ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲା ।

ସାରଳା ଦାସଙ୍କ ସୃଷ୍ଟି ମାନସ ସମାଜର ବିଭିନ୍ନ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ ହେଁ ତାହା ଥିଲା ମୁଖ୍ୟତଃ ଜୀବନଧର୍ମୀ ଓ ସମାଜଭିତ୍ତିକ । ମହାଭାରତର ଆଦିପର୍ବରେ 'ଗଣେଶଙ୍କ ବନ୍ଦନା' ମଧ୍ୟରେ ସେ ସମଗ୍ର ମହାଭାରତର ମୂଳ କଥାଟିକୁ ଖୁବ୍ ସଂକ୍ଷେପରେ ପ୍ରକଟିତ କରିଥିଲେ । ଏ ସଂପର୍କରେ ସ୍ରଷ୍ଟାଙ୍କର ଉକ୍ତି ଥିଲା –

'ଆଦି ଅନ୍ତ ମଧ୍ୟ ତୁ ଅଟୁ ସର୍ବଥାନେ
ଗ୍ରନ୍ଥ ଭିଆଇଲୁ ତୁ ଭୂତ ଭବିଷ୍ୟ ବର୍ତ୍ତମାନେ ।'

ସାରଳା ଦାସଙ୍କର ଏହି ଉକ୍ତିଟିର ମଧ୍ୟରେ ସେ ଅତୀତ–ବର୍ତ୍ତମାନ–ଭବିଷ୍ୟତକୁ ଏକତ୍ର କରି ଏକ ବିରାଟ ଓ ଦୀର୍ଘ ସରଣୀ ମାନବ ସମାଜ ନିମିତ୍ତ ସୃଷ୍ଟି କରିଛନ୍ତି । ଓଡ଼ିଆ ପାଠକମାନଙ୍କ ନିମିତ୍ତ ଆମ ସାହିତ୍ୟରେ ଅତୀତରେ ସୃଷ୍ଟି ହୋଇଥିବା ସଂକଟ ସହିତ ଭବିଷ୍ୟତର ସେତୁକୁ ସେ ଦୃଢ଼ କରିଛନ୍ତି ଏବଂ ଓଡ଼ିଆ

> ଏହି ଦୃଷ୍ଟିରୁ ଚିନ୍ତା କଲେ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ଓଡ଼ିଶା ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଥିଲା ଓ ସାରଳା ଦାସ ଥିଲେ ସମଗ୍ର ଭାରତବର୍ଷରେ ଗଣତନ୍ତ୍ରର ଆଦ୍ୟ ପ୍ରବର୍ତ୍ତକ ।



ସାହିତ୍ୟର ଭବିଷ୍ୟତ କିପରି ଉଜ୍ଜ୍ୱଳମୟ ହେବ, ସେଥି ନିମିତ୍ତ ସେ ମହାଭାରତ ରଚନାର ସ୍ତରେ ସ୍ତରେ ସମାଜକୁ ସଚେତନ କରିବାକୁ ଭୁଲିନାହାନ୍ତି ।

ଯେଉଁ ରାଜ୍ୟରେ ପ୍ରଜା ଓ ରାଜା ଗୋଟିଏ ଆସନରେ ଆସୀନ, ଯେଉଁ ରାଜ୍ୟରେ ରାଜା ପ୍ରଜାଙ୍କର ଭାବ ଓ ଚିନ୍ତା ଏକ, ତାହା ହେଉଛି ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ଏହି ଦୃଷ୍ଟିରୁ ଚିନ୍ତା କଲେ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ଓଡ଼ିଶା ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଥିଲା ଓ ସାରଳା ଦାସ ଥିଲେ ସମଗ୍ର ଭାରତବର୍ଷରେ ଗଣତନ୍ତ୍ରର ଆଦ୍ୟ ପ୍ରବର୍ତ୍ତକ । ଏକଥା କହିଲାବେଳେ ପଞ୍ଚଦଶ ଶତକରେ ଓଡ଼ିଆ ରାଜାଙ୍କର ଜନସାଧାରଣଙ୍କପ୍ରତି ଥିବା ଶ୍ରଦ୍ଧା ଓ ଜନସାଧାରଣଙ୍କର ରାଜାଙ୍କପ୍ରତି ଥିବା ସମ୍ମାନକୁ ସ୍ୱୀକାର କରିବାକୁ ହୁଏ । ସାରଳା ଦାସ ମହାଭାରତର ଶାନ୍ତି ପର୍ବରେ ମୁମୂର୍ଷୁ ଅବସ୍ଥାରେ ଥିବା ପିତାମହ ଭୀଷ୍ମ ମହାରାଜା ଯୁଧିଷ୍ଠିରଙ୍କୁ ରାଜ୍ୟ ଶାସନ ସମ୍ବନ୍ଧରେ ବହୁ ନୀତି–ଉପଦେଶ ଦେଇଛନ୍ତି । ତାହା ହେଉଛି–

‘ବେଳ କାଳ ଜାଣି ଧନ ପ୍ରଜାଙ୍କୁ ଯେ ଦେବୁ
ଅନ୍ଧାରି ବିଜେ ନକରି ବିଶ୍ୱାସ ନଯିବୁ ।
ପାରିଧିକି ଏକାବେଳେ ନତେଜିବୁ ରାଜା
ଦେବତା ବ୍ରାହ୍ମଣେ ନିତ୍ୟ କରୁଥିବୁ ପୂଜା ।
ଧାର୍ମିକଙ୍କୁ ଏକାଦଶୀ ବ୍ରତ କରାଇବୁ ।
ବିଦେଶୀ ଦୂତ କଟକେ ପ୍ରବେଶି ନଦେବୁ ।
ରାଜ୍ୟ ଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନଦେବୁ ତାହାରେ ।
କୃଷି କର୍ମକାରୀ ଜନେ ନ ଦଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁ ସ୍ଥାନ ।
ତୀର୍ଥରେ ଲୋକମାନଙ୍କୁ ଦେବୁ ଅନ୍ନଦାନ
ଉତ୍ତମ ସ୍ଥାନେ ରଖିବୁ ସେନାପତି ଗଣ ।
ଗଜ ଅଶ୍ୱଙ୍କ ନିମନ୍ତେ ଦେଉଥିବୁ ଧନ
ଗୋପାଳେ ବିଶ୍ୱାସ କରି ଅର୍ପିବୁ ଗୋଧନ ।
ଗୁଣୀ ଗୁଣ ଜାଣି କରି କରୁଥିବୁ ପୂଜା
କବିମାନଙ୍କୁ କୃପଣ ନହୋଇବୁ ରାଜା ।’

ଏକ ପାର୍ଶ୍ୱରେ ସମଗ୍ର ଭାରତବର୍ଷରେ ମୁସଲମାନ ରାଜତ୍ୱର ଭୟାବହତା ଓ ଭାରତୀୟ ଜନତା ମଧ୍ୟରେ ପରାଧୀନତାର ଗ୍ଳାନି ଏବଂ ଅନ୍ୟପାର୍ଶ୍ୱରେ ଉତ୍କଳ ଭୂଖଣ୍ଡରେ ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥାରେ ରାଜା ପ୍ରଜା ମଧ୍ୟରେ ଥିବା ସୁସଂପର୍କର ଚିନ୍ତନକୁ କବି ଭବିଷ୍ୟତ ପାଠକମାନଙ୍କ ଉଦ୍ଦେଶ୍ୟରେ ଉପସ୍ଥାପିତ କରିବା ସହିତ ସମଗ୍ର ଭାରତୀୟ ସାହିତ୍ୟରେ ସାରଳା ଦାସ ସାହିତ୍ୟର ମହନୀୟତା ପ୍ରତିପାଦନ କରିଛନ୍ତି ।

ଜଣେ ସଫଳ ଦ୍ରଷ୍ଟା ଭାବରେ ସାରଳା ଦାସଙ୍କ ଦୃଷ୍ଟି ଥିଲା ବହୁଧା ବିଭକ୍ତ । ସମାଜ ଚେତନା ସହିତ ଓଡ଼ିଶାର ଇତିହାସ ଓ ଭୂଗୋଳକୁ ପରିପୂର୍ଣ୍ଣ ରୂପଦେବାରେ ସେ ଥିଲେ ଆମ ସାହିତ୍ୟର ଜନକ । ତାଙ୍କ ରଚନାର ଦୀର୍ଘ ଚାରିଶତ ବର୍ଷ ବ୍ୟବଧାନ ପରେ ଊନବିଂଶ ଶତକର ଆଦ୍ୟପାଦରେ ଓଡ଼ିଶାର ଇତିହାସକୁ ନେଇ ପ୍ରଥମେ ଇଂରେଜମାନେ ସଂକ୍ଷିପ୍ତ ଓ ବିକ୍ଷିପ୍ତ ଗ୍ରନ୍ଥମାନ ରଚନା କରିଥିଲେ । ଓଡ଼ିଆମାନେ ସେ କାର୍ଯ୍ୟରେ ମନୋନିବେଶ କଲାବେଳକୁ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧ ହୋଇ ସାରିଥିଲା । ମାତ୍ର ପଞ୍ଚଦଶ ଶତକବେଳକୁ ସାରଳା ଦାସ ସେ ଦିଗରେ ତାଙ୍କର ମହାଭାରତ ମଧ୍ୟରେ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କ ସମୟର ଓଡ଼ିଶା କହିଲେ ଭାରତବର୍ଷର ଏକ ବିରାଟ ଭୂଖଣ୍ଡକୁ ବୁଝାଉଥିଲା । ସେ ଥିଲେ କପିଳେନ୍ଦ୍ର ଦେବଙ୍କ ସମକାଳୀନ ସ୍ରଷ୍ଟା । ସେହି କାଳରେ ଏକ ସ୍ୱାଧୀନ ରାଷ୍ଟ୍ର ଭାବରେ ଉତ୍କଳର ଭୌଗୋଳିକ ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମହାଭାରତରେ କୌରବ ପାଣ୍ଡବଙ୍କର ରାଜ୍ୟ ଜୟ, ଯୁଦ୍ଧାଭିଯାନ, ରାଜ୍ୟଗଠନ, ନୂତନ ରାଜ୍ୟ ଅନ୍ୱେଷଣ ଏବଂ ସମକାଳର ସମାଜ ବ୍ୟବସ୍ଥା ସହିତ ସାରଳା ଦାସ ସଚେତନ ଥିଲେ । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତକରେ ଭାରତର ଦକ୍ଷିଣ ଓ ଉତ୍ତରାଂଶରେ ମୁସଲମାନ ଶାସକମାନେ ରାଜ୍ୟ ଜୟ ନିମିତ୍ତ ବିଭିନ୍ନ ସ୍ଥାନକୁ ଯୁଦ୍ଧାଭିଯାନ କରୁଥିଲେ । ମହାଭାରତରେ ବର୍ଣ୍ଣିତ କୌରବ ପାଣ୍ଡବଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧର ଘନଘଟା ମୁସଲମାନୀ ଶାସକଙ୍କ ଯୁଦ୍ଧାନୁରୂପ ଥିଲା । ପାଣ୍ଡବଙ୍କ ସହିତ ଘୋର ସମର କାଳରେ ଦୁର୍ଯ୍ୟୋଧନ ଓ ତାଙ୍କର ସୈନ୍ୟ ସାମନ୍ତ ପାଣ୍ଡବଙ୍କ ଅନ୍ୱେଷଣରେ ଭାରତବର୍ଷର ଦକ୍ଷିଣାଞ୍ଚଳକୁ ଗମନ କରିବା ପ୍ରସଙ୍ଗ ମହାଭାରତର ବିଭିନ୍ନ ପର୍ବରେ ଏକାଧିକବାର ବର୍ଣ୍ଣିତ ହୋଇଛି । ସେହି କଥାକୁ ସାରଳା ଦାସ ତାଙ୍କର ମହାଭାରତ ଗ୍ରନ୍ଥର ବିରାଟ ପର୍ବରେ ନିମ୍ନଭାବରେ ଉଲ୍ଲେଖ କରିଛନ୍ତି–

‘କନାଭଜ ଉଦେଗିରି ପୁଣି ଚନ୍ଦ୍ରଗିରି
କାଞ୍ଚି ଚନ୍ଦ୍ରପୁର ଥାଉ ଉତ୍ତମ କାବେରୀ ।
ଚୌରମଣ୍ଡଳ କୋଶଳ ମଣ୍ଡଳ ମଲ୍ଲିକା
ପାଣ୍ଡବନଗର କୃଷ୍ଣବେଣୀ ଷଡ଼ଙ୍କିକା ।
ଉଡ଼ଙ୍ଗମାତଙ୍ଗ ଭଦ୍ରା କୃଷ୍ଣା ସେ ସୁନନ୍ଦା
ଗୋପନ–ଭାଗୀ ବିଜୟା ଆବର ଆନନ୍ଦା ।



ଶରଭଙ୍ଗ ସୁନନ୍ଦ୍ରିକ କନାଭଜ ଭୋଟ
ଖିନା ଗୋମତୀ କଜ୍ଜଳୀ ଆଦି ସର୍ବରାଷ୍ଟ୍ର ।
ନାଟ ଚୋଡ଼ଙ୍ଗ ଅବନ୍ତୀ ଆବର କାମାକ୍ଷୀ
ତରତର କୁଣ୍ଡାବେଦୀ ପୁଣି ମଙ୍ଗଳାକ୍ଷୀ ।'

ଏ ପ୍ରସଙ୍ଗରେ ଆମ ସାହିତ୍ୟର ବିଶିଷ୍ଟ ଐତିହାସିକ ସ୍ୱର୍ଗୀୟ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି– 'ଏହା ହିଁ ନିଃସନ୍ଦେହ ପ୍ରମାଣିତ ହେଉଛି ଯେ କବି ମହାଭାରତ ଜରିଆରେ ସମସାମୟିକ ଇତିହାସକୁ ହିଁ ପ୍ରଚ୍ଛନ୍ନ ଭାବରେ ଲେଖିଯାଇଛନ୍ତି । ଏହା ସେ ସ୍ୱତଃପ୍ରବୃତ୍ତ ହୋଇ ଲେଖିଛନ୍ତି କିମ୍ବା କାହାରି ପ୍ରରୋଚନାରେ ଲେଖିଛନ୍ତି, କିମ୍ବା ଖାଲି କଳ୍ପନା ବଳରେ ଅନେକ କଥା ଲେଖିଲା ବେଳେ ଐତିହାସିକ ଘଟଣାମାନଙ୍କ ସାହାଯ୍ୟ ନେବାକୁ ବାଧ ହୋଇଛନ୍ତି । ମହାଭାରତର ଏହି ସଂଜ୍ଞା ଅନୁସାରେ ଅତି ଅତୀତ, ନିକଟ ଅତୀତ ଓ ସମସାମୟିକ ସମସ୍ତ ଇତିହାସ ମହାଭାରତର ଅନ୍ତର୍ଭୁକ୍ତ ହୋଇଯାଉଛି । ଅତଏବ ନିକଟ ଅତୀତ ବା ସମସାମୟିକ ଇତିହାସକୁ ମହାଭାରତରେ ସ୍ଥାନ ଦେବା ଦୋଷାବହ ନୁହେଁ, ମାତ୍ର ସମସ୍ତ ଇତିହାସକୁ ଚିରାଚରିତ ପୌରାଣିକ ରୀତିରେ ଓ ମୌଳିକ ମହାଭାରତର ନାୟକ ନାୟିକାଙ୍କ ଜରିଆରେ ହିଁ ପ୍ରକାଶ କରିବାର କଥା । ସାରଳା ଦାସ ତାହା ହିଁ କରିଛନ୍ତି । ସେ ଖାଲି ଓଡ଼ିଆ ସାହିତ୍ୟର ଜନ୍ମଦାତା ନୁହନ୍ତି– ଓଡ଼ିଶା ଇତିହାସର ମଧ ଜନ୍ମଦାତା ।' (ପୃ. ୨୯) ସୁତରାଂ ସାରଳା ଦାସଙ୍କ ମହାଭାରତ ମଧରେ ଇତିହାସର ସନ, ବାର ବା ତାରିଖ ଉଲ୍ଲେଖ ନଥିଲେ ମଧ ଆମେ ମହାଭାରତର ଚରିତ୍ରାୟନ ମଧରେ ଇତିହାସର ସ୍ୱରୂପ ସହିତ ତାଙ୍କ ସାହିତ୍ୟରେ ସମକାଳରେ ଭାରତର ବିଭିନ୍ନ ସ୍ଥାନରେ ସଂଘଟିତ ଯୁଦ୍ଧର ସୂଚନା ଆମେ ପାଇଥାଉଁ ।

ସାରଳା ମହାଭାରତ ମଧରେ ବହୁ ଲୋକକଥା, କିମ୍ବଦନ୍ତୀ ଏବଂ ଆଖ୍ୟାୟିକାର ବର୍ଣ୍ଣନା ରହିଛି । ଏସବୁ ବର୍ଣ୍ଣନା ସମକାଳୀନ ଜନତାଙ୍କ ନିମିତ୍ତ ଶିକ୍ଷାପ୍ରଦ । ମହାଭାରତରେ ବର୍ଣ୍ଣିତ ଏହିପରି ଆଖ୍ୟାୟିକା ହେଉଛି ପ୍ରୌଢ଼ାସୁରର ବରଲାଭ (ମଧ୍ୟପର୍ବ) ବା ପ୍ରୌଢ଼ାସୁରର ଦିଗ୍‌ବିଜୟ (ମଧ୍ୟପର୍ବ) । ମୂଳ ସଂସ୍କୃତ ମହାଭାରତରେ ଏସବୁ ଆଖ୍ୟାୟିକାର ବର୍ଣ୍ଣନା ନଥିବାବେଳେ ସାରଳା ଦାସଙ୍କର ଏହା ହେଉଛି ନିଜସ୍ୱ ମୌଳିକ ସୃଷ୍ଟି । ମହାଭାରତର ଏହି ଅଂଶ ଅଧ୍ୟୟନ କାଳରେ ଆମ ମନରେ ସ୍ୱତଃ ପ୍ରଶ୍ନ ଆସେ, ଏହି ପ୍ରୌଢ଼ାସୁର କିଏ ? କବି ସାରଳା ଦାସଙ୍କ ଚେତନାରେ ପ୍ରୌଢ଼ାସୁର ହେଉଛନ୍ତି ଦକ୍ଷିଣର ମଲ୍ଲିକାର୍ଜୁନଙ୍କ ପିତା ଦେବରାୟ । ପୁଣି ସାରଳା ଦାସଙ୍କ ବର୍ଣ୍ଣିତ କରବୀରପୁରର ରାଜା ପୁଣ୍ଡରୀକ ହେଉଛନ୍ତି ରାଜା ମଲ୍ଲିକାର୍ଜୁନ । ମହାଭାରତର ମଧ୍ୟପର୍ବ ଓ ସଭାପର୍ବରେ ବର୍ଣ୍ଣିତ ଏହି ପୁରାଣ ଚରିତ୍ରଙ୍କ ପଶ୍ଚାଦ୍‌ଭାଗରେ ସାରଳା ଦାସ ଇତିହାସର ପଦଧ୍ୱନି ସୃଷ୍ଟି କରିଛନ୍ତି । ବିଶେଷ କରି ମୂଳ ମହାଭାରତରେ ଏସବୁ କିମ୍ବଦନ୍ତୀ ବା ଇତିହାସର କଥା ନଥିବାବେଳେ ସାରଳା ଦାସଙ୍କ ମହାଭାରତର ବିଭିନ୍ନ ଚରଣରେ ବର୍ଣ୍ଣିତ 'କରବୀର', 'ମୋଦାଗିରି', 'ପୁଣ୍ଡରୀକ', 'ବାସୁଦେବ', 'କର୍ଣ୍ଣାଟଦେଶ' ପ୍ରଭୃତି ବର୍ଣ୍ଣନା ମଧରେ ସ୍ରଷ୍ଟା, ଇତିହାସ ପ୍ରତି କେତେ ସଚେତନ ଥିଲେ ତାହା ସହଜରେ ଅନୁମିତ ହୁଏ । ମହାଭାରତ ମଧରେ ସାରଳା ଦାସ ଇତିହାସ ଅନୁଯାୟୀ ମଲ୍ଲିକାର୍ଜୁନଙ୍କୁ ବିଜୟନଗର ରାଜ୍ୟର ମହାରାଜା ରୂପେ ଓ ତାହାଙ୍କୁ ପୌରାଣିକ ରୀତିରେ ପୁଣ୍ଡିରୀକ ବାସୁଦେବ ରୂପେ ବର୍ଣ୍ଣନା କଲାବେଳେ ନିଜ ଦିବ୍ୟ ଦୃଷ୍ଟିକୁ ପ୍ରସାରିତ କରିଛନ୍ତି ।

'ମହାଭାରତ' ବା 'ଚଣ୍ଡୀପୁରାଣ' ମୁଖ୍ୟତଃ ଯୁଦ୍ଧ ବର୍ଣ୍ଣିତ କାହାଣୀ ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ସାରଳା ଦାସ ସେହି ଯୁଦ୍ଧ ବର୍ଣ୍ଣନା ମଧରେ ତାଙ୍କ ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ଶାନ୍ତି ଓ ସଂହତିର ବାର୍ତ୍ତା ପ୍ରଚାର କରିଛନ୍ତି ।

ସାରଳା ମହାଭାରତରେ ବର୍ଣ୍ଣିତ ଅନେକ କାହାଣୀ ଓ କିମ୍ବଦନ୍ତୀ ସହିତ ଇତିହାସର ସଂପର୍କ ଅତ୍ୟନ୍ତ ନିବିଡ଼ । ଅନେକ ସମୟରେ ସ୍ରଷ୍ଟା ଓଡ଼ିଶାର ଅସ୍ପଷ୍ଟ ଓ ଅଲିଖିତ ଇତିହାସ ମଧରୁ କାହାଣୀର ସୂତ୍ରଟିକୁ ଉଦ୍‌ଘାଟନ କରି ସେହି ସୂତ୍ର ମାଧମରେ ଇତିହାସର ସତ୍ୟକୁ ପ୍ରକଟିତ କରିଛନ୍ତି । ସ୍ରଷ୍ଟାଙ୍କର ଏହିପରି ଏକ କାହାଣୀ ହେଉଛି 'ସୁରେଖା ହରଣ' ପ୍ରସଙ୍ଗ । ଏହି ପ୍ରସଙ୍ଗ ସହିତ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ହେଉ, ସାରଳା ଦାସ ଉତ୍କଳର କିମ୍ବଦନ୍ତୀ ସହିତ ଇତିହାସକୁ ଏକାକାର କରି ଦେଇଛନ୍ତି । ଓଡ଼ିଶାରେ କାଞ୍ଚି–କାବେରୀ କିମ୍ବଦନ୍ତୀ ଖୁବ୍ ଜନପ୍ରିୟ । ଏହା ସହିତ ସାରଳା ମହାଭାରତର ମଧ୍ୟପର୍ବରେ ବର୍ଣ୍ଣିତ 'ସୁରେଖା ହରଣ' କାହାଣୀଟି ସାମ୍ୟ ରକ୍ଷା କରିଛି ।

କରମଣ୍ଡଳ ରାଜ୍ୟର ନରେନ୍ଦ୍ର କୃତଶେଖର । ତାଙ୍କ କନ୍ୟା ସୁରେଖା । ସୁରେଖା ଯୌବନରେ ପଦାର୍ପଣ କରିବାରୁ ରାଜା କୃତଶେଖର ତାହାଙ୍କୁ ଗୋଟିଏ ମେଢ଼ ତୋଳାଇ ତହିଁରେ ରଖାଇଥିଲେ । ନାରଦଙ୍କ ଯୋଗୁଁ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ସହିତ ସୁରେଖାଙ୍କର ସେହି ମେଢ଼ ଭିତରେ ମିଳନ ଘଟିଥିଲା । ମିଳନ ପରେ ପରେ ଉଭୟେ ଦ୍ୱାରକା ଗମନ କାଳରେ କୃତଶେଖର



କନ୍ୟା ଅପହରଣର ସମ୍ବାଦ ପାଇ ପ୍ରଦ୍ୟୁମ୍ନଙ୍କୁ ବନ୍ଦୀ କରିଥିଲେ । ମାତ୍ର ପ୍ରଦ୍ୟୁମ୍ନଙ୍କ ବନ୍ଦୀ ହେବା ଖବର ଶୁଣି ଉଭୟ କୃଷ୍ଣ ଓ ବଳରାମ ସସୈନ୍ୟେ କରମଣ୍ଡଳ ରାଜ୍ୟରେ ପ୍ରବେଶ କରି କୃତଶେଖରଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଥିଲେ । ମାତ୍ର ନୀଳଶେଖରଙ୍କ ଅନୁରୋଧକ୍ରମେ ପ୍ରଦ୍ୟୁମ୍ନ ବନ୍ଧନମୁକ୍ତ ହେଲେ ଓ ସୁରେଖାଙ୍କୁ ବିବାହ କଲେ । ସାରଳା ମହାଭାରତର ଏହି ମୂଳ ଗଳ୍ପ ସହିତ ଓଡ଼ିଶାର ଖୁବ୍ ଜନପ୍ରିୟ କାଞ୍ଚି–କାବେରୀ କାହାଣୀଟି ଖୁବ୍ ସାମ୍ୟ ରକ୍ଷା କରିଥାଏ । କାଞ୍ଚି–କାବେରୀ କାହାଣୀର ଐତିହାସିକତା ଇତିହାସବିତ୍‌ଙ୍କଦ୍ୱାରା ଏଯାବତ୍ ଗୃହୀତ ହୋଇନଥିବା ବେଳେ ଐତିହାସିକମାନେ ମୋଟ ଉପରେ ଉତ୍କଳର ନରପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ଓ ସେଠାରେ କାଞ୍ଚି ନରପତି ସାଳୁକ ନରସିଂହ ଦେବଙ୍କୁ ପରାସ୍ତ କରି ତାଙ୍କର କନ୍ୟା ପଦ୍ମାବତୀଙ୍କୁ ବିବାହ କରିବା ଘଟଣାକୁ ସ୍ୱୀକୃତି ଦେଇଛନ୍ତି । ସାରଳାଙ୍କ 'ସୁରେଖା ହରଣ' ପ୍ରସଙ୍ଗ କାଞ୍ଚି–କାବେରୀ କାହାଣୀ ସହିତ ସାମ୍ୟ ରକ୍ଷା କରୁଥିବା ବେଳେ ସାରଳା ମହାଭାରତର 'ସୁରେଖା ଚରିତ୍ର କାଞ୍ଚି–କାବେରୀ' କାହାଣୀର 'ପଦ୍ମାବତୀ' ଭିନ୍ନ ଅନ୍ୟ କେହି ନୁହନ୍ତି ବୋଲି ବିନା ଦ୍ୱିଧାରେ ଗ୍ରହଣ କରାଯାଇପାରେ ।

ଐତିହାସକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର 'ଓଛଟଙ୍ଖଞ୍ଛ ଞଜ ଛଞ୍ଛଟଟଙ୍ଖ' ଗ୍ରନ୍ଥରେ ସାରଳା ଦାସଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି–"A love for Orissa and for its language and literature become the order of Kapilendra's reign and inspired by this new idealism Sarala Das, a sudra by caste created the first and the vast Oriya literature which, in its quality, contents and bulk, is still considered to be the greatest single Oriya literature. Thus during the rule of Kapilendra a new age of renaissance, started in Orissa.' (Vol.I, p.206) ଏହି ରେନାସାଁ ମହାଭାରତ ଗ୍ରନ୍ଥରେ ବର୍ଣ୍ଣିତ ବେଲାଳସେନ ବଧ, ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ, ଦୁର୍ବକ୍ଷ ପ୍ରସଙ୍ଗ, ଭୀଷ୍ମ ଚରିତ, ଗାଲମାଧବ ପ୍ରଭୃତି ପ୍ରସଙ୍ଗ ମଧ୍ୟରେ ଆମେ ଲକ୍ଷ୍ୟ କରିଥାଉଁ । ସ୍ରଷ୍ଟାଙ୍କର ଜଗନ୍ନାଥଙ୍କ ବନ୍ଦନା ଓ ଏହି ସଂପର୍କିତ ବର୍ଣ୍ଣନା ମଧ୍ୟରେ ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ପ୍ରତିଫଳନ ଅନୁଭବ କରିହୁଏ । ମହାଭାରତରେ ବର୍ଣ୍ଣିତ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ସଂପର୍କ, ବିଶ୍ୱାବସୁ ଓ ଜାରାଶବର ଉପାଖ୍ୟାନ ମଧ୍ୟରେ ସମଗ୍ର ଭାରତୀୟ ସାହିତ୍ୟରେ ସାରଳା ଦାସ ହିଁ ପ୍ରଥମେ ଜାତୀୟ ସଂହତିର ଓଁକାର ଧ୍ୱନି ସୃଷ୍ଟି କରିଛନ୍ତି । 'ମହାଭାରତ' ବା 'ଚଣ୍ଡୀପୁରାଣ' ମୁଖ୍ୟତଃ ଯୁଦ୍ଧ ବର୍ଣ୍ଣିତ କାହାଣୀ ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ସାରଳା ଦାସ ସେହି ଯୁଦ୍ଧ ବର୍ଣ୍ଣନା ମଧ୍ୟରେ ତାଙ୍କ ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ଶାନ୍ତି ଓ ସଂହତିର ବାର୍ତ୍ତା ପ୍ରଚାର କରିଛନ୍ତି । ସବୁଧର୍ମର ବର୍ଣ୍ଣନା କରିଥିଲେ ହେଁ ସ୍ରଷ୍ଟା ଲୋକଧର୍ମ ଉପରେ ଗୁରୁତ୍ୱ ଆରୋପ କରି ସମଗ୍ର ମାନବ ସମାଜକୁ ସେହି ଧର୍ମରେ ଦୀକ୍ଷିତ ହେବାକୁ ଆହ୍ୱାନ ଦେଇଛନ୍ତି ।

ସାରଳା ଦାସଙ୍କ ମହାଭାରତର ସ୍ୱରୂପ ଉଲ୍ଲେଖ ପରିପ୍ରେକ୍ଷୀରେ ଆଉ ଏକ କଥା ଆମ ମନକୁ ସ୍ୱତଃ ଆସିଥାଏ । ତାହା ହେଉଛି ସମାଜରେ ଉଚ୍ଚନୀଚ ମଧ୍ୟରେ ଥିବା ଭେଦଭାବ । ଜାତି ଅଜାତି, ଉଚ୍ଚନୀଚ ମଧ୍ୟରେ ଥିବା ଭେଦାଭେଦ ଦୃଷ୍ଟିରୁ ସ୍ରଷ୍ଟା ଥିଲେ ବହୁ ଊର୍ଦ୍ଧ୍ୱରେ । ତାଙ୍କ ସାହିତ୍ୟରେ ଜାତି ଅଜାତି ମଧ୍ୟରେ ସେ ଆଦୌ ପାର୍ଥକ୍ୟ ଦେଖୁ ନଥିଲେ । ପୂର୍ବରୁ ପୁରାଣ ପାଠ ବା ପୁରାଣ ରଚନା ବ୍ରାହ୍ମଣମାନଙ୍କର ଏକଛତ୍ର ଅଧିକାର ହୋଇଥିବାବେଳେ ଆମ ଭାଷା ସାହିତ୍ୟରେ ପ୍ରଥମେ ସାରଳା ଦାସ ହିଁ ସେହି ପରମ୍ପରା ଓ ପ୍ରଥା ବିରୁଦ୍ଧରେ ଯାଇ ରାମାୟଣ, ମହାଭାରତ, ଚଣ୍ଡୀପୁରାଣ ପ୍ରଭୃତି ଗ୍ରନ୍ଥ ସାଧାରଣ ଜନତାଙ୍କ ଉଦ୍ଦେଶ୍ୟରେ ରଚନା କରିଥିଲେ । ବାଳୁତ ଭୀମ ରୋଷଶାଳାରେ ଲୁଚି ଲୁଚି ଅଗ୍ନିଦେବଙ୍କ ନିମିତ୍ତ ପ୍ରସ୍ତୁତ ରାନ୍ଧଣାକୁ ଖାଇଦେବା ଏବଂ ଏହି ପାପ ଯୋଗୁଁ ପଣ୍ଡୁ ଭୀମଙ୍କୁ ହାଣିଦେବାକୁ ପ୍ରତିଜ୍ଞାବଦ୍ଧ ହେବା କବି ସାରଳା ଦାସଙ୍କୁ ଠିକ୍ ମନେ ହୋଇ ନାହିଁ । ତେଣୁ ସେ ଅଗ୍ନି ଦେବଙ୍କ ମୁଖରେ 'ପିତୃଦେବଙ୍କର ଆଶା ପୁତ୍ର ଉଚ୍ଛିଷ୍ଟକୁ' କହିବା ମଧ୍ୟରେ ଦେବତାଙ୍କ ମଧ୍ୟରେ ମାନବତ୍ୱ ପ୍ରତିଷ୍ଠା କରିବା ସହିତ ସ୍ରଷ୍ଟା ମାନବ ଓ ଦେବତା ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିନାହାନ୍ତି । ବରଂ ସେ 'ମହାଭାରତ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି–

'ଗର୍ଭଠାରୁ ଉପରକୁ ତାଳୁ ବ୍ରହ୍ମଯାକେ
ଭୋଗ କରନ୍ତି ତେତିଶ କୋଟି ଦେବ ଲୋକେ ।'

ମହାଭାରତ ମହାଭାରତୀୟ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ବାସ୍ତବତା ଦୃଷ୍ଟିରୁ ଏହା ଉତ୍କଳୀୟ ଚିନ୍ତାଚେତନାରେ ପରିପୂର୍ଣ୍ଣ ଥିଲା । ମାତୃଭୂମି ଓ ମାତୃଭାଷା ନିମିତ୍ତ ଗଭୀର ମମତ୍ୱବୋଧ ହିଁ ତାଙ୍କ ଗ୍ରନ୍ଥର ପ୍ରତ୍ୟେକ ପୃଷ୍ଠା ମଧ୍ୟରେ ପ୍ରତିଧ୍ୱନିତ ହେଉଥିଲା । ଉତ୍କଳର ଜାତୀୟ ଦେବତା ଜଗନ୍ନାଥ । ସେ ହେଉଛନ୍ତି ଓଡ଼ିଆ ଜାତିର ଆତ୍ମାର ପ୍ରତୀକ, ପତିତପାବନ । ସମଗ୍ର ବିଶ୍ୱମାନବର ସେ ପୁଣି ସୁଖ ଦୁଃଖର ସାଥୀ । ପୁଣି ଝଙ୍କଡ଼ବାସିନୀ





ଦେବୀ ଶାରଳା ହେଉଛନ୍ତି ଉତ୍କଳର ବାଗ୍‌ଦେବୀ । ସୁତରାଂ କବି ସାରଳା ଦାସ ତାଙ୍କ ମହାଭାରତ ଗ୍ରନ୍ଥର ଆଦିପର୍ବରେ 'ଶାରଳା ଦେବୀଙ୍କ ବନ୍ଦନା' ମଧ୍ୟରେ କବି ପ୍ରଥମେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ

'ଶ୍ରୀ ଯମେଶ୍ୱର ମହାଲିଙ୍ଗ ମଉଦଧିର ଉତ୍ତର ତଟେ
ନୀଳ ସୁନ୍ଦର ପର୍ବତ ନୀଳ କଳ୍ପବଟେ ।
ବିଜୟେ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମା
ଚାରିଶତ ବତିଶ ସହସ୍ର ବରଷକୁ ଯୋଗଲୟେ ମହାତମା ।'

ଆଦି ଉଲ୍ଲେଖ କରିବା ପରେ ନିମ୍ନଭାବରେ ଉତ୍କଳର ବାଗ୍‌ଦେବୀ ଶାରଳାଙ୍କର ବନ୍ଦନା କରିଛନ୍ତି ।

'ତହିଁର ସନ୍ନିଧେ ସାରୋଳ ନାମେ ଗ୍ରାମେ
ବିଜେ ମାହେଶ୍ୱରୀ ସାରୋଳ ଚଣ୍ଡୀ ନାମେ ।
ମହାଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ
ପ୍ରତ୍ୟକ୍ଷେ ବର ଦିଅଇ ସେ ପରମ ସାଧବୀ ।'

ପୁଣି ସାରଳା ଦାସ ମହାଭାରତର ବିଭିନ୍ନ ଚରିତ୍ର ଚିତ୍ରଣ କାଳରେ ସେହି ଚରିତ୍ରମାନଙ୍କୁ ଭାରତବର୍ଷର ନାନା ସ୍ଥାନ ଭ୍ରମଣ ଓ ସେସବୁ ସ୍ଥାନ ସହିତ ସଂପୃକ୍ତ କରିବା ଅବସରରେ ଉତ୍କଳକୁ ସର୍ବାପେକ୍ଷା ଅଧିକ ଗୁରୁତ୍ୱ ଦେଇଛନ୍ତି । ମହାଭାରତରେ ବର୍ଣ୍ଣିତ ଶିବ ବୃଷଭ ଉପରେ ବସି ବିଶ୍ୱ ଭ୍ରମଣ କରିବା ଅବକାଶରେ ଯାଜପୁରର ବୈତରଣୀ ନଦୀକୂଳରେ ଯାତ୍ରା କରିବା କାଳରେ ବୃଷଭ ସାହାଡ଼ା ବୃକ୍ଷରୁ ପତ୍ର ଆଣି କାନରେ ଦେବା କଥାକୁ ସାରଳା ଦାସ 'ସାହାଡ଼ା ପତ୍ର ମାହାତ୍ମ୍ୟ' ପ୍ରସଙ୍ଗ ମଧ୍ୟରେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ ସ୍ରଷ୍ଟା ତାଙ୍କର ସ୍ୱର୍ଗାରୋହଣ ପର୍ବରେ ପାଣ୍ଡବମାନଙ୍କୁ ନାନା ତୀର୍ଥ ଭ୍ରମଣ କରାଇ ଶେଷରେ ନୀଳାଚଳ ଧାମ ସହିତ ମହେନ୍ଦ୍ର, ମେଘାସନ, ବୈତରଣୀ ପ୍ରଭୃତି ଓଡ଼ିଶାର ବିଭିନ୍ନ ତୀର୍ଥ ବୁଲାଇ ଉତ୍କଳୀୟ ପ୍ରୀତିକୁ ବହୁଗୁଣିତ କରିଛନ୍ତି ।

ଏସବୁ ଦୃଷ୍ଟିରୁ ମନେହୁଏ ସାରଳା ଦାସ ଥିଲେ ଆମ ସାହିତ୍ୟର ପିତାମହ ଭୀଷ୍ମ ଓ ଉତ୍କଳୀୟ ରେନାସାଁ ଯୁଗର ପ୍ରଥମ ସ୍ରଷ୍ଟା । ତାଙ୍କର ବିପୁଳ ସୃଷ୍ଟି ମଧ୍ୟରେ ସେ କେବଳ ଓଡ଼ିଆ ଭାଷା ସାହିତ୍ୟକୁ ପ୍ରତିଷ୍ଠା ଦେଇନାହାନ୍ତି, ତାହା ସହିତ ସମଗ୍ର ଭାରତବର୍ଷରେ ଓଡ଼ିଆ ଜାତି ଓ ଜାତୀୟତାର ଭିତ୍ତିକୁ ଦୃଢ଼ କରି ତାହାରି ଉପରେ ଆମ ସଂସ୍କୃତି ଓ ସଭ୍ୟତାର ହର୍ମ୍ୟକୁ ପଲ୍ଲବିତ କରିଛନ୍ତି । ଫଳତଃ ଅମା ଅନ୍ଧକାର ମଧ୍ୟରୁ ଏ ଜାତି ଆଲୋକ ଦିଗରେ ଅଗ୍ରସର ହୋଇଛି ଓ ବିଶ୍ୱଦରବାରରେ ନିଜ ଆସନକୁ ଦୃଢ଼ କରିପାରିଛି ।

୧୫୦୧, ମହାନଦୀ ବିହାର
କଟକ–୭୫୩୦୦୪





# ଧନୁଯାତ୍ରା– ସଂସ୍କୃତିର ପାଦଚିହ୍ନ

**କୁଞ୍ଜବିହାରୀ ସାହୁ**

ଉତ୍କଳ ପରମ୍ପରାର ଉତ୍କୃଷ୍ଟ ନିଦର୍ଶନ ରୂପେ ଲୋକନାଟକର ଅନନ୍ୟ ସ୍ୱାକ୍ଷର ବହନ କରିଛି ବରଗଡ଼ର ଧନୁଯାତ୍ରା । ଉନ୍ମୁକ୍ତ ମଞ୍ଚରେ ହଜାର ହଜାର ଦର୍ଶକଙ୍କ ମନ-ପ୍ରାଣ-ହୃଦୟକୁ ଖୁସିରେ ଚହଲାଇ ପାରୁଥିବା ଯାତ୍ରା ହିଁ ଧନୁଯାତ୍ରା । ଗ୍ରାମାଞ୍ଚଳରେ ଆଦୃତ ଲୋକନାଟକ ପରି ସହରୀ ସଭ୍ୟତାର ପରିବେଷ୍ଟନୀରେ ଅନୁଷ୍ଠିତ ହେଉଥିବା ଲୋକ ନାଟକ 'ଧନୁଯାତ୍ରା'ର ନିଆରା ଆକର୍ଷଣ ବିମୁଗ୍ଧମୟ । ଏହି ଯାତ୍ରା ଲୋକମାନଙ୍କ ଦ୍ୱାରା ଏବଂ ଲୋକମାନଙ୍କର ଆମୋଦ-ପ୍ରମୋଦର ବିସ୍ମିତ ଖୋରାକ ।

ଧନୁର ଏକ ଭିନ୍ନ ମର୍ଯ୍ୟାଦା ରହିଛି । ପୁରାଣ ପୃଷ୍ଠାକୁ ଦୃଷ୍ଟି ପକାଇଲେ ଜଣାପଡ଼େ, ଧନୁକୁ ସାଧାରଣତଃ ବୀର ପୁରୁଷମାନେ ଧାରଣ କରୁଥିଲେ । ଯେପରି ରାମାୟଣରେ ମର୍ଯ୍ୟାଦା ପୁରୁଷ ଶ୍ରୀରାମ ଚନ୍ଦ୍ର କୋଦଣ୍ଡ ଧନୁ, ମହାଭାରତରେ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କର ଗାଣ୍ଡିବ ଧନୁ, ଭଗବାନ ଶ୍ରୀକୃଷ୍ଣଙ୍କର ସାରଙ୍ଗ ଧନୁ ଏକ ଏକ ଆୟୁଧ ରୂପେ ବିବେଚିତ ହୋଇଥିଲେ ମଧ୍ୟ ସମଗ୍ର ମାନବ ସମାଜରେ ପୌରୁଷର ଆଖ୍ୟା ଦେଇପାରୁଥିଲା । ଅତ୍ୟାଚାରୀ କଂସର ଗର୍ବ ରୂପକ ଧନୁକୁ ବିନାଶ କରିବା ପାଇଁ ଶ୍ରୀକୃଷ୍ଣଙ୍କର ଧନୁଯାତ୍ରାର ଆବେଦନ ବୋଧହୁଏ ଅଧୁନା ଧନୁଯାତ୍ରାର ଆଦ୍ୟ ନାମକରଣ ବୋଲି ଲୋକମତ ଶୁଣିବାକୁ ମିଳେ ।

ପ୍ରାକ୍ ସ୍ୱାଧୀନତା କାଳରୁ ଧନୁଯାତ୍ରାର ମହନୀୟ ଯାତ୍ରା ଆରମ୍ଭ ହୋଇଥିଲେ ମଧ୍ୟ ସ୍ୱାଧୀନତାର ପରେ ପରେ ଏହାର ଶ୍ରୀବୃଦ୍ଧି ପାଇଥିଲା । ୧୯୧୫ ଓ ୧୯୧୬ ମସିହାରେ ଗୌନ୍ତିଆ ଲକ୍ଷପତି ଦାସଙ୍କ ଆପ୍ରାଣ ଉଦ୍ୟମ ଏବଂ ଅହେତୁକ ଇଚ୍ଛାଶକ୍ତି ବଳରେ ଧନୁଯାତ୍ରା ବରଗଡ଼ରେ ଆୟୋଜିତ ହୋଇଥିଲା ବେଳେ ପରବର୍ତ୍ତୀ ସମୟରେ କାଙ୍ଗାଳ ନାୟକ, ଡମ୍ବରୁ ଦାସ, ଧନ ପ୍ରଧାନ, କିଶନ ଡ୍ରାଇଭର, ବିପିନ ସାହୁ, ବୃନ୍ଦାବନ ବଳ, ରଘୁମଣି ଦାଶନନ୍ଦ ଓ ଯଦୁ ସରାଫଙ୍କ ଭଳି ସଂସ୍କୃତି ପ୍ରେମୀମାନଙ୍କର ଉତ୍ସାହ ଯୋଗୁ ଧନୁଯାତ୍ରାର ଲକ୍ଷ୍ୟ ସାଧିତ ହୋଇ ପାରିଥିଲା । ବଲାଙ୍ଗିର ରାଜଦରବାରର ତରବାରୀ କଳାକାର ରାଧାରମଣ ରାୟ ଓ ବିଶିଷ୍ଟ ଛଉ ନୃତ୍ୟ ନିର୍ଦ୍ଦେଶକ ପଦ୍ମନାଭ ସାହୁଙ୍କ ସହଯୋଗ ଅବିସ୍ମରଣୀୟ । ପ୍ରକୃତରେ ଏହିପରି ଦିଗ୍‌ଦ୍ରଷ୍ଟା ତଥା ଜନ୍ମମାଟିର ବରପୁତ୍ରମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ୧୯୪୪ ମସିହାରେ ଭଟଲିଠାରେ ଧନୁଯାତ୍ରାର ଆୟୋଜନ ପର ମୁହୂର୍ତ୍ତରେ ବନ୍ଦ ହୋଇଯିବା ହେତୁ ୧୯୪୮ ମସିହା ପୌଷ ମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଆରମ୍ଭ ହୋଇଥିଲା । ଅମ୍ବାପଲ୍ଲୀର ନୀଳମଣି ପୂଜାରୀ, ବରଗଡ଼ର ଚନ୍ଦ୍ରମଣି ଗୌନ୍ତିଆ, ଚକ୍ରଧର ନାୟକ ଓ ଲଳିତ ସାହୁଙ୍କ ମିଳିତ ଉଦ୍ୟମରେ ଧନୁଯାତ୍ରାର ପରିକଳ୍ପନା ହୋଇପାରିଥିଲା । ପୂର୍ବରୁ ଅନୁଷ୍ଠିତ ହୋଇ ଆସୁଥିବା ଚନ୍ଦନ ଯାତ୍ରାକୁ କେହି କେହି ସ୍ୱୀକାରୋକ୍ତି ପ୍ରଦାନ କଲେ ମଧ୍ୟ ନୀଳମଣି ପୂଜାରୀଙ୍କ ଧନୁଯାତ୍ରାର ମହାନ୍ ପରମ୍ପରାକୁ ସ୍ୱୀକୃତି ରୂପେ ବାଛି ନେଇଥିଲେ ସମସ୍ତେ । ଏହି ଧନୁଯାତ୍ରା ପୂର୍ବରୁ ଧନୁଯାତ୍ରା ମେଳା, କୃଷ୍ଣ ମେଳା ଏବଂ କଂସ ବଧ ମେଳା ନାମରେ ସ୍ମୃତିମୟ ହୋଇଥିଲେ ବି କୃଷ୍ଣପ୍ରେମର ମହାର୍ଘ ଲୋକନାଟକ ଧନୁଯାତ୍ରା ନାମରେ ଉଦ୍‌ଘୋଷିତ ହୋଇ ରହିଲା ଚିରକାଳ ।

ସ୍ୱାଧୀନତା ପରେ ଧନୁଯାତ୍ରା ବରଗଡ଼ର ହାଟପଦାସ୍ଥିତ ଆଡ଼ଭୋକେଟ୍ ଧର୍ମରାଜ ସିଂହଙ୍କ ଘର ସାମ୍ନାରେ ମଞ୍ଚରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ଆଲୋକର ବିଶେଷ ବ୍ୟବସ୍ଥା ନଥିବାରୁ ପେଟ୍ରୋମାକ୍ସ ଏବଂ ଲଣ୍ଠନ ଆଲୋକର ସହାୟତାରେ ଯାତ୍ରା ଚାଲୁ ରହିଥିଲା, ଯାହାକି ପ୍ରତ୍ୟେକଙ୍କ ମନରେ ନିଆରା ଭାବାବେଗ ତିଆରି କରୁଥିଲା । ଦର୍ଶକମାନେ ଆସୁଥିଲେ ଯାତ୍ରା ଦେଖିବା ପାଇଁ





ଏବଂ ନିଜ ପ୍ରିୟ ଅଭିନେତା/ଅଭିନେତ୍ରୀମାନଙ୍କ ଭାବମୟ ଅଭିନୟ ଦେଖିବାକୁ । ଯାତାୟାତର ମାଧମ ଥିଲା ଶଗଡ଼ ଗାଡ଼ି । ସୁଦୂର ଗାଁରୁ ବି ଜନସାଧାରଣ ଆସି ଉପଭୋଗ କରୁଥିଲେ ଧନୁଯାତ୍ରାକୁ । ଉତ୍ସାହିତ କରୁଥିଲେ ସମସ୍ତ କଳାକାରଙ୍କୁ ହୃଦୟର ନିଭୃତ କୋଣରୁ ।

ଲୋକ ନାଟକର ସମସ୍ତ ମାଧୁର୍ଯ୍ୟମୟ ବିଭବ ଧନୁଯାତ୍ରାରେ ପ୍ରତିଫଳିତ ହୋଇଥାଏ । ଏହାର ଅନୁପ୍ରବେଶ ବାସ୍ତବିକ ବରଗଡ଼ବାସୀଙ୍କ ପାଇଁ ହିଲ୍ଲୋଳିତ ଅଧ୍ୟାୟ ହେଲେ ବି ଏଭଳି ମୁକ୍ତାକାଶଭିନୟ ପୃଥିବୀ ପ୍ରସିଦ୍ଧ ଲାଭ କରିଛି । ଆଞ୍ଚଳିକ ଲୋକ ଗୀତ ସଞ୍ଚାର, ଲୋକବାଦ୍ୟ ମାଦଳ, ଢ଼ୋଲ, ମହୁରୀ, ମୃଦଙ୍ଗ ସଙ୍ଗତରେ ଆଦରଣୀୟ ଲୋକକଥାର ଛିଟା ସ୍ୱୟଂ ବାରିହୋଇ ପଡେ ଯାତ୍ରାରେ । ବରଗଡ଼ ପାଲଟିଯାଏ ମଥୁରା କଟକ, ଆମ୍ରକୁଞ୍ଜ ଶୋଭିତ ଅମ୍ବାପଲ୍ଲୀ ଗାଁ ହୁଏ ଗୋପପୁର ଏବଂ କଳକଳ ନିନାଦିନୀ 'ଜୀରା' ନଦୀ ହୁଏ ଯମୁନା । ଏମିତି ଏକ ପରିକଳ୍ପିତ ଭାବଧାରା ସହ ନିଶାମଣି ହାଇସ୍କୁଲ ପ୍ରାଙ୍ଗଣ ରଙ୍ଗମହଲ ଏବଂ ହାଟପଦା ବନିଯାଏ ମହାରାଜା କଂସ ଦରବାର । ଶୀତୁଆ ପୌଷ ମାସ ପଞ୍ଚମୀ ତିଥିରୁ ଆରମ୍ଭ ହୋଇ ପୌଷ ପୂର୍ଣ୍ଣିମାରେ ସମାପ୍ତି ଘଟୁଥିବା ଧନୁଯାତ୍ରା ଶୀତ ରାତ୍ରିକୁ ଆହୁରି କମନୀୟ, ନମନୀୟ ତଥା ପ୍ରାଣବନ୍ତ କରିଦିଏ । ଉତ୍କଣ୍ଠାରେ ଭରପୂର ଦର୍ଶକପ୍ରାଣ ସତେ ଯେମିତି ଅଜାଡ଼ି ହୋଇପଡ଼େ ପ୍ରତ୍ୟେକ ଅଭିନେତା ଓ ଅଭିନେତ୍ରୀଙ୍କ ନିଖୁଣ ଅଭିନୟରେ ।

ଅମ୍ବାପଲ୍ଲୀ (ଗୋପପୁର)ରେ ଶ୍ରୀକୃଷ୍ଣଙ୍କ ଜନ୍ମଠାରୁ ଆରମ୍ଭ କରି ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ପ୍ରଦର୍ଶିତ ହୋଇଥାଏ । ଘର–ଅଗଣା ସୁସଜ୍ଜିତ ହୋଇ ସତେ ଅବା ଗୋପପୁରର ଚିତ୍ରକୁ ଫେରାଇ ଆଣେ । ମୁକ୍ତ ରଂଗମଞ୍ଚରେ ନନ୍ଦୋତ୍ସବ, ପୁତନା ବଧ, କୃଷ୍ଣ ବଳରାମଙ୍କ ମଥୁରା ଗମନ, ନାବକେଳି, ରଂଗସଭା, ଶିବଧନୁ ଭଗ୍ନ, କଂସ ବଧ, କୁବୁଜା ତାରଣ, କୁବଳୟା ମାରଣ ଇତ୍ୟାଦି ଅଭିନୀତ ହୋଇଥାଏ । ପୁତନା, ଉଗ୍ରସେନ, ବସୁଦେବ, ଅକ୍ରୁର, କୃଷ୍ଣ, ଚାଣୁର, ଦେବକୀ, ଯଶୋଦା, ନନ୍ଦ ମହାରାଜଙ୍କ ନିଖୁଣ ଅଭିନୟ ମାର୍ମିକ ତଥା ଜୀବନ୍ତ ହୋଇଉଠେ । ସେହିପରି ରଜକ, କାଳୀୟଦଳନ ପର୍ବ ମଧ୍ୟ ସମ୍ମୋହନ ପରି ମନେହୁଏ ।

ରଂଗ ମହଲରେ ପ୍ରବଳପ୍ରତାପୀ ମହାରାଜ କଂସର ନୃତ୍ୟରାସ ଓ ସଂଗୀତ ଝଙ୍କାର ସନ୍ଧ୍ୟାର ଶୀତଳତାକୁ ମଧୁମୟ କରିଦିଏ । ହସ୍ତୀମାନଙ୍କର ଉପସ୍ଥିତ ପିଲାମାନଙ୍କର ଖୁସିକୁ ଦ୍ୱିଗୁଣିତ କରି ଆନନ୍ଦ ବାଣ୍ଟିଦିଏ । ଏହି ରଂଗ ମଞ୍ଚରେ ବିଭିନ୍ନ ଦିବସରେ ଓଡ଼ିଶା ତଥା ଓଡ଼ିଶା ବାହାର ରାଜ୍ୟ ଯଥା ପଞ୍ଜାବ, ଆସାମ, ନାଗାଲାଣ୍ଡ ଏପରିକି କେରଳର ନୃତ୍ୟାଙ୍ଗନାମାନେ ଭାଗନେଇ ଆମୋଦିତ ହୁଅନ୍ତି ଏବଂ ଆନନ୍ଦ ପ୍ରଦାନ କରନ୍ତି । ନାଚ–ଗୀତ ତାଳରେ କଂସ ମହାରାଜ ଉଲ୍ଲସିତ ହୁଅନ୍ତି । ଏ ଦୃଶ୍ୟର ଅବଲୋକନରେ ମହାରାଜ କଂସର ନୃତ୍ୟଗୀତ ପ୍ରତି ଆଗ୍ରହ ଏବଂ ରଙ୍ଗଶାଳାର ସୌନ୍ଦର୍ଯ୍ୟ ସ୍ମରଣ କରାଯାଇପାରେ ।

ରଙ୍ଗମହଲରେ ପ୍ରବଳ ପ୍ରତାପୀ କଂସର ଲାଳିତ୍ୟପୂର୍ଣ୍ଣ ନୃତ୍ୟଗୀତର ଆସର ପରେ କଂସ ମହାରାଜ ହାଟପଦାରେ ନିର୍ମିତ ଦରବାର ମଞ୍ଚକୁ ଆଗମନ କରନ୍ତି ସୁସଜ୍ଜିତ ହସ୍ତି ପୃଷ୍ଠରେ । ଚାତକ ପରି ଚାହିଁ ରହନ୍ତି ଦର୍ଶକବୃନ୍ଦ । ରଙ୍ଗୀନ ଆଲୋକ ମାଳାରେ ସଜ୍ଜିତ ବୃହତ ମଞ୍ଚ (ଦରବାର)ରେ ମଞ୍ଚାସୀନ ହୋଇ କଂସ ମହାରାଜ ହୁକୁମ୍ ବାଢ଼ନ୍ତି । ମହାମନ୍ତ୍ରୀ ତଥା ପରିଷଦବର୍ଗ ମଧ୍ୟରେ ମଞ୍ଚ ଉଦ୍‌ଭାସିତ ହୁଏ । ନାଟକୀୟ କଥନିକାର ବ୍ୟବଧାନରେ ଆଦୃତ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ଦ୍ୱାରା କାର୍ଯ୍ୟକ୍ରମ ମଞ୍ଚସ୍ଥ ହୁଏ, ଯାହାକି ଖୁବ୍ ଚିତ୍ତାକର୍ଷକ, ରସାଣିତ ଓ ହୃଦୟସ୍ପର୍ଶୀ । ଭିନ୍ନ ଭିନ୍ନ ଦିବସରେ ପ୍ରତିଷ୍ଠିତ ବ୍ୟକ୍ତିମାନେ ଅତିଥି ରୂପେ ବରଗଡ଼ରେ ପଦାର୍ପଣ କରି କଂସ ଦରବାରକୁ ପୁଷ୍କଳ କରିଥାନ୍ତି । ସେଠି କେବଳ କଂସ ମହାରାଜଙ୍କର ପ୍ରଶସ୍ତି ଗାନ କରାଯାଏ । ଏହା ବ୍ୟତିରେକେ କୃଷ୍ଣବଳରାମଙ୍କ ଉଦ୍ଦେଶ୍ୟରେ ଦି'ପଦ ବ୍ୟକ୍ତ କଲେ, ଅତିଥିଙ୍କୁ ଜୋରିମାନା ଅବା ହାଲ୍‌କା ଭର୍ତ୍ସନା ମିଳେ । ସେଥିପାଇଁ ମଞ୍ଚରେ ଅତିଥିମାନେ ନିଜ ଭାଷଣ ପ୍ରତି ସଜାଗ ରହନ୍ତି ।

ଯେଉଁଠି ଖରା ସେଇଠି ତାତି ।
ଯେଉଁଠି ରଜା ସେଇଠି ହାତୀ ।।

ଏହି ଉକ୍ତିଟି ସହଜରେ ବୋଧଗମ୍ୟ ହୋଇଯାଏ ଧନୁଯାତ୍ରାରେ । ରାଜାରାଜୁଡ଼ା ଶାସନ କାଳରେ ହସ୍ତୀର ପ୍ରାଧାନ୍ୟ ଥିଲା ପରି ବର୍ତ୍ତମାନର ଧନୁଯାତ୍ରାରେ ବି କଂସ ମହାରାଜା ହସ୍ତୀ ପୃଷ୍ଠରେ ଉପବିଷ୍ଟ ହୋଇ ପରିକ୍ରମା କରିଥାନ୍ତି । ପରିକ୍ରମଣ ସମୟରେ ପାତ୍ରମନ୍ତ୍ରୀ ସହ ସାଧାରଣ ଜନତା ବୁଲିଥାନ୍ତି । ସହରର ପରିମଳ ବ୍ୟବସ୍ଥାଠାରୁ ସ୍ୱାସ୍ଥ୍ୟ, ଶିକ୍ଷା, ପରିବହନ, ବିଦ୍ୟୁତ୍ ଯୋଗାଣ ଇତ୍ୟାଦି ମୁଖ୍ୟ କାର୍ଯ୍ୟକ୍ରମ ଉପରେ ଦୃଷ୍ଟି ଦେଇଥାନ୍ତି । ନାଗରିକମାନଙ୍କୁ ସଚେତନ କରିବା ସହ କୌଣସି ପ୍ରକାର ଅସଜଡ଼ା ପରିସ୍ଥିତି ଦେଖିଲେ ସଂଗେ ସଂଗେ ହୁକୁମ୍ ଜାରି କରି ଆବଶ୍ୟକୀୟ ପଦକ୍ଷେପ ନିଅନ୍ତି । ଏହି ହୁକୁମନାମାକୁ କଡ଼ା କଡ଼ି ଭାବରେ ଗ୍ରହଣ କରି ନିଅନ୍ତି ସଂପୃକ୍ତ ଅଧିକାରୀ । ଏ ଦୃଶ୍ୟ ପ୍ରକୃତରେ ଦୃଶ୍ୟମୟ



ଏବଂ ଅନ୍ୟାୟ ଅନୀତି ଲୋକମାନଙ୍କ ମନରେ ଭୀତ ସଂଚାର କରେ। ଏହା ଧନୁଯାତ୍ରାର ଏକ ବିଶେଷ ଘଟଣା।

କଂସ ବଧ ଦୃଶ୍ୟ ସମାପ୍ତି ପରେ କଂସ ମହାରାଜା ପରଦିନ ପୁରୀ ଶ୍ରୀମନ୍ଦିରକୁ ଆଗମନ କରି ପାପମୋଚନ କରିଥାନ୍ତି।

ଆଜିର ଏ ଯାନ୍ତ୍ରିକ ସଭ୍ୟତାରେ ମଣିଷ ଯେତେ ଶୀର୍ଷରେ ରହିଲେ ମଧ୍ୟ ବରଗଡ଼ର ସାଂସ୍କୃତିକ ଲୋକନାଟକ ଧନୁଯାତ୍ରାର କଳାକାରମାନେ ଚିରଦିନ ସଂସ୍କୃତିର ଶିଖର ଦେଶରେ ହିଁ ରହିବେ। ପୌରାଣିକ ଆଲେଖ୍ୟକୁ ନେଇ ମଞ୍ଚସ୍ଥ ଧନୁଯାତ୍ରା ପୃଥିବୀବାସୀଙ୍କ ପାଇଁ ମୁକ୍ତାକାଶ ରଙ୍ଗମଞ୍ଚାଭିନୟର ସ୍ୱାଦ ଦେଉଥିବ, ଏହା ସ୍ୱୀକାର୍ଯ୍ୟ।

ଥରେ ଏ ପୌଷମାସର ଶୀତୁଆ ଜାଡ଼ରେ ବରଗଡ଼ ସହରରେ ରହି ଧନୁଯାତ୍ରାକୁ ମନଭରି ଉପଭୋଗ କରିବା। ମହାନ ପରମ୍ପରାକୁ ବଞ୍ଚାଇ ରଖିବା ଚିରକାଳ।

ଜଳବିଭାଜିକା ପ୍ରକଳ୍ପ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ,
ବରଗଡ଼– ୭୬୮୦୨୮

# ତ୍ରିରଙ୍ଗା

ମିନତୀ ମିଶ୍ର

ଧାରେ ସବୁଜ କ୍ଷେତ
ଧାରେ ଶୋଣିତ ସ୍ରୋତ
ଆଉ ଗୋଟେ ନିର୍ମଳ ହୃଦୟକୁ ନେଇ
ତୁମର ଅସ୍ତିତ୍ୱ ତ୍ରିରଙ୍ଗା !
ତା ମଧ୍ୟରେ ଆତଯାତ
ସମୟର ଚକ ।
ଏକାଧାରରେ ଶାନ୍ତିପ୍ରିୟ
ସ୍ୱପ୍ନ ପିପାସୁ, ପୁଣି ସ୍ୱାଭିମାନୀ
ସବୁ ସୁଗୁଣକୁ ଏକାଠି କରି
ଛଳ ଛଳ କରି ତୁମକୁ ଗଢ଼ି ଦେଲା ଯିଏ
ବାର ବାର ପ୍ରଣାମ ତାହାଙ୍କୁ ।

ପବନରେ ପବନରେ
ତରଙ୍ଗ ତୋଳି
ତୁମେ ଦେଶର ସୌଭାଗ୍ୟ ପରି
ହିଲ୍ଲୋଳ ସାଥେ ଯେବେ
ମୃଦୁ ଦୋଳନରେ ଥାଅ
ମନ କହେ
ଏମିତି ସବୁଜିମା ଝଟକୁ
ମୋ' ଦେଶର ଭାଗ୍ୟରେଖାରେ
ମୋ' ଦେଶର ପୁରପଲ୍ଲୀରେ ।

କ୍ଷେତରେ କ୍ଷେତରେ
ସବୁଜିମା ଚହଟୁ
ସବୁ ପ୍ରାଣ ହେଉ, କର୍ମଚଞ୍ଚଳ
ଉଚ୍ଛଳ ଛଳଛଳ
ଯାଉ ଚହଟି ଯାଉ
ନଗର, ନଗର, ପୁର ପଲ୍ଲୀ
ତୁମରି ନିରବ ବାର୍ତ୍ତା ।

ସବୁ ଭାରତୀୟ
ଯିଏ ଯେଉଁଠି ବି ଥାଅ
ଗାଆଁ ମାଟିରେ, କ୍ଷେତରେ
ଖାଦାନ୍‌ରେ, ବିଦେଶରେ
ଯେଉଁଠି ବି,
ସବୁ ଏଇ ଗୋଟିଏ
ଛତା ତଳର ମଣିଷ
ଏକଥା ଯେମିତି ମନେ ରହେ ।

ଭାରତୀୟ ଷ୍ଟେଟ୍ ବ୍ୟାଙ୍କ
ମୁଖ୍ୟ ଶାଖା, ଭୁବନେଶ୍ୱର



# ଅମୃତ ଦିବସ: ଜାନୁଆରୀ ଛବିଶ

ଶ୍ରୀନିବାସ ଆଚାର୍ଯ୍ୟ

ଜ୍ୟୋତିଷ ଶାସ୍ତ୍ରର ଗଣନା ଅନୁସାରେ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିର ରାଶି ଓ ନକ୍ଷତ୍ରକୁ ନେଇ ତାର ଅମୃତ ଦିବସ ଗଣନା ହୋଇଥାଏ। ଫଳରେ ବ୍ୟକ୍ତିଟି ସେହି ଅମୃତ ଦିବସରେ ତା'ର କର୍ମର ଶୁଭାରମ୍ଭ କରି ଫଳବତୀ ହୋଇଥାଏ । ଏହା ସତ୍ୟ ଯେ ସମସ୍ତ ବ୍ୟକ୍ତିଙ୍କର ଅମୃତ ଦିବସ ଗୋଟିଏ ଦିନରେ ରାଜଜୋଟକ ହୋଇ ନଥାଏ । କାରଣ ସମସ୍ତଙ୍କର ରାଶି ନକ୍ଷେତ୍ର ଭିନ୍ନ ଭିନ୍ନ ହୋଇଥିବାରୁ ଅମୃତ ଦିବସ ମଧ୍ୟ ପୃଥକ ପୃଥକ ହୋଇଥାଏ । କିନ୍ତୁ ଏହା ଏକ ବିସ୍ମୟ ଯେ ସମଗ୍ର ଭାରତର କୋଟି କୋଟି ଜନତାଙ୍କର ଗୋଟିଏ ଦିବସ ଥିଲା ଅମୃତମୟ, ଯାହାକି ଆଶା, ବିଶ୍ୱାସ, ସ୍ୱପ୍ନ ଓ କଳ୍ପନାର ବାହାରେ । ସେହି ଅମୃତ ଦିବସଟି ଥିଲା ୧୯୫୦ ମସିହାର ଜାନୁଆରୀ ଛବିଶ । ଓଡ଼ିଆ ପାଞ୍ଜିରେ ମକର ୧୩ଦିନ ମାଘ ମାସର ଶୁକ୍ଳପକ୍ଷ ଅଷ୍ଟମୀ ତିଥି ଗୁରୁବାର ଶ୍ରୀ ଶ୍ରୀ ରାମଚନ୍ଦ୍ରଙ୍କ ୨୯ ଅଙ୍କ ୧୩୫୭ ସାଲ। ଏହି ମହାନ ଦିବସକୁ କେହି ଜ୍ୟୋତିଷ ପଣ୍ଡିତ ଗଣନା କରି ନାହାନ୍ତି। ଏହାକୁ କେବଳ ସର୍ବଶକ୍ତି ଦାୟିନୀ, ଆଦିମାତା ତଥା ଭାରତମାତା ଗଣନା କରିଛନ୍ତି। କାରଣ ଜନ୍ମଭୂମି ଭାରତମାତାର ଶୁଭ ଆଶୀର୍ବାଦ ବଳରେ ଆମ୍ଭେମାନେ ଆମର ନ୍ୟାଯ୍ୟ ଅଧିକାର ଲାଭ କରିପାରିଛୁ। ତେଣୁ ଏହି ଦିବସର ଗୁରୁତ୍ୱ ଓ ମହତ୍ୱ ଆମ୍ଭମାନଙ୍କ ପାଇଁ ଗର୍ବ ଓ ଗୌରବ ଅଟେ। ଏକ ଶ୍ଳୋକରେ ପ୍ରଦତ୍ତ–

ଭୂମେର୍ଗରୀୟସୀ ମାତା ସ୍ୱର୍ଗା ଦୁଇତରଃ ପିତା,
ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ।

ଏହି ଦିବସର ପୂର୍ବ ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ଭାରତୀୟମାନଙ୍କର ଜାତୀୟ ଜୀବନ ଉପରେ କଳା ବାଦଲ ପରି ଦୁଃଖ, ଦାରିଦ୍ର୍ୟ, ଅଭାବ, ଅନଟନ ଇତ୍ୟାଦି ଅସୁବିଧାମାନ ଘେରି ରହିଥିଲା। କୁଚକ୍ରୀ, ନିର୍ମମ, ନିଷ୍ଠୁର ଇଂରେଜ ସରକାରଙ୍କର ବର୍ବରୋଚିତ ଶାସନ ଅଧୀନରେ ଭାରତବାସୀ ଥିଲେ ନିଷ୍ପେଷିତ, ପଦଦଳିତ, ଅବହେଳିତ, ଲାଞ୍ଛିତ ଓ ଅପମାନିତ। ଏହି ପରାଧୀନ ଶାସନ କବଳରୁ ମୁକ୍ତି ପାଇବା ପାଇଁ ତୁହାକୁ ତୁହା ମୁଣ୍ଡ ଟେକିଥିଲା ମୁକ୍ତିକାମୀ ସଂଗ୍ରାମ। ଏହାକୁ ଭ୍ରୂକ୍ଷେପ ନକରି ତୀବ୍ରତର ରୂପେ ଜାରି ରଖିଥିଲେ ଅପାରଗ ଇଂରେଜ ସରକାର ଶୋଷଣ, ମାରଣ, ଓ ଦମନଲୀଳା ଇତ୍ୟାଦି ଅନ୍ଧାର ରାଜୁତି ନିରୀହ ଦରିଦ୍ର ପ୍ରଜାମାନଙ୍କ ଉପରେ। ଏହି ସ୍ୱାଧୀନତା ସଂଗ୍ରାମର ପବିତ୍ର ଯଜ୍ଞକୁଣ୍ଡରେ ଶତ ଶତ ବୀର ସଂଗ୍ରାମୀ ଝାସ ଦେଇ ଆତ୍ମବଳୀ ଦେଇଥିଲେ। ଏହି ବିଦେଶୀ ବଣିକଗୋଷ୍ଠୀ ତଥା ଅତ୍ୟାଚାରୀ ସରକାରଙ୍କୁ ବିତାଡ଼ିତ କରି ଦେଶ ଓ ଜାତିର ପୂର୍ବ ସ୍ୱାଭିମାନ ଫେରାଇ ଆଣିବା ପାଇଁ ସର୍ବଭାରତୀୟ ସ୍ତରରେ କେତେଜଣ ଗୁଣିଜ୍ଞାନୀ, ବୁଦ୍ଧିଜୀବୀ, ଲଢୁଆ ବୀର ଓ ଦେଶପ୍ରେମୀମାନଙ୍କର ନେତୃତ୍ୱରେ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ନାମକ ଏକ ସଂଗଠନ ଜନ୍ମଲାଭ କରିଥିଲା। ସେହିଦିନଠାରୁ ଦେଶର ସ୍ୱାଧୀନତା ଆନ୍ଦୋଳନ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟସୂଚୀ ମାଧ୍ୟମରେ ନିଜର ଲକ୍ଷ୍ୟ ପଥରେ ଅଗ୍ରସର ହୋଇଥିଲା। ଜାତିର ଜନକ, ସ୍ୱାଧୀନତା ସଂଗ୍ରାମର ଶ୍ରେଷ୍ଠ ପୁରୋଧା, ମହାନ ଜନନାୟକ ତଥା ଅହିଂସା ମନ୍ତ୍ରରେ ଦୀକ୍ଷିତ ମହାତ୍ମା ଗାନ୍ଧୀ ୧୯୧୫ ମସିହାରେ ଆଫ୍ରିକାରୁ ପ୍ରତ୍ୟାବର୍ତ୍ତନ କରି ଏହି ସଂଗଠନକୁ ସକ୍ରିୟ ଓ ସୁଦୃଢ଼ କରାଇଥିଲେ। ଏହି ସଂଗ୍ରାମରେ ଅହିଂସାର ବ୍ରହ୍ମାସ୍ତ୍ର ପ୍ରୟୋଗ କରି ଗାନ୍ଧିଜୀ ଏହାକୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ପାରିଥିଲେ ଏବଂ ହୃତ ଗୌରବ ଫେରାଇ ଆଣିଥିଲେ। ମୁକ୍ତ ଆକାଶର ବିହଙ୍ଗ ପରି ଆମ୍ଭେମାନେ ସ୍ୱାଧୀନତାର ସ୍ୱାଦ ଉପଭୋଗ କରିଥିଲୁ ୧୯୪୭ ମସିହା ଅଗଷ୍ଟ ମାସର ୧୫ ତାରିଖ ସିନା କିନ୍ତୁ ଗୋଟିଏ ସାଧାରଣତନ୍ତ୍ର, ଧର୍ମନିରପେକ୍ଷ





ଗଣତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦା ଫେରି ପାଇ ନଥିଲୁ। କାରଣ ଏହି ବୃହତ ଗଣତନ୍ତ୍ର ରାଷ୍ଟ୍ରକୁ ଶାସନ କରିବା ପାଇଁ କିଛି ନୀତି ନିୟମ ବା ଶାସନ ଖସଡ଼ା ଲିପିବଦ୍ଧ ଆକାରରେ ପ୍ରସ୍ତୁତ ହୋଇ ନଥିଲା। ଯେଉଁଦିନ ଏହାର ଏକ ପୂର୍ଣ୍ଣାଙ୍ଗ ସମ୍ବିଧାନ ପ୍ରଣୟନ ହୋଇ କାର୍ଯ୍ୟକାରୀ ହେଲା, ସେହିଦିନ ଥିଲା ୧୯୫୦ ମସିହା ଜାନୁଆରୀ ୨୬ ତାରିଖ। ଏହି ବିଶାଳ ଭୌଗଳିକ ଭୂଖଣ୍ଡର ସୀମା ମଧ୍ୟରେ ଥିଲେ ମଧ୍ୟ ଏହାର ଅଖଣ୍ଡତା ଏକ। ମନରେ ପ୍ରଶ୍ନ ଉଠେ ଯେଉଁଦିନ ସମ୍ବିଧାନ ପ୍ରଣୟନ କାର୍ଯ୍ୟ ସମାପ୍ତ ହେଲା, ସେହିଦିନ ସାଧାରଣତନ୍ତ୍ର ଦିବସ ରୂପେ ପାଳନ କରା ନଯାଇ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ କାହିଁକି ପାଳନ ହେଲା। ଏହାର ମୁଖ୍ୟ କାରଣ ହେଲା ୧୯୨୯ ମସିହା ଡିସେମ୍ବର ମାସ ୩୧ ତାରିଖରେ ଲାହୋରଠାରେ ଅନୁଷ୍ଠିତ ହୋଇଥିବା ନିଖିଳ ଭାରତୀୟ କଂଗ୍ରେସ ଅଧିବେଶନରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଆସନ୍ତା ଜାନୁଆରୀ ୨୬ ତାରିଖକୁ ପୂର୍ଣ୍ଣ ସ୍ୱରାଜ୍ୟ ଦିବସ ରୂପେ ପାଳନ କରାଯିବ। ଯଦି ଇଂରେଜ ସରକାର ସ୍ୱୀକୃତି ପ୍ରଦାନ ନ କରନ୍ତି, ତେବେ ଆଇନ ଅମାନ୍ୟ ଆନ୍ଦୋଳନ କରାଯିବ। ଫଳରେ ୧୯୩୦ ମସିହା ଜାନୁଆରୀ ୨୬ ତରିଖରେ ପାଳନ ହୋଇଥିଲା ଭାରତର ପ୍ରଥମ ସ୍ୱାଧୀନତା ଦିବସ। ପୁନଶ୍ଚ ୧୯୩୧ ମସିହା ଜାନୁଆରୀ ୨୬ ତାରିଖରେ ସ୍ୱାଧୀନତା ଦିବସ କରାଚିଠାରେ ପାଳନ ହୋଇଥିଲା। ଏହା ସହିତ ଜାତିର ସୂଚକ ତଥା ସଂକେତ ରୂପେ ତ୍ରିରଙ୍ଗ ଜାତୀୟ ପତାକା ଉତ୍ତୋଳନ ହୋଇଥିଲା। ଏହି ଦିବସକୁ ସମ୍ମାନ ଦେବା ଓ ଭାରତ ଇତିହାସରେ ସ୍ମରଣୀୟ ରଖିବା ପାଇଁ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ନୂଆ ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା। ଏହାର ସଭାପତି ରୂପେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ସର୍ବସମ୍ମତିକ୍ରମେ ମନୋନୀତ ହୋଇଥିଲେ।

ଏହି ପବିତ୍ର ଦିବସ ଅଶେଷ ନାମରେ ଅଭିହିତ ଯଥା– ଗଣତନ୍ତ୍ର ଦିବସ, ସାଧାରଣତନ୍ତ୍ର ଦିବସ, ଜନରାଜ୍ୟ ଦିବସ ଓ ଲୋକତନ୍ତ୍ର ଦିବସ । ସମ୍ବିଧାନ ହେଉଛି ଗଣତନ୍ତ୍ର ରାଷ୍ଟ୍ରର ଏକ ମାନଦଣ୍ଡ। ଏହାକୁ ପ୍ରଣୟନ କରିବା ପାଇଁ ସର୍ବ ପ୍ରଥମେ ଅର୍ଥାତ୍ ୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ୭ ଜଣ ସଦସ୍ୟଙ୍କୁ ନେଇ ଡକ୍ଟର ଆମ୍ବେଦକରଙ୍କ ସଭାପତିତ୍ୱରେ ଏକ ଖସଡ଼ା ପ୍ରସ୍ତୁତ ସମିତି ମନୋନୀତ ହୋଇଥିଲା। ଏହି ମୁଖ୍ୟ ସମିତି ବିଭିନ୍ନ ପ୍ରକାର ସମିତି ଗଠନ କରିବା ସଂଗେ ସଂଗେ ଏଗୁଡିକର କାର୍ଯ୍ୟକୁ ପରୀକ୍ଷା ନିରୀକ୍ଷା କରିବାରେ ସକ୍ରୀୟ ଅଂଶ ଗ୍ରହଣ କରିଥିଲା। ଏହି କମିଟି ତା'ର ଲିଖିତ ବିବରଣୀ ୧୯୪୮ ମସିହା ଫେବୃଆରୀ ୨୧ ତାରିଖରେ ଉପସ୍ଥାପନ କରିଥିଲା। ୧୯୪୮ ମସିହା ନଭେମ୍ବର ୪ ତାରିଖରେ ଏହି ବୈଠକ ବସି ବିଭିନ୍ନ ପ୍ରକାର ଅସୁବିଧା ତଥା ଜାତି, ଧର୍ମ ଓ ବର୍ଣ୍ଣ ଇତ୍ୟାଦିକୁ ଆଖି ଆଗରେ ରଖି ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ନୀତି ଓ ଧାରାଗୁଡିକ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇ ଏକ ପୂର୍ଣ୍ଣାଙ୍ଗ ବିବରଣୀ ପ୍ରସ୍ତୁତ ହୋଇଥିଲା। ଦ୍ୱିତୀୟ ଥର ପାଇଁ ଏହାର ବୈଠକ ୧୯୪୮ ମସିହା ଅକ୍ଟୋବର ୧୭ ତାରିଖରେ ସମାପ୍ତ ହୋଇଥିଲା । ତୃତୀୟ ପର୍ଯ୍ୟାୟରେ ଏହା ୧୯୪୯ ମସିହା ନଭେମ୍ବର ୧୫ ତାରିଖରେ ବସିଥିଲା ଓ ୧୯୪୯ ମସିହା ନଭେମ୍ବର ୧୪ ତାରିଖରେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସଭାପତିତ୍ୱରେ ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଆରମ୍ଭ ହୋଇ ସେହି ମାସ ୨୬ ତାରିଖରେ ଏକ ପୂର୍ଣ୍ଣାଙ୍ଗ ସମ୍ବିଧାନ ରୂପେ ପରିଗଣିତ ହୋଇଥିଲା । ସର୍ବଶେଷରେ ଏହି କମିଟି ୧୯୫୦ ମସିହା ଜାନୁଆରୀ ୨୪ ତାରିଖରେ ବସି ସର୍ବସମ୍ମତିକ୍ରମେ ଆମ ଦେଶର ପ୍ରଥମ ରାଷ୍ଟ୍ରପତି ରୂପେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ମନୋନୀତ କରିଥିଲେ।

ବହୁ ଘାତ ପ୍ରତିଘାତ, ବାଦାନୁବାଦ ଓ ବାଧାବିଘ୍ନ ମାଧ୍ୟମରେ ପ୍ରାୟ ୨ ବର୍ଷ ୯ ମାସ ୧୫ ଦିନରେ ଏକ ପୂର୍ଣ୍ଣାଙ୍ଗ ସମ୍ବିଧାନ ରୂପେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା। ଦେଶର ବଛାବଛା ଜ୍ଞାନୀଗୁଣୀ, ଶିକ୍ଷାବିତ୍, ଅର୍ଥନୀତିଜ୍ଞ, ବୁଦ୍ଧିଜୀବୀ, ରାଜନୀତିଜ୍ଞ ଓ ଅଭିଜ୍ଞ ଦେଶପ୍ରେମୀଙ୍କୁ ନେଇ ଡକ୍ଟର ବି.ଆର୍. ଆମ୍ବେଦକରଙ୍କ ସଭାପତିତ୍ୱରେ ଯେଉଁ ଶାସନ ଖସଡ଼ା ପ୍ରସ୍ତୁତ ହୋଇଥିଲା, ଆଜି ଭାରତର କୋଟି କୋଟି ଜନତା ତାହାର ସୁଫଳ ଲାଭ କରୁଛନ୍ତି। ପୃଥିବୀର ବିଭିନ୍ନ ଗଣତନ୍ତ୍ର ରାଷ୍ଟ୍ରର ସମ୍ବିଧାନ ଢାଞ୍ଚା ଅନୁଯାୟୀ ଆମ ସମ୍ବିଧାନ ରୂପରେଖ ପ୍ରସ୍ତୁତ ହୋଇଅଛି। ଏହା ଆମେରିକା ସମ୍ବିଧାନର ପ୍ରାୟ ୫ଗୁଣ ଓ ଚୀନ ସମ୍ବିଧାନର ଦୁଇଗୁଣ ଅଟେ। ଏହା ଯେ କେବଳ ସରକାରଙ୍କ ସମ୍ପର୍କରେ ସୂଚନା ଅଛି ତାହା ନୁହେଁ, କ୍ଷମତାର ବିକେନ୍ଦ୍ରୀକରଣ, ବ୍ୟବସ୍ଥାପକ କ୍ଷମତା, ରାଜ୍ୟ ବ୍ୟବସ୍ଥାପକ କ୍ଷମତା, ଶାସନ, ନ୍ୟାୟପାଳିକା, ଅର୍ଥ, ବାଣିଜ୍ୟ ଇତ୍ୟାଦି ସମସ୍ତ ବିଷୟରେ ବିସ୍ତୃତ ଭାବରେ ଉଲ୍ଲିଖିତ ହୋଇଅଛି। ଯେଉଁ ବୁଦ୍ଧିଜୀବୀ, କୁଶଳୀ, ଜ୍ଞାନୀ, ଆଇନ ଶାସ୍ତ୍ରରେ ବିଶେଷଜ୍ଞ, ନିଜର ବ୍ୟକ୍ତିଗତ ଦକ୍ଷତା ଓ ପାରଦର୍ଶିତା ବଳରେ ଏହାକୁ ପୂର୍ଣ୍ଣାଙ୍ଗ ରୂପରେଖ ଦେଇ ପ୍ରଣୟନ କରିଛନ୍ତି, ସେମାନଙ୍କ ପାଖରେ ଏହି ଦେଶ ତଥା ଜନସମାଜ ଚିରଋଣୀ। ଏହି ଦିବସରେ ଭାରତର କୋଟି କୋଟି ଜନତା ପରାଧୀନତାରୁ ମୁକ୍ତି ପାଇଥିବାରୁ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ମହାନ ଓ ପବିତ୍ର





ଦିବସ ଅଟେ। ବର୍ତ୍ତମାନ ଆମ ଦେଶ ପରି ପୃଥିବୀର ଅଧିକାଂଶ ଦେଶରେ ଗଣତନ୍ତ୍ର ଶାସନ ଚାଲୁଅଛି। କିନ୍ତୁ ଆମ ଦେଶରେ ପ୍ରଧାନମନ୍ତ୍ରୀ ଦେଶ ଶାସନର ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି। ସମ୍ବିଧାନ ଅନୁଯାୟୀ ଆମ ଦେଶରେ ଯେଉଁ ରାଜନୈତିକ ଦଳ ନିର୍ବାଚନରେ ସଂଖ୍ୟା ଗରିଷ୍ଠତା ଲାଭ କରିଥାଏ ଓ ଅର୍ଦ୍ଧାଧିକ ସଂଖ୍ୟା ଲାଭ କରିଥାଏ, ସେହି ଦଳକୁ ରାଷ୍ଟ୍ରପତି ସରକାର ଗଢ଼ିବାକୁ ନିମନ୍ତ୍ରଣ କରିଥାନ୍ତି। ସେହି ଦଳର ମୁଖ୍ୟ ପ୍ରଧାନମନ୍ତ୍ରୀ ହୋଇଥାନ୍ତି। ପ୍ରଧାନମନ୍ତ୍ରୀ ସେହି ଦଳର ସାଂସଦମାନଙ୍କ ମଧ୍ୟରୁ ମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ ଓ ଉପମନ୍ତ୍ରୀମାନ ବାଛି ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁମୋଦନ କରାଇଥାନ୍ତି। ଏହାକୁ ସରକାର କୁହାଯାଏ। ଶାସନ କରିବା ପାଇଁ ଆମ ଦେଶରେ ଦୁଇଟି ସଭା ତଥା ଲୋକସଭା ଓ ରାଜ୍ୟସଭା ଅଛି। ଏହାକୁ ପାର୍ଲିଆମେଣ୍ଟ କହନ୍ତି। ସେଠାରେ ଆଇନମାନ ପ୍ରଣୟନ ହୋଇଥାଏ। ସେହି ଆଇନକୁ ରାଷ୍ଟ୍ରପତି ଅନୁମୋଦନ କଲେ ତାହା କାର୍ଯ୍ୟକାରୀ ହୋଇଥାଏ। ସେହିପରି ପ୍ରଦେଶଗୁଡ଼ିକରେ ସରକାର ଗଠନ ହୋଇ ଶାସନ ଚାଲିଥାଏ । ଏହାର ଦୋଷ ତ୍ରୁଟିକୁ ବିଚାର କରିବା ପାଇଁ ଉଚ୍ଚନ୍ୟାୟାଳୟ ମାନ ଅଛି। ଗଣତନ୍ତ୍ର ଶାସନ ବ୍ୟବସ୍ଥାନୁସାରେ ଗଠିତ ଲୋକ ପ୍ରତିନିଧିମୂଳକ ସରକାର ସର୍ବସାଧାରଣଙ୍କର ହିତ ଦୃଷ୍ଟିରୁ ସମସ୍ତ ପ୍ରକାର କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥାନ୍ତି। "The voice of the people is voice of the God" ଗଣତନ୍ତ୍ରରେ ଜନସାଧାରଣଙ୍କ ମତକୁ ଈଶ୍ୱରଙ୍କ ମତ ବୋଲି ଧରି ନିଆଯାଇଅଛି । ଏହିପରି ମହାନ କାର୍ଯ୍ୟ ଜାନୁଆରୀ ୨୬ ତାରିଖରେ ଶୁଭାରମ୍ଭ ହୋଇଥିବାରୁ ଏହି ଦିବସଟିର ଗୁରୁତ୍ୱ ଓ ମହତ୍ତ୍ୱ ଅମୃତ ସମ ଅଟେ।

ଏହି ଦିବସଟିରେ କେବଳ ଭାରତ କାହିଁକି ସମଗ୍ର ବିଶ୍ୱବାସୀଙ୍କ ପାଇଁ ଏକ ଅମୃତ ଦିବସ ଅଟେ। କାରଣ ଏହି ଦିବସଟି ଜନ୍ମଲାଭ ହୋଇଅଛି ଅହିଂସା ରୂପକ ଅସ୍ତ୍ର ଓ ଆନ୍ଦୋଳନରେ। ଏହି ଦେଶର ସ୍ୱାଧୀନତା ତଥା ଗଣତନ୍ତ୍ରର ଇତିହାସ ସମଗ୍ର ବିଶ୍ୱବାସୀଙ୍କୁ ଏକ ନୂତନ ଦିଗ୍‌ଦର୍ଶନ ଦେଇପାରିଛି। ଭାରତ ସରକାରଙ୍କ ସମେତ ସମସ୍ତ ରାଜ୍ୟ ସରକାର ଏହି ଦିବସକୁ ଏକ ଛୁଟି ଦିବସ ରୂପେ ଘୋଷଣା କରିଛନ୍ତି। ପ୍ରତିବର୍ଷ ଜନରାଜ୍ୟ ଦିବସକୁ ଜାତୀୟ ଓ ରାଜ୍ୟସ୍ତରୀୟ ସମସ୍ତ ସରକାରୀ, ବେସରକାରୀ ଅନୁଷ୍ଠାନ, ଶିକ୍ଷାନୁଷ୍ଠାନ ଓ ବ୍ୟକ୍ତି ବିଶେଷ ମହାଆଡ଼ମ୍ବର ପୂର୍ଣ୍ଣ ଓ ଜାକଜମକରେ ପାଳନ କରି ଆସୁଛନ୍ତି। ଏହାକୁ ପାଳନ କରିବାର ମୁଖ୍ୟ ଉଦ୍ଦେଶ୍ୟ ଆମ ଦେଶ ଓ ଜାତିର ସ୍ୱାଭିମାନକୁ ଅକ୍ଷୁଣ୍ଣ ରଖିବା ଏବଂ ଐକ୍ୟ, ମୈତ୍ରୀ ଓ ଭ୍ରାତୃପ୍ରୀତିର ରଜ୍ଜୁରେ ବାନ୍ଧି ହୋଇ ରହିବା ପାଇଁ ଜାତୀୟ ପତାକା ତଳେ ଶପଥ ନେବା ।

ଏହି ଅମୃତ ତଥା ପବିତ୍ର ଦିବସର ମହାନତା ଅତୀବ ଗରିୟସୀ। ଗଙ୍ଗା ନଦୀ ଜଳର ପବିତ୍ରତା ପରି ଏହି ଦିବସଟି ଭାରତର ପ୍ରତ୍ୟେକ ନାଗରିକଙ୍କ ହୃଦୟ ମନ୍ଦିରରେ ସୃଷ୍ଟି କରିଥାଏ ଜାତୀୟତାବାଦୀ ଓ ଦେଶାତ୍ମବୋଧକ ଚୁମ୍ବକୀୟ ଶକ୍ତି। ତେଣୁ ଏହି ଦିବସର ଗୁରୁତ୍ୱ ଓ ମହତ୍ୱର ପଟାନ୍ତର ନାହିଁ। ଏହି ବିଶାଳ ଐତିହାସିକ ତଥା ଅର୍ଦ୍ଧଶତାବ୍ଦୀରୁ ଅଧିକ ବର୍ଷ ଧରି ଜାରି ରହିଥିବା ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଆତ୍ମବଳୀ ଦେଇଥିବା ଶତ ଶତ ଶହୀଦ ବହୁମୂଲ୍ୟ ସମୟ, ଶକ୍ତି, ସାମର୍ଥ୍ୟ ଉତ୍ସର୍ଗ କରିଥିବା ଦେଶପ୍ରେମୀ ଓ ସମ୍ବିଧାନ ପ୍ରଣେତା ସଦସ୍ୟମାନେ ବଳିଷ୍ଠ ଉଦ୍ୟମ, ତ୍ୟାଗ ଓ ସାଧନା ବଳରେ ଆମ୍ଭେମାନେ ଆମର କଷ୍ଟଲବ୍ଧ ନୂତନ ଗଣତାନ୍ତ୍ରିକ ରାଷ୍ଟ୍ରର ସ୍ୱାଦ ଉପଭୋଗ କରିପାରିଛୁ। ତେଣୁ ସେହି ମହାପୁରୁଷମାନେ ସର୍ବଦା ଆମ୍ଭମାନଙ୍କ ପାଖରେ ଚିରସ୍ମରଣୀୟ ଓ ନମସ୍ୟ। ସେମାନଙ୍କର ସେହି ଅଭୁଲା ସ୍ମୃତିକୁ ସାକାର କରିବା ପାଇଁ ଏହି ଦିବସଟି ଉଦ୍ଦିଷ୍ଟ। ଆଶା ଓ ବିଶ୍ୱାସ ଆଜିର ଯୁବପିଢ଼ି ତଥା ନାଗରିକ ଦେଶ ଓ ଜାତିର ଯଶ, ଟେକ, ସମ୍ମାନ, ଗର୍ବ ଓ ଗୌରବକୁ ଅକ୍ଷୁଣ୍ଣ ରଖି ଶାନ୍ତି, ମୈତ୍ରୀ ଓ ଐକ୍ୟଭାବ ପ୍ରଦର୍ଶନ କରିବା ସଂଗେ ସଂଗେ ସମଗ୍ର ମାନବ ସମାଜକୁ ଦିଗ୍‌ଦର୍ଶନ ଦେବେ।

ଦୁର୍ଗାମାଧବ ନଗର,
ଭରତପୁର, ଭୁବନେଶ୍ୱର





# ଦେଶ ଦିଶା

ରକ୍ଷକ ନାୟକ

ଆମର ସବୁ ଅଛି
ଉର୍ବର ମାଟି, ଲଙ୍ଗଳ, ବିହନ
ଛ' ଋତୁର ଆକାଶ, ପ୍ରାକୃତିକ ଆଶୀର୍ବାଦ
ଶୀର୍ଷକ ହେବାକୁ
ଆମ ପାଖରେ ଅଛି ଶକ୍ତି, ସାମର୍ଥ୍ୟ ଓ ସ୍ୱାଧୀନତା
ଶହେ କୋଡିଏ କୋଟି ଭିନ୍ନ ଭିନ୍ନ ବାଟକୁ
ଏକାଠି ଧରି ରଖିବାର ଉଦାରତା ।

ଦୁଃଖର ଅଭାବ ନାହିଁ ନିଜକୁ ଚିହ୍ନିବାକୁ
କ୍ଷତ ଅଛି ଔଷଧ ବି ଅଛି
କ୍ଷୁଧାକୁ ଗୁଛ କରି ଭକ୍ଷ ଫଳ
ଫଳେଇବାର ମନ୍ତ୍ର ଜଣା ଅଛି
କିଛି ବି ଅଭାବ ନାହିଁ
କୌଣସି ଭାବକୁ ।

ଇତିହାସ ଅଛି ଅତି ପ୍ରାଚୀନ ଭାଷାରେ
ଗୀତ ଅଛି ଜୀବନ୍ତ ରାଗ ରାଗିଣୀରେ

ଆମ ଡାକକୁ 'ଓ' କରିବାକୁ
ସ୍ୱର୍ଗରେ ଦେବତା ଅପେକ୍ଷା କରିଛନ୍ତି
ଶୀର୍ଷ ଆରୋହଣ ପାଇଁ
ସରଳ ସିଡ଼ି ବି ପଡ଼ିଛି ।

ଦି' ଦି'ଟା ଯୁଦ୍ଧକୁ ସହିବାକୁ ଛାତି ଅଛି
ତିନି ତିନିଟା ଫସଲ ହାନିକୁ ଅଂଟେଇବାକୁ
ବଣାରେ ଚାଉଳ ଅଛି
ଆମକୁ ଗୋଟେ ବଗିଚା ହେବାକୁ
ପ୍ରଜାପତିଙ୍କ ଅଭାବ ନାହିଁ ।
ଆମର ଯାତ୍ରା ସମୟର ଆରମ୍ଭରୁ
ସମୟର ଶେଷ ପର୍ଯ୍ୟନ୍ତ ଲମ୍ବିଛି ।

ପାଇକ ସାହି
ସୋରଭା, ନୟାହାଟ, ପୁରୀ



# ଭାରତରେ ସାଧାରଣତନ୍ତ୍ର ବ୍ୟବସ୍ଥା

**ରବୀନ୍ଦ୍ର କୁମାର ବେହୁରିଆ**

ସମ୍ବିଧାନ ଗୋଟିଏ ରାଷ୍ଟ୍ରର ଅମୂଲ୍ୟ ସଂପଦ। ରାଷ୍ଟ୍ରରେ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଚିତ୍ର ସମ୍ବିଧାନରେ ପ୍ରତିଫଳିତ ହୋଇଥାଏ। ସମ୍ବିଧାନ ରାଷ୍ଟ୍ରରେ ଦର୍ପଣ ସ୍ୱରୂପ। ସମଗ୍ର ବିଶ୍ୱରେ ସମ୍ବିଧାନର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଭାରତୀୟ ସମ୍ବିଧାନ ହେଉଛି ପୃଥିବୀର ସର୍ବାପେକ୍ଷା ବୃହତ୍ତମ ଲିଖିତ ସମ୍ବିଧାନ। ଆମର ସମ୍ବିଧାନ ପ୍ରଣେତାମାନେ ବିଶେଷକରି ଇଂଲଣ୍ଡର ସଂସଦୀୟ ଶାସନ ବ୍ୟବସ୍ଥା, ଆମେରିକାର ରାଷ୍ଟ୍ର ସଂଘୀୟ ବ୍ୟବସ୍ଥା, ମୌଳିକ ଅଧିକାର ଏବଂ ଆୟର୍ଲାଣ୍ଡର ରାଷ୍ଟ୍ରୀୟ ନିର୍ଦ୍ଦେଶକ ନୀତି ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇ ସେସବୁକୁ ସମ୍ବିଧାନରେ ସ୍ଥାନିତ କରିଛନ୍ତି। ଏହା ସହିତ ଦେଶର ଐତିହ୍ୟ ଓ ପରମ୍ପରାକୁ ଦୃଷ୍ଟିରେ ରଖି ସେମାନେ ଅନେକ ନୂତନ ନୀତି ମଧ୍ୟ ସମ୍ବିଧାନରେ ଅନ୍ତର୍ଭୁକ୍ତ କରିଛନ୍ତି। ଗାନ୍ଧିଜୀଙ୍କ ଚିନ୍ତାଧାରାକୁ ଗୁରୁତ୍ୱ ପ୍ରଦାନ କରି ସମ୍ବିଧାନ ପ୍ରଣେତାମାନେ ପଞ୍ଚାୟତିରାଜ ବ୍ୟବସ୍ଥା ଓ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆବଶ୍ୟକୀୟ ସାମ୍ବିଧାନିକ ନୀତି ପ୍ରଣୟନ କରିଯାଇଛନ୍ତି । ସମସ୍ତ ନାଗରିକଙ୍କ ପାଇଁ ସମାନ ଅଧିକାରର ସୂଚୀ ସ୍ଥାନିତ ହୋଇଛି । ଯାହା ବିଶ୍ୱରେ ବିରଳ। ଏହାକୁ ମୌଳିକ ଅଧିକାରର ମାନ୍ୟତା ମିଳୁଛି। ସମ୍ବିଧାନର ତୃତୀୟ ଭାଗ ସଂପର୍କରେ ଉଲ୍ଲେଖ କରାଯାଇଛି ଏବଂ ବିଭିନ୍ନ ସାମ୍ବିଧାନିକ ଅଧିକାରର ପ୍ରତିକାର ବ୍ୟବସ୍ଥା ୩୨ ଧାରାରେ ଦର୍ଶାଯାଇଛି। ଭାରତ ଗୋଟିଏ ବହୁଭାଷୀ ରାଷ୍ଟ୍ର ହୋଇଥିବାରୁ ସମ୍ବିଧାନରେ ଭାଷାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି। ସମ୍ବିଧାନର ଅଷ୍ଟମ ଅନୁଚ୍ଛେଦରେ ଅଠରଟି ଭାଷାକୁ ସ୍ୱୀକୃତି ଦିଆଯାଇଛି।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେବାପରେ କ୍ରମଶଃ ଔପନିବେଶବାଦର ବିଲୟ ଘଟିଲା। ମିଳିତ ଜାତିସଂଘ ଗଠିତ ହୋଇ ଏହି ସ୍ୱାଧୀନତା ହାସଲର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା। ଫଳତଃ ଆଫ୍ରିକା, ଏସିଆ ଓ ଦକ୍ଷିଣ ଆମେରିକାର ଅନେକ ରାଷ୍ଟ୍ର ବିଭିନ୍ନ ବୈଦେଶିକଙ୍କଠୁଁ ମୁକ୍ତିଲାଭ କରି ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇପାରିଲେ। ଏହି କ୍ରମରେ ପ୍ରାଥମିକ ପଦକ୍ଷେପ ସ୍ୱରୂପ ୧୯୪୬ ମସିହାରେ କ୍ୟାବିନେଟ୍ ମିଶନ ଗଠିତ ହେଲା। ଭାରତର ସମ୍ବିଧାନ ପ୍ରସ୍ତୁତି ନିମନ୍ତେ ୧୯୪୬ ମସିହା ଡିସେମ୍ବର ୯ ତାରିଖରେ ସମ୍ବିଧାନ ପ୍ରଣୟନ ସଭାର ପ୍ରଥମ ବୈଠକ ଅନୁଷ୍ଠିତ ହେଲା। ସମ୍ବିଧାନ ପ୍ରସ୍ତୁତି ନିମନ୍ତେ ବିଶିଷ୍ଟ ଆଇନଜୀବୀ ଡକ୍ଟର ବି.ଆର୍. ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଏକ ସାତଜଣିଆ କମିଟି ଗଠନ କରାଯାଇ ଥିଲା। ଅନ୍ୟମାନେ ହେଲେ– ସାର୍ ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାଙ୍ଗର, କେ. ଏସ୍. ମୁନ୍‌ସି, ଟି.ଟି. କୃଷ୍ଣମାଚାରୀ, ଏନ୍ ଗୋପାଳସ୍ୱାମୀ, ମହମ୍ମଦ ଅବ୍‌ଦୁଲ୍ଲା ଏବଂ ବି.ଏଲ୍. ମିତ୍ତଲ। ସାର୍ ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାଙ୍ଗର ସମ୍ବିଧାନର ମୌଳିକ ଅଧିକାର ତଥା ଉଚ୍ଚ ଓ ସର୍ବୋଚ୍ଚ ନ୍ୟାୟାଳୟ ସମ୍ବନ୍ଧୀୟ, ଟି.ଟି. କୃଷ୍ଣମାଚାରୀ ସଂଘୀୟ ସ୍ୱରୂପ, ଅର୍ଥ ଓ ଅନ୍ତରାଷ୍ଟ୍ରୀୟ ବାଣିଜ୍ୟ ସମ୍ବନ୍ଧୀୟ, ଏନ୍ ଗୋପାଳସ୍ୱାମୀ ଭାଷା ସମ୍ବନ୍ଧୀୟ ବିଷୟରେ ଅନୁଶୀଳନ କରିଥିଲେ। ଉପରୋକ୍ତ କମିଟି ବି. ଏନ୍. ରାଓଙ୍କ ସମ୍ବିଧାନର ପ୍ରଥମ ପ୍ରାରୂପକୁ ଅଧ୍ୟୟନ କରିବା ଅବସରରେ ଏଚ୍.ବି. କାମାଥ କିଛି ସଂଶୋଧନ କରିଥିଲେ। ନାଜିରୁଦ୍ଦିନ ଅହମ୍ମଦ, ବିରାମଗୁଡିକର ଶୁଦ୍ଧି କରିଥିଲେ। ପ୍ରଫେସର କେ.ଟି. ସାହୁ ରାଷ୍ଟ୍ରପତି ପ୍ରଣାଳୀ ପାଇଁ ପ୍ରସ୍ତାବ ରଖିଥିଲେ। ଏଚ୍.ଏନ୍. କୁଞ୍ଜୁର, ଫ୍ରାଙ୍କ ଆଣ୍ଟୋନୀ, ମହାବୀର ତ୍ୟାଗୀ, ଦୁର୍ଗା ବାହି ପ୍ରମୁଖ ଅନେକ ବିଦ୍ୱାନ ଅନେକାଂଶରେ ସାହାଯ୍ୟ ସହଯୋଗ କରିଥିଲେ। ଏହି କାର୍ଯ୍ୟ ଚାଲୁଥିଲାବେଳେ ଭାରତ ସ୍ୱାଧୀନତା ଲାଭ କଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ। ଏହା ଥିଲା ଏକ ଔପନିବେଶିକ ସ୍ୱାଧୀନତା, ଯାହା କେବଳ ବ୍ରିଟିଶ୍ କବଳରୁ ଭାରତକୁ ମୁକ୍ତି ଦେଇଥିଲା। ମାତ୍ର ନିଜସ୍ୱ ସମ୍ବିଧାନ ସେତେବେଳକୁ ଭାରତ ନିକଟରେ ନଥିଲା। ବିଭିନ୍ନ



ତର୍ଜମା ଓ ପରୀକ୍ଷା ନୀରୀକ୍ଷା ପରେ ସମ୍ବିଧାନ ପ୍ରଣୟନ ସଭା ୧୯୩୯ ନଭେମ୍ବର ୨୬ ତାରିଖ ଦିନ ଏହି ଚିଠା ସମ୍ବିଧାନକୁ ଅନୁମୋଦନ କଲେ । ପ୍ରକାଶଥାଉ କି, ୧୯୪୬ ମସିହା ଡିସେମ୍ବର ୯ ତାରିଖରେ ତତ୍କାଳୀନ ସମ୍ବିଧାନ ପ୍ରକୋଷ୍ଠରେ ଏବେ ଯାହାକୁ ସଂସଦ ଭବନରେ କେନ୍ଦ୍ରୀୟ ଭବନ ବା ସେଣ୍ଟ୍ରାଲ ହଲ୍ କୁହାଯାଉଛି ପ୍ରଥମଥର ପାଇଁ କେନ୍ଦ୍ର ସମ୍ବିଧାନ ସଭାର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ ଜବାହରଲାଲ୍ ନେହେରୁ, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ ଜେ.ବି. କ୍ରିପାଳାନୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଅବଦୁଲ କାଲାମ୍ ଆଜାଦ୍, ଗୋବିନ୍ଦ ବଲ୍ଲଭ ପନ୍ଥ, ବି.ଆର. ଆମ୍ବେଦକର, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ସରୋଜିନୀ ନାଇଡୁ, ହରେକୃଷ୍ଣ ମହତାବ୍ ଏବଂ ଦଶଜଣ ନାରୀ ପ୍ରତିନିଧିଙ୍କ ସମେତ ୨୫୭ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଅଖଣ୍ଡ ଭାରତବର୍ଷର ଶାସନଗତ ସୁବିଧା ଲାଗି ଏକ ସମ୍ବିଧାନର ଆବଶ୍ୟକତାକୁ ଭାରତୀୟ ନେତୃବୃନ୍ଦ ଚିନ୍ତା କରିଥିଲେ । ଏଥି ପାଇଁ ୧୯୪୬ ଡିସେମ୍ବର ୯ ତାରିଖରେ 'Constituent Assembly' ଗଠିତ ହେଲା । Assemblyର ସଭ୍ୟ ସଂଖ୍ୟା ଥିଲା ୩୮୫ । ପ୍ରାଦେଶିକ ବିଧାନସଭା ସଦସ୍ୟଙ୍କ ଦ୍ୱାରା ମନୋନୀତ ସଭ୍ୟଥିଲେ ୨୯୨ ଜଣ । ଅନ୍ୟ ୯୩ ଜଣ ଥିଲେ ରାଜୋଡ଼ା ଶାସିତ ଅଞ୍ଚଳର । ଦେଶ ବିଭାଜନ ପରେ ପାକିସ୍ଥାନ ସଭ୍ୟମାନେ 'Assembly'ରୁ ବାଦ୍ ପଡିଥିଲେ । ଏହାପରେ 'Constituent Assembly'ର ପୁନର୍ବିନ୍ୟାସ ହୋଇଥିଲା । ନବଗଠିତ 'Assembly' ରେ ୨୮୪ ଜଣ ସଭ୍ୟ ରହିଲେ । ସଚ୍ଚିଦାନନ୍ଦ ସିହ୍ନା ରହିଲେ ଏହାର ସଭାପତି । ତାଙ୍କର ଦେହାନ୍ତ ପରେ ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଏହାର ଅଧକ୍ଷତା କରିଥିଲେ । ୧୯୪୮ ଫେବୃଆରୀରେ ସମ୍ବିଧାନର ଏକ ଚିଠା ପ୍ରକାଶ ପାଇଲା । ୧୯୪୯ ନଭେମ୍ବର ୨୬ ତାରିଖରେ 'Assembly' ର ସମସ୍ତ ସଭ୍ୟ ସ୍ୱାକ୍ଷର କରି ଏହାକୁ ଚୂଡ଼ାନ୍ତ ରୂପ ଦେଇଥିଲେ । ୧୯୫୦ ଜାନୁୟାରୀ ୨୬ ତାରିଖ ଦିନ ଏହି ସମ୍ବିଧାନଟିକୁ ଭାରତରେ କାର୍ଯ୍ୟକାରୀ କରାଗଲା । ଭାରତର ସମ୍ବିଧାନର ରୂପରେଖର ମୌଳିକତା ହେଉଛି ଏହା ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ସମାଜତନ୍ତ୍ରକୁ ଅଂଗୀକାର କରିଅଛି । ସମାଜବାଦୀ, ଧର୍ମନିରପେକ୍ଷ ଏହି ଦୁଇଟି ବିଷୟକୁ ୧୯୭୬ ମସିହାରେ ୪୨ତମ ସଂଶୋଧନ ବଳରେ ଯୋଡ଼ା ଯାଇଛି ।

ସମ୍ପୂର୍ଣ୍ଣ ସମ୍ବିଧାନ ପ୍ରସ୍ତୁତ ହେବା ପାଇଁ ୨ ବର୍ଷ ୧୧ ମାସ ଓ ୨୮ ଦିନ ଲାଗିଥିଲା । ଏଥିପାଇଁ ପ୍ରାୟ ୩୪ ଲକ୍ଷ ଟଙ୍କା ବ୍ୟୟ ହୋଇଥିଲା । ସମ୍ବିଧାନର ପ୍ରାରୂପକୁ ନେଇ ୧୧୪ ଦିନ ଧରି ଆଲୋଚନା ହୋଇ ୩୯୫ ଅନୁଚ୍ଛେଦ ଓ ୮ଟି ଅନୁସୂଚୀ ରଖାଯାଇଥିଲା । ସମ୍ବିଧାନର କିଛି ଅନୁଚ୍ଛେଦକୁ ୧୯୪୯ ମସିହା ୨୬ ନଭେମ୍ବରରେ ଲାଗୁ କରାଯାଇ ଅବଶିଷ୍ଟକୁ ଐତିହାସିକ କାରଣ ଯୋଗୁଁ ଜାନୁୟାରୀ ୨୬, ୧୯୫୦ ମସିହାରେ ଲାଗୁ କରାଗଲା, ଯାହାକି ଆଜି ପର୍ଯ୍ୟନ୍ତ ବଳବତ୍ତର ରହିଛି ।

ପ୍ରଥମଥର ଲାଗି ଭାରତର ସାଧାରଣତନ୍ତ୍ର ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଏହାର ପୂର୍ବ ରାତ୍ରୀରେ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଜବାହରଲାଲ୍ ନେହେରୁ ଜାତି ଉଦ୍ଦେଶ୍ୟରେ ବେତାର ଭାଷଣରେ କହିଥିଲେ– "The founder of our republican freedom on the basic factors on which Gandhiji Laid stress through out his career-high character, integrity of mind and purpose, a spirit of tolerence co-operation and hard work- Pandit Neheru asked then to give up fear and hatred and think always of the millions of the people"

ଭାରତର ଲିଖିତ ସମ୍ବିଧାନ କୋଣାର୍କର ମୁଖଶାଳା ହେଉଛି ଏହାର ପ୍ରସ୍ତାବନା । ଏହା ଆମ ସମ୍ବିଧାନର ଲକ୍ଷ୍ୟ ଏବଂ ଆଦର୍ଶର ସୂଚନା ଦିଏ । ଭାରତୀୟ ସମ୍ବିଧାନର ଆତ୍ମା ଏହି ପ୍ରସ୍ତାବନାରେ କୁହାଯାଇଛି– ଆମେ ଭାରତର ଜନସାଧାରଣ ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ସାଧାରଣ ରାଷ୍ଟ୍ର ରୂପେ ଗଠନ କରିବା ପାଇଁ ଏବଂ ଏହାର ସମସ୍ତ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ନ୍ୟାୟ ଚିନ୍ତା, ମତପ୍ରକାଶ, ବିଶ୍ୱାସ ଓ ଉପାସନାର ସ୍ୱାଧୀନତା, ସ୍ଥିତି ଓ ସୁଯୋଗର ସମାନତାର ଅଧିକାର ପ୍ରଦାନ କରିବା ତଥା ସେମାନଙ୍କ ମଧ୍ୟରେ ବ୍ୟକ୍ତିର ମର୍ଯ୍ୟାଦା ଓ ଜାତୀୟ ଐକ୍ୟ ଏବଂ ସଂହତି ସୁନିଶ୍ଚିତ ଭାବରେ ରକ୍ଷା କରିବାର ଅନୁକୂଳ ଭ୍ରାତୃଭାବ ବୃଦ୍ଧି କରିବା ନିମିତ୍ତ ସତ୍ୟ ଓ ନିଷ୍ଠା ସହିତ ସଂକଳ୍ପ କରି ଆମ୍ଭମାନଙ୍କର ଏହି ଶାସନ ବିଧାୟକ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକାର, ପ୍ରଣୟନ ଓ ସମର୍ପଣ କଲୁ । ଏହି ପ୍ରସ୍ତାବନାକୁ ବିଶ୍ଳେଷଣ କଲେ ଭାରତ ଏକ ସାର୍ବଭୌମ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ର ରାଷ୍ଟ୍ରର ସୂଚନା ମିଳିଥାଏ । ଭାରତ ଏକ ସାର୍ବଭୌମ ରାଷ୍ଟ୍ର ହୋଇଥିବାରୁ ଏହାର ଆଭ୍ୟନ୍ତରୀଣ ନୀତି ନିର୍ଦ୍ଧାରଣ, ବୈଦେଶିକ ନୀତି ନିର୍ଦ୍ଧାରଣ ସହିତ ଶାସନ କ୍ଷେତ୍ରରେ ଭାରତ ସରକାର ହେଉଛନ୍ତି ସର୍ବମୟ କର୍ତ୍ତା । ଭାରତର ରାଷ୍ଟ୍ରପତି ହେଉଛନ୍ତି ଶାସନ ମୁଖ୍ୟ, ସମ୍ବିଧାନର ରକ୍ଷକ ଏବଂ ସମସ୍ତ କ୍ଷମତାର ଆଧାର । ତାଙ୍କ ନାମରେ ଶାସନ




ପରିଚାଳିତ ହେଲେ ହେଁ ସେ ନିର୍ଣ୍ଣାୟକ ଭୂମିକା ନେଇ ନଥାନ୍ତି। ବାସ୍ତବ ନିୟାମକ କ୍ଷମତା ସଂସଦୀୟ ଗଣତନ୍ତ୍ର ଉପରେ ନ୍ୟସ୍ତ ହୋଇଥାଏ। ତେଣୁ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ବାସ୍ତବରେ ସଂସଦ, ସଂସଦୀୟ ସଂଖ୍ୟାଗରିଷ୍ଠ ଦଳର ପ୍ରଧାନମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ହିଁ ପ୍ରକୃତ କ୍ଷମତାର କେନ୍ଦ୍ର ପାଲଟି ଥାନ୍ତି। ପରୋକ୍ଷରେ କହିବାକୁ ଗଲେ ଏହା ହିଁ ହେଉଛି ଲୋକପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥା ଓ ତାହାର ରୂପାୟନ। ରାଷ୍ଟ୍ରପତିଙ୍କ କ୍ଷମତା ପରିସର ସୁସଂହତ ଓ ସମ୍ବିଧାନ ଦ୍ୱାରା ନିରୂପିତ।

ସମାଜବାଦୀ ଓ ଧର୍ମନିରପେକ୍ଷ– ଏହି ଦୁଇଟି ବିଷୟକୁ ୧୯୭୬ ମସିହାରେ ୪୨ ତମ ସମ୍ବିଧାନ ସଂଶୋଧନ ବଳରେ ଯୋଗ କରାହେଲା। ସମାଜବାଦୀ ଚିନ୍ତାଧାରାକୁ ଅଙ୍ଗୀକାର କରି ଆମେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମାନତା ହାସଲ ଲକ୍ଷ୍ୟ ରଖିଛୁଁ। ଏହାଦ୍ୱାରା ରାଷ୍ଟ୍ର ଉତ୍ପାଦନ ଓ ସମ୍ବଳର ସୁଷମ ବଣ୍ଟନ, ଦାରିଦ୍ର୍ୟ ଦୂରୀକରଣ, ଶିକ୍ଷା, ସ୍ୱାସ୍ଥ୍ୟ, କର୍ମନିୟୋଜନ, ଖାଦ୍ୟ ଯୋଗାଣ ପ୍ରଭୃତି ବିଷୟରେ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯାଇ ପାରୁଛି। ଧର୍ମନିରପେକ୍ଷତା ଭାରତବାସୀଙ୍କୁ ଇଚ୍ଛାନୁସାରେ କୌଣସି ଧର୍ମକୁ ଗ୍ରହଣ କରିବା ବା ପରିତ୍ୟାଗ କରିବାର ଅଧିକାର ଦେଇଛି। ଭାରତର ସମ୍ବିଧାନ ଆମ ପାଇଁ ଲୋକ ପ୍ରତିନିଧିମୂଳକ ଗଣତନ୍ତ୍ର ନିର୍ଦ୍ଧାରଣ କରିଛି। ଭାରତର ପ୍ରତ୍ୟେକ ସାବାଳକ ଭୋଟର ଏହି ନିର୍ବାଚନ ପ୍ରକ୍ରିୟାରେ ଭାଗ ନେଇ ସରକାର ଗଠନରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରିଥାନ୍ତି।

ଆମ ସମ୍ବିଧାନର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ, ଏହାକୁ ଆବଶ୍ୟକତା ଅନୁଯାୟୀ ନମନୀୟ ଓ ଅନମନୀୟ କରାଯାଇଛି। ଏଥିରୁ ଆମର ସମ୍ବିଧାନ ପ୍ରଣେତାମାନଙ୍କର ଦୂରଦୃଷ୍ଟି ଓ ଗତିଶୀଳତାର ପ୍ରମାଣ ମିଳିଥାଏ। ୧୯୫୦ ଜାନୁୟାରୀ ୨୬ରେ ସମ୍ବିଧାନ କାର୍ଯ୍ୟକାରୀ ହେବା ପରଠାରୁ ଆଜି ପର୍ଯ୍ୟନ୍ତ ଏହା ବହୁବାର ସଂଶୋଧିତ ହୋଇଛି ଏବଂ ଏଥିପାଇଁ ଅନେକ ବିତର୍କର ମଧ୍ୟ ସୂତ୍ରପାତ ହୋଇଛି। ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଗତ ୬ ବର୍ଷ ମଧ୍ୟରେ ଆମେରିକାର ସମ୍ବିଧାନ ମାତ୍ର ୨୬ ଥର ସଂଶୋଧିତ ହୋଇଥିଲା ବେଳେ ବିଗତ ୫୦ ବର୍ଷ ମଧ୍ୟରେ ଭାରତୀୟ ସମ୍ବିଧାନ ୯୦ରୁ ଅଧିକଥର ସଂଶୋଧିତ ହୋଇଛି।

ଆମ ଦେଶରେ ସାବାଳକତ୍ୱ ର ବୟସସୀମା ୨୧ ବର୍ଷ ଥିଲା। ୧୯୮୯ର ୬୨ତମ ସମ୍ବିଧାନ ସଂଶୋଧନ ପରେ ବୟସସୀମା ୧୮ ବର୍ଷ କିମ୍ବା ତଦୂର୍ଦ୍ଧ୍ୱ ଭାରତୀୟ ନାଗରିକ ଭୋଟ୍ ଅଧିକାର ପାଇଛନ୍ତି। ୭୩ତମ ସମ୍ବିଧାନ ସଂଶୋଧନରେ ଭାରତରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାମ୍ବିଧାନିକ ମାନ୍ୟତା ଦିଆଯାଇଛି। ୧୯୬୧ ମସିହା ଜାନୁୟାରୀ ୨୬ ସାଧାରଣତନ୍ତ୍ର ଦିବସରୁ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ପ୍ରବର୍ତ୍ତନ କରାଯାଇଛି। ତେଣୁ ଆମ ସମ୍ବିଧାନର ପଞ୍ଚାୟତିରାଜ ବ୍ୟବସ୍ଥା ଦ୍ୱାରା ତୃଣମୂଳ ସ୍ତରରୁ ଗଣତନ୍ତ୍ରକୁ ପହଞ୍ଚାଇଲେ ମଧ୍ୟ ଏ ଦିଗରେ କିଛି କରିବାର ଆବଶ୍ୟକତା ରହିଛି।

ଭାରତକୁ ଏକ ଗଣତାନ୍ତ୍ରିକ, ସାଧାରଣତନ୍ତ୍ରରେ ପରିଣତ କରିଥିବା ଆମ ସମ୍ବିଧାନର ମୂଳମନ୍ତ୍ର ହେଉଛି– ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ମିତ୍ରତା (Justice, Liberty, Equality and Fraternity)। ଏହି ଆଦର୍ଶ ଭାବଧାରାଗୁଡ଼ିକ ମୂଳରୁ ଆମ ସମ୍ବିଧାନର ମୁଖବନ୍ଧରେ ହିଁ ସ୍ପଷ୍ଟ ଭାବରେ ସୂଚେଇ ଦିଆଯାଇଛି। ସାମାଜିକ ନ୍ୟାୟ, ଅର୍ଥନୈତିକ ନ୍ୟାୟ ଏବଂ ରାଜନୈତିକ ନ୍ୟାୟ ଜୀବନ ଓ ସମାଜର ପ୍ରତ୍ୟେକ ସ୍ତରରେ 'ନ୍ୟାୟ'ର ଗୁରୁତ୍ୱ ହିଁ ଅଗ୍ରାଧିକାର ଦିଆଯାଇଛି। ଏକ ଭେଦାଭେଦହୀନ ସମାଜ ଗଠନ ଏହି 'ନ୍ୟାୟ'ର ଉଦ୍ଦେଶ୍ୟ। ଏହି 'ନ୍ୟାୟ' ହେଉଛି ସମାଜ କଲ୍ୟାଣ ସହିତ ବ୍ୟକ୍ତିଗତ ଆଚରଣର ସମନ୍ୱୟ। ସର୍ବସାଧାରଣଙ୍କ ହିତସାଧନ ହେଲା ଏହାର ମୂଳମନ୍ତ୍ର ।

ସଭାପତି, ଗୋପବନ୍ଧୁ ସାହିତ୍ୟ ସଂସଦ,
ଚାନ୍ଦବାଲି, ଭଦ୍ରକ





# ଫକୀର ମୋହନଙ୍କ କବିତା 'ପୂଜାଫୁଲ'ର ସୌରଭ ଓ ସୌନ୍ଦର୍ଯ୍ୟ

ଡକ୍ଟର ନାରାୟଣ ପଣ୍ଡା

A Poetry of revolt against moral idea is a poetry of revolt against life: ***mathew Arnold***

ଆଧୁନିକ ଓଡ଼ିଆ ସାହିତ୍ୟର ଆଦି ପର୍ବରେ ବ୍ୟାସକବି ଫକୀର ମୋହନ ସାରସ୍ୱତ ସାର୍ଥକ ସାହିତ୍ୟ ସାଧକ । ସଂଗ୍ରାମ ଓ ସଂଘର୍ଷ ଭିତରେ ତାଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭା ବିକଶିତ । କେତେବେଳେ ବ୍ୟାଧିର ଶିକାର ହୋଇଛନ୍ତି ତ ଆଉ କେତେବେଳେ ପାରିବାରିକ ଜୀବନ ଯନ୍ତ୍ରଣାର ସମ୍ମୁଖୀନ ହୋଇଛନ୍ତି । ତାଙ୍କ ଲକ୍ଷ୍ୟ ଥିଲା ସତ୍ୟନିଷ୍ଠ ଓ ମହତ । ଆଦର୍ଶ, ଧର୍ମପରାୟଣ ଜୀବନଯାପନ ଭିତରେ ଓଡ଼ିଆ ଭାଷାର ସୁରକ୍ଷା ଓ ଉନ୍ମେଷ ଥିଲା ତାଙ୍କର ମହତ ଉଦ୍ଦେଶ୍ୟ । କର୍ତ୍ତବ୍ୟ ପଥରେ ସେ ଥିଲେ ହିମାଳୟ ପରି ଅଟଳ ଓ ଅଚଳ । ଜୀବନ ସଂଗ୍ରାମରେ ପଶ୍ଚାତ୍‌ପଦ ନହୋଇ ସୃଷ୍ଟି କରିଛନ୍ତି କଳାର କୋଣାର୍କ ।



ଗଳ୍ପ, ଉପନ୍ୟାସ ରଚନାରେ ସେ ଯେପରି ଧୂରୀଣ କାବ୍ୟ କବିତା ରଚନାରେ ସେପରି ସିଦ୍ଧହସ୍ତ । ଜୀବନର କରୁଣ କାହାଣୀ କେତେବେଳେ କବିତାରେ ପ୍ରତିଫଳିତ ତ ଆଉ କେତେବେଳେ ଦେଶପ୍ରେମ, ଜାତିପ୍ରେମ, ବିଭୁ ପ୍ରେମ କବିତାରେ ସରସ ସୁନ୍ଦର ଭାବରେ ରୂପାୟିତ । ମୂଳ ସଂସ୍କୃତ ରାମାୟଣ, ମହାଭାରତ ଓ ଭଗବଦ୍ ଗୀତାର ଶୁଦ୍ଧ ଅନୁବାଦର ଅଭାବ ଅନୁଭବ କରି ଫକୀର ମୋହନ ଗ୍ରନ୍ଥଗୁଡ଼ିକୁ ଓଡ଼ିଆରେ ଅନୁବାଦ କରିଥିଲେ । ତାଙ୍କ ଲେଖନୀସୃତ ଅନୁବାଦ ସାହିତ୍ୟ ମାତୃଭାଷାକୁ ଋଦ୍ଧିମନ୍ତ କରିଛି କହିଲେ ବାର୍ତ୍ତାର ଅପଳାପ ହେବନାହିଁ ।

ସଂଘର୍ଷମୟ ଜୀବନାୟନ ଅତିକ୍ରମ କରି ଯେଉଁ ପ୍ରତିଭା କୃତକାର୍ଯ୍ୟର ସୁରଭିତ ସୁମନମାଳା ବିଭୂଷିତ ହୋଇଥାନ୍ତି, ସେହି ମହାପୁରୁଷ ହିଁ ଭାବି ନାଗରିକମାନଙ୍କର ଆଦର୍ଶ ହୋଇପାରନ୍ତି । ଫକୀର ମୋହନ ସେହି ବିରଳ ବ୍ୟକ୍ତିତ୍ୱର ଅଧିକାରୀ । ସେ ଯେଉଁ ସନ୍ଧିକ୍ଷଣରେ ଓଡ଼ିଶାର ଭାଗ୍ୟାକାଶରେ ଉଦୟ ହୋଇ ସମଗ୍ର ଜୀବନ କାଳରେ ଗଭୀର ଅଧ୍ୟୟନ ଓ ପ୍ରବଳ ସଂଘର୍ଷ କରି ଗୋଟିଏ ଜାତିର ଭାଗ୍ୟ ନିରୂପଣ କରିଗଲେ, ତାହା ପ୍ରଣିଧାନର ବିଷୟ ।

ଓଡ଼ିଆ ପଦ୍ୟ ସାହିତ୍ୟକୁ ଫକୀର ମୋହନଙ୍କ ସର୍ବଶ୍ରେଷ୍ଠ ଅବଦାନ ଗୀତି କବିତା କବି ବ୍ୟକ୍ତିତ୍ୱର ଦୃଢ଼ ନୈତିକତା, ଜାତୀୟ ସ୍ୱାଭିମାନ, ଧର୍ମ ଓ ଧର୍ମ ନିରପେକ୍ଷତା, ଦିବ୍ୟପ୍ରେମ ଓ ମାନବ ବନ୍ଦନା ପ୍ରତ୍ୟେକ କବିତା ସଂକଳନରେ ସ୍ଥାନିତ କବିତାରେ ଉତ୍‌କୀର୍ଣ୍ଣ ।

ସମାଜ ସଂସ୍କାରଧର୍ମୀ ଆଭିମୁଖ୍ୟ, ହାସ୍ୟ-ବ୍ୟଙ୍ଗ-ବକ୍ରୋକ୍ତିର ଅଫୁରନ୍ତ ପ୍ରୟୋଗ ତାଙ୍କର ସାମାଜିକ ଦାୟିତ୍ୱବୋଧର ପରିଚୟ ଦେବା ସଙ୍ଗେ ସଙ୍ଗେ ତାଙ୍କ ସାରସ୍ୱତ ସୃଷ୍ଟିକୁ କରିଛି ଉପଭୋଗ୍ୟ ଓ ସମୃଦ୍ଧ । ଦୀର୍ଘ ପ୍ରଶାସନିକ ଜୀବନର ବିବିଧ ଅନୁଭୂତି ଏବଂ ମଣିଷ ଚରିତ୍ର ଅନୁଧ୍ୟାନ କରିବାର ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ତାଙ୍କ ଗଳ୍ପ, ଉପନ୍ୟାସକୁ କରିଛି ପ୍ରାଣବନ୍ତ । ଊନବିଂଶ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତୀୟ ସାହିତ୍ୟରେ ଯେଉଁ ନବ ଜାଗରଣ



(Renaissance)ର ସୂତ୍ରପାତ ହୋଇଥିଲା ଫକୀର ମୋହନ ସେହି ସାହିତ୍ୟାକାଶର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ବାଲେଶ୍ୱରରେ ଶିକ୍ଷକତା କରୁଥିବା ସମୟରେ ଫକୀର ମୋହନ କବିତା ଲେଖୁଥିବା ବିଷୟ ତାଙ୍କ ଆତ୍ମ ଜୀବନ ଚରିତରେ ଉଲ୍ଲେଖ କରିଛନ୍ତି । 'ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ଥିଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁ ଥିଲା । ମୁଁ ସେଥିରେ ଆମୋଦଦାୟକ କବିତା ଲେଖୁଥିଲି' । (ପରିଚ୍ଛେଦ–୨୧)

ଉତ୍କଳଭ୍ରମଣ (୧୮୯୧), ପୁଷ୍ପମାଳା (୧୮୯୪), ଉପହାର (୧୮୯୫), ଅବସର ବାସରେ (୧୯୦୮), ପୂଜାଫୁଲ (୧୯୧୨), ଧୂଳି (୧୯୧୨), ବୌଦ୍ଧାବତାର କାବ୍ୟ (୧୯୧୨) ପ୍ରଭୃତି କବିତା ସଂକଳନଗୁଡ଼ିକ କବିଙ୍କ ପରିପକ୍ୱ ପ୍ରଜ୍ଞାର ପରିଚୟ । ଗୀତିକବିତା, ଗାଥାକବିତା, ଶୋକକବିତା, ସମ୍ବୋଧଗୀତି, ବ୍ୟଙ୍ଗକବିତା, କୌତୁକ କବିତା, ଶିଶୁକବିତା, ଫକୀର ମୋହନଙ୍କ କବି ପ୍ରାଣର ମହନୀୟ ପରିପ୍ରକାଶ । ପରିମାଣାତ୍ମକ ଦୃଷ୍ଟିରୁ ସେ ବହୁ କବିତା ରଚନା କରିଛନ୍ତି କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ତାଙ୍କର ଅଳ୍ପ କେତୋଟି କବିତାରେ ସିଦ୍ଧି ପରିଲକ୍ଷିତ । ଖଣ୍ଡିତ ଜୀବନର ମର୍ମଳ ମାନଚିତ୍ର ଓ ସ୍ୱଚ୍ଛନ୍ଦ ସାବଲୀଳ ଶବ୍ଦର ତାରକସି କାମ ଫକୀର ମୋହନଙ୍କ କବିତା । ଜୀବନର ବିବିଧ ବୈଚିତ୍ର୍ୟ ଓ ବୈସାଦୃଶ୍ୟର ମନୋଜ୍ଞ କଳାତ୍ମକ ରୂପ କବିତାରେ ପରିଦୃଷ୍ଟ । କବିତାଗୁଡ଼ିକର ଭାଷା ସରଳ ଓ ଭାବଗଭୀର । ପ୍ରକାଶଭଙ୍ଗୀ ସ୍ୱତନ୍ତ୍ର ଓ ସ୍ୱଭାବିକ । ପାରମ୍ପରିକ ଉପମା ପରିବର୍ତ୍ତେ ନୂତନ ଧରଣର ଉପମା ବ୍ୟବହୃତ, ଯାହା ଆଧୁନିକ ଚିତ୍ରକଳ୍ପର ନିକଟବର୍ତ୍ତୀ । ରୂପକ ଓ ପ୍ରତୀକର ସଫଳ ପ୍ରୟୋଗ ଫକୀର ମୋହନଙ୍କ କବିତାଗୁଡ଼ିକୁ କରିଛି ରସୋତ୍ତୀର୍ଣ୍ଣ ।

କେତେକ କବିତାରେ ବ୍ୟକ୍ତି-ପୂଜା ଅଛି, ଅଛି ମଧ୍ୟ ବ୍ୟକ୍ତି ପ୍ରତି ସମାଲୋଚନା । ନିମ୍ନଜାତି, ପତିତ ବା ପତିତା, ନିମ୍ନବର୍ଗ ମଣିଷ ପ୍ରତି ଅଛି ସମବେଦନା । ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା ଓ ସଂସ୍କୃତି ପ୍ରତି ଆସକ୍ତ ତଥାକଥିତ ଶିକ୍ଷିତବର୍ଗଙ୍କ ପ୍ରତି ଅଛି ବିଦ୍ରୂପ । ଓଡ଼ିଆ ସାହିତ୍ୟରେ ନବଯୁଗର ବାର୍ତ୍ତା ରାଧାନାଥ ଓ ମଧୁସୂଦନଙ୍କ କବିତାରୁ ଯେତେ ପରିମାଣରେ ମିଳେ, ତାହା ଅପେକ୍ଷା ଫକୀର ମୋହନଙ୍କ କବିତାରୁ ବେଶୀ ମିଳିଥାଏ । ତାଙ୍କ କବିତାରେ ଜାତୀୟ ଦୃଷ୍ଟି ସହିତ ଅଛି ବିଶ୍ୱଦୃଷ୍ଟି ।

ଫକୀର ମୋହନଙ୍କ କବିପ୍ରାଣ ବାଲ୍ୟବିଧବା, ଉତ୍କଳୀୟ କୃଷକର ଦୁଃଖରେ ଯେତିକି ବ୍ୟଥିତ, ସେତିକି ଦୁଃଖିତ ସ୍ୱାମୀ-ପରିତ୍ୟକ୍ତା ଜୋସେଫିନ ପାଇଁ ଏବଂ ୧୯୦୫ର ରୁଷ୍-ଜାପାନ-ରକ୍ତାକ୍ତ- ସଂଗ୍ରାମର ମାନବିକ ବୀଭତ୍ସତାରେ । କ୍ଷୁଦ୍ର ଜାପାନ ନିଜର ସାମରିକ ଗୌରବରେ ସମଗ୍ର ଏସିଆ ମହାଦେଶର ମୁଖୋଜ୍ଜ୍ୱଳ କରିଥିବାରୁ ଫକୀର ମୋହନ ତାଙ୍କୁ ସେଥିପାଇଁ ସଲାମ ଦେବା ସଙ୍ଗେ ସଙ୍ଗେ କରୁଣାମୟ ବୁଦ୍ଧଙ୍କ ନାମୋଚ୍ଚାରଣ କରି ସେହି ବୌଦ୍ଧ ରାଷ୍ଟ୍ରକୁ ଅନୁରୋଧ କରିଛନ୍ତି ନର ଯାତନାରୁ ବିରତ ହେବା ପାଇଁ । ଏହି ସମୟରେ ବିରାଟ ୟୁରୋପୀୟ ଶକ୍ତି ରୁଷିଆ ଉପରେ ଘୋର ପରାଜୟ ଲଦି ଦେବା ପରିତାପର ବିଷୟ ।

ଫକୀର ମୋହନଙ୍କ 'ପୂଜାଫୁଲ' ଏକ ଅନନ୍ୟ ସୃଷ୍ଟି । କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ ସମାଜଜୀବନ ଚିତ୍ରରେ ଉତ୍କୀର୍ଣ୍ଣ । ଛବିଶଗୋଟି କବିତାର ସମାବେଶ 'ପୂଜାଫୁଲ' ନୂତନ ଛନ୍ଦ ରାଗିଣୀରେ ଅନୁରଣିତ । କବିତା ସମୟର ସ୍ପନ୍ଦନରେ ସ୍ପନ୍ଦିତ କବିସତ୍ତାର ଏକ କଳାତ୍ମକ ଅଭିଲିପି । ମାଟିର ଆବେଗ ଏବଂ ଆକାଶର ସ୍ୱପ୍ନ- ଉଭୟର ଏକ ସମାହିତ ଚେତନା ମଧ୍ୟରେ ତା'ର ପ୍ରାଣପ୍ରତିଷ୍ଠା । ତା'ର ଲଳିତ ଅଙ୍ଗରାଗ ଲାଗି ଶବ୍ଦ ହୋଇଯାଏ ଆବଶ୍ୟକୀୟ ବେଶଭୂଷା ।

ମାଳାକାର ବିଭିନ୍ନ ଫୁଲରେ ମାଳ କଲା ପରି କବି ଫକୀର ମୋହନ ବିଭିନ୍ନ ଭାବୋଚ୍ଛ୍ୱାସକୁ ଏକତ୍ର କରି 'ପୂଜାଫୁଲ' କବିତା ସଂକଳନ ରଚନା କରିଛନ୍ତି । କବିଙ୍କ ମାନସପଟ୍ଟରେ ଯେଉଁ ଭାବ ଯେତେବେଳେ ଉଦ୍ରେକ ହୋଇଛି, କବି ତା'ର ସଫଳ ରୂପାୟନ କବିତାରେ କରିଛନ୍ତି । କବିତା ସଂପର୍କରେ ମତ ପ୍ରଦାନ କରିବାକୁ ଯାଇ T.S. Eliot ଯଥାର୍ଥରେ ପ୍ରକାଶ କରିଛନ୍ତି– 'Poetry is not the expression of personality, but on escape from personality. The poet has not a personality to express, but a particular medium, which is only a medium and not a personality to which impressions and experiences confine in a peculiar and unexpected way.'

ବର୍ହିଜଗତ ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦ କିମ୍ବା ନିଜ ମନର ଭାବନା ବେଦନା କଳ୍ପନାକୁ ଯେ ଅନୁଭୂତି ରଞ୍ଜିତ ଛନ୍ଦୋବଦ୍ଧ ତନୁଶ୍ରୀ ଦାନ କରିପାରେ ସେହି କବି ।

କବିର କୃତି କେବଳ କବି ଏବଂ ତା'ର ଯୁଗ ଉପରେ ନିର୍ଭର କରେ ନାହିଁ, ଜାତୀୟ ମାନସ ଏବଂ ତତ୍ସୃଷ୍ଟ ଆଧ୍ୟାତ୍ମିକ ଏବଂ ବୌଦ୍ଧିକ ପରମ୍ପରା ପରିବେଶ ଉପରେ ଏହା ନିର୍ଭରଶୀଳ ।



କବିତା କବି ପ୍ରାଣବୀଣାର ଝଙ୍କାର । ଏଥିରେ ରୂପ ପାଇଥାଏ କବି ମନର ଶ୍ୟାମଳିମା, ଚର୍ଚ୍ଚିତ ଚେତନାର ଇନ୍ଦ୍ରଧନୁ । ବୌଦ୍ଧିକତା କବିତାକୁ ଜ୍ୟୋତିର୍ମୟ କରେ, କିନ୍ତୁ ହୃଦୟ-ଯମୁନାର କଳକଲ୍ଲୋଳ ହିଁ ଏହାର ଅନନ୍ୟ ଆକର୍ଷଣ । ଆରିଷ୍ଟଟଲଙ୍କ ମତରେ ସକଳ ପ୍ରକାର ସୃଷ୍ଟି ମଧ୍ୟରେ କବିତା ହିଁ ସବୁଠାରୁ ଅଧିକ ଦାର୍ଶନିକ ଭାବ ସମ୍ବଳିତ । ଟି.ଏସ୍.ଇଲିୟଟ୍ ଆରିଷ୍ଟଟଲଙ୍କ ମତକୁ ଦୃଢ ଭାବରେ ସମର୍ଥନ କରିଛନ୍ତି, କବି ଜୀବନର ଅନୁଭବ ହିଁ କବିତାର ପ୍ରଧାନ ଉପଜୀବ୍ୟ । କବିତାର ବଳୟ ଭିତରେ ଧର୍ମ, ଦର୍ଶନ, ବିଜ୍ଞାନ ପ୍ରଭୃତି ମଣିଷର ଚିନ୍ତା ଓ ଚେତନାର ସକଳ ଦିଗ୍‌ବଳୟ ପ୍ରତିବିମ୍ବିତ କରେ । ସତ୍ୟ ହିଁ ସାର୍ଥକ କବିତାର ଭିତ୍ତିଭୂମି । ଚିରନ୍ତନ ସତ୍ୟ କବିର ଦିବ୍ୟ ଅନୁଭବରେ ପ୍ରକଟିତ ହୋଇଥାଏ । କଳ୍ପନା କବିତାବଲ୍ଲରୀର ଶ୍ୟାମଳିମା । କବିଙ୍କର ସୌନ୍ଦର୍ଯ୍ୟବୋଧ କବିତା ଲତାର ସୁରଭିଭରା ପୁଷ୍ପ । ଫକୀର ମୋହନ ସେନାପତିଙ୍କ ଭାଷାରେ ଜଗତର ମଣିଷମାତ୍ରେ ହିଁ ସମସ୍ତେ କବି– କାହାଠାରେ କବିତ୍ୱ ଅଳ୍ପ, କାହାଠାରେ ବିଶେଷ ଭାବରେ ପରିଦୃଷ୍ଟ । ଗୀତ ଗାଇବାର ଅଭ୍ୟାସ ଯା'ର ରହିଛି, ଲୋକେ ଉପହାସ କଲେ ବି ସେ ଗୀତଗାଇବ । ମାତୃଭାଷାର ସେବା ହିଁ ଥିଲା ସେନାପତିଙ୍କର ଅଭୀପ୍‌ସା । ଅନନ୍ତ ଅଭୀପ୍‌ସା ହିଁ କବିତା ଲେଖିବା ପାଇଁ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

ଫକୀର ମୋହନଙ୍କ କବିତାର ବହୁ ଦିଗ ଭିତରେ ଦେଶକୁ ସୁନ୍ଦରତର କରିବାର ସ୍ୱପ୍ନ, ସମାଜକୁ ମାର୍ଜିତ କରିବାର ଅଭୀପ୍‌ସା, ମାତୃଭୂମି ଓ ମାତୃଭାଷା ପ୍ରତି ଜନଗଣ ଚିତ୍ତରେ ଅନୁରାଗର ପ୍ରଦୀପ ଜାଳିବାର ଉତ୍କଣ୍ଠା ଉଲ୍ଲେଖଯୋଗ୍ୟ । ସମାଜ ସଚେତନତା ତାଙ୍କ କବିତାର ଏକ ବିଶିଷ୍ଟ ଦିଗ । ଫକୀର ମୋହନଙ୍କ ସାହିତ୍ୟର ବିଶିଷ୍ଟ ସମାଲୋଚକ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ 'ଫକୀର ମୋହନଙ୍କ ଦୃଷ୍ଟିରେ ସମାଜ ଜୀବନର ପ୍ରତିଫଳନ ପାଇଁ ସାହିତ୍ୟ କେବଳ ଏକ ଦର୍ପଣ ସ୍ୱରୂପ ନଥିଲା, ସମାଜ ଜୀବନକୁ ମାର୍ଜିତ, ସୁନ୍ଦର ଓ ଶୋଷଣ ରହିତ କରିବା ପାଇଁ ଫକୀର ମୋହନଙ୍କ ଦୃଷ୍ଟିରେ ସାହିତ୍ୟ ମଧ୍ୟ ଥିଲା ଏକ ଶାଣିତ ଅସ୍ତ୍ର । ସେଥିପାଇଁ ସମାଜ ତଥା ବ୍ୟକ୍ତି ଜୀବନର ଅର୍ଥନୈତିକ ସାଂସ୍କୃତିକ ଆଧ୍ୟାତ୍ମିକ ସମସ୍ୟା ପ୍ରଭୃତି ବହୁ ନୂତନ ବିଷୟବସ୍ତୁ ଫକୀର ମୋହନଙ୍କ କବିତାରେ ସ୍ଥାନ ଲାଭ କରିଥିଲା । ଦଳିତ ନିର୍ଯ୍ୟାତିତ ପ୍ରତି ଯେଉଁ ଗଭୀର ସମବେଦନା ଫକୀର ମୋହନଙ୍କ ଗଳ୍ପ ଓ ଉପନ୍ୟାସମାନଙ୍କରେ ପ୍ରକାଶ ପାଇଅଛି, କବିତାରେ ମଧ୍ୟ ତାହା ଏକ ନୂତନ ତୀକ୍ଷ୍ଣତା ଆନ୍ତରିକତା ଓ ଗଭୀରତା ଆହରଣ କରିଅଛି' ।

ଫକୀର ମୋହନଙ୍କ ବିସ୍ତୃତ ପଚ୍ଛଭୂମି ଉପରେ ଆଲୋକପାତ କରିବାକୁ ଯାଇ ବିଶିଷ୍ଟ ସମାଲୋଚକ ଚିନ୍ତାନାୟକ ଡକ୍ଟର ମାୟାଧର ମାନସିଂହ ଯଥାର୍ଥରେ ପ୍ରକାଶ କରିଛନ୍ତି– 'ପ୍ରକୃତ ସାହିତ୍ୟ ପ୍ରତିଭା ପୁଣି ଆପେ ଆପେ ସମସାମୟିକ କାଳର ଦର୍ପଣ ହୋଇଉଠେ । ନିଜ ନିଜ ଯୁଗ ଓ କାଳର ଦାନ୍ତେ ବା ସେକ୍‌ସପିଅର ଯେପରି ବ୍ୟାପକ ବୃତ୍ତାନ୍ତ, ସେପରି ଅନ୍ୟ କେହି ନୁହଁନ୍ତି । ପ୍ରାଚୀନ ଭାରତୀୟ ସମାଜକୁ ଜାଣିବା ପାଇଁ ସର୍ବୋତ୍କୃଷ୍ଟ ରେଫରେନ୍ସ ହେଉଛନ୍ତି ଆମର ପ୍ରିୟ ମହାକବି କାଳିଦାସ । ଆଧୁନିକ ଭାରତ ଓ ବଙ୍ଗଳାର ଶ୍ରେଷ୍ଠଚିତ୍ର ହଜାର ବର୍ଷ ପରେ ମଧ୍ୟ ପାଠକ ପାଇବେ ରବୀନ୍ଦ୍ର ନାଥଙ୍କ ରଚନାବଳିର । ଏହି ଦୃଷ୍ଟିକୋଣ ଗତ ଶହେବର୍ଷ ପୂର୍ବର ଓଡ଼ିଶା ଫକୀରମୋହନଙ୍କ ରଚନାବଳିରେ ଯେପରି ପରିପୁଷ୍ଟ ଭାବରେ ପ୍ରତିଫଳିତ ହୋଇରହିଛି, ସେପରି ଆଉ କୌଣସିଠାରେ ହେଲେ ହୋଇନାହିଁ– ରାଧାନାଥ ଓ ମଧୁସୂଦନଙ୍କ ରଚନାରେ ତ ନୁହେଁ । ଷୋଡଶ ଶତାବ୍ଦୀରେ ରଚିତ ହେଲେ ହେଁ ବିଖ୍ୟାତ ସ୍ପେନିଶ୍ ଲେଖକ ଶରଭାନ୍ତେଙ୍କ ଗୋଟିଏ ମାତ୍ର ଉପନ୍ୟାସ 'ଡନ କୁଇକୋଟେ'ରେ ସମଗ୍ର ସ୍ପାନୀଶ୍ ଜାତିର ସବୁ ଶ୍ରେଣୀର ଲୋକଙ୍କର ସର୍ବୋତ୍କୃଷ୍ଟ ବର୍ଣ୍ଣନା ଥିବାର କୁହାଯାଏ । ତାହା ହିଁ ଘଟିଛି ଓଡ଼ିଆ ଜାତି ଓ ସମାଜ ପକ୍ଷରେ ଫକୀର ମୋହନଙ୍କ ଗଦ୍ୟପଦ୍ୟ ସୃଷ୍ଟିରେ ।'

'ପୂଜାଫୁଲ' କବିତାରେ କାୟ-ମନ-ବାକ୍ୟରେ କବି ଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ବିଭିନ୍ନ ପ୍ରକାର ପୁଷ୍ପର ସମାବେଶ କବିଙ୍କୁ ଆକୃଷ୍ଟ କରିଛି । ସୁମନର ସୌରଭ ଭିତରେ କବି ଈଶ୍ୱରଙ୍କ ସତ୍ତାକୁ ଅନୁଭବ କରିଛନ୍ତି । କବି 'ପୂଜାଫୁଲ' କବିତାରେ ପ୍ରକାଶ କରିଛନ୍ତି–

'କେମନ୍ତ ନିର୍ମଳ କେମନ୍ତ ସୁଢଳ
ରଚନା କୌଶଳ ସୀମା
ରୂପ-ରସ-ବାସେ ଗୁଣରେ ବିକାଶେ
ଅପରୂପ ମଧୁରିମା' ।

ପ୍ରାଣୀ ଈଶ୍ୱରଙ୍କ ଅଧୀନ । ନଶ୍ୱର ଜୀବନ । ମରୀଚିକା ସପନ । ଅଦୃଶ୍ୟ ନିକଟରେ ସମର୍ପିତ ପ୍ରାଣମନ । ପଦ୍ମପତ୍ରେ ନୀର ପରି ଜୀବନ ଯୌବନ । କବି ବିଭୁ ପଦାରବିନ୍ଦରେ କରିଛନ୍ତି ନିଜକୁ ସମର୍ପଣ । ପ୍ରଭୁଙ୍କ ଚରଣ ତଳେ ଶରଣ ଏକାନ୍ତ ଭାବରେ ମୁକ୍ତିର କାରଣ ବୋଲି କବି ଅନୁଭବ କରିଛନ୍ତି । କବିଙ୍କ ଭାଷାରେ–

'ଭକ୍ତି ପୁଷ୍ପ ଜଳେ ପବିତ୍ରତା ଜଳେ
ଧୌତ କରି ବାଞ୍ଛା ମନେ





କରି ସମର୍ପଣ ପ୍ରଭୁଙ୍କ ଚରଣ
ପୂଜୁଥିବି ଅନୁକ୍ଷଣେ ।'

ଯାହାର ଆଲୋକ ଅନ୍ଧକାରକୁ ଦୂର କରେ, ଯିଏ ସଚରାଚର ବିଦ୍ୟମାନ, ଜଳସ୍ଥଳ ବନ ଗିରି ଆକାଶରେ ଯାହାର ଜ୍ୟୋତି ପ୍ରକାଶ, ସେ ସର୍ବବିଦ୍ୟମାନ, ସର୍ବବ୍ୟାପକ, ମଙ୍ଗଳମୟ ଈଶ୍ୱର । 'ଯଜୁର୍ବେଦ'ରେ ଉଲ୍ଲେଖ ଅଛି–

'ଯଜ୍ଜାଗ୍ରତ ଦୂରମୂଦୈତି ଦୈବନ୍ତଦୁ
ସୁପ୍ତସ୍ୟ ତଥୈବେତି ଦୂରଙ୍ଗମଂ
ଜ୍ୟୋତିଷାଂ ଜ୍ୟୋତିରେକଂ
ତନମେନନଃ ଶିବ ସଙ୍କଳ୍ପମସ୍ତୁ ।'

ବ୍ରହ୍ମବାଦୀ କବି ମଧୁସୂଦନ 'ସ୍ତବ' କବିତାରେ ଏକଦା ପ୍ରକାଶ କରିଥିଲେ–

'ତୋହର ମହିମା ଅନନ୍ତ
ବୁଝିବି ଛାର ମୁଁ କେମନ୍ତ
ଧରଣୀ ସାଗର ଗଗନ
ତୋ'ର ଆନନ୍ଦେ ନିମଗନ ।
ପୁଷ୍ପ ଅଞ୍ଜଳି ତୋ' ପୟରେ
ଢାଳଇ ଧରା ଆନନ୍ଦରେ
ଗଗନେ ଚନ୍ଦ୍ରମା ତପନ
ଆବର ଗ୍ରହ ତାରାଗଣ
ତୋ'ର ଆନନ୍ଦରେ ଭାସି
ପ୍ରକାଶୁଛନ୍ତି ଶୋଭାରାଶି ।
X X X
ତୁହି ବିଧାତା ଦୟାମୟ
ତୋ ପାଦେ ମିଳଇ ଅଭୟ
ହେ ମହାପ୍ରଭୁ ଏ ଜୀବନ
ତୋ ପାଦେ କଲି ସମର୍ପଣ ।'

ଉଦ୍ଦେଶ୍ୟ ରହିତ କର୍ମ ଈଶ୍ୱରାଭିମୁଖୀ ହେବା ବାଞ୍ଛନୀୟ । ଅନ୍ତରେ ବାହାରେ ସର୍ବବିଦ୍ୟମାନ ଈଶ୍ୱର ଅନନ୍ତ ବ୍ରହ୍ମାଣ୍ଡ ପତି ତାଙ୍କ ବିନା ନାହିଁ ମୁକ୍ତିଗତି, ତାଙ୍କ ପଦେ ବାଢ଼ିଛନ୍ତି କବି ଶତତ ପ୍ରଣତି । ବ୍ୟାସକବି ଫକୀର ମୋହନ ମାନସ ପ୍ରତିମା କବିତାରେ ପ୍ରକାଶ କରିଛନ୍ତି–

ବିଶାଳ ଅବନୀ ନର ନୟନେ ବିକାଶେ
ଅଣୁରୂପେ ଭାସେ ମାତ୍ର ଅନନ୍ତ ଆକାଶେ
ବିଶ୍ୱ ବ୍ରହ୍ମାଣ୍ଡର ପତି ଅନନ୍ତ ମହାନ
କି ଆକାରେ ତାଙ୍କ ରୂପ କରିବି ନିର୍ମାଣ ।

ଅସୀମ ସଂସାର ଯା' ହାତର ତାରକସି କାମ । ଯାହାର ଇଙ୍ଗିତରେ ସଚରାଚର ବ୍ରହ୍ମାଣ୍ଡ ଚଳଚଞ୍ଚଳ । ଯାହାର ନିର୍ଦ୍ଦେଶରେ ସରୋବରରେ ପ୍ରସ୍ଫୁଟିତ କମଳ । ଆଡ ଦୃଷ୍ଟିରେ ଯା'ର ଜୀବନ ଟଳମଳ । ସେହି ଜଗତମୟ କର୍ତ୍ତାଙ୍କ ଉଦ୍ଦେଶ୍ୟରେ କବି କବିତା ରଚନା କରିଛନ୍ତି । 'ଉପନିଷଦ'ରେ ଉଲ୍ଲେଖ ଅଛି–

'ନ ତତ୍ର ସୂର୍ଯ୍ୟୋଭାତି ନ ତାରକଂ
ନେମାବିଦ୍ୟୁତୋଭାନ୍ତି କୁତୋଅୟମଗ୍ନିଃ
ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାଷା ସର୍ବମିଦଂ ବିଭାତି'

ଉପନିଷଦୀୟ ଭାବଧାରାରେ କବି ଫକୀର ମୋହନ ବିଶେଷ ଭାବରେ ଉଦ୍‌ବୁଦ୍ଧ । ଦୁଃଖରେ ଅଧିର, ଯନ୍ତ୍ରଣାରେ କାତର କବି ମହେଶ୍ୱରଙ୍କ ନିକଟରେ ବିନୟାବନତ । ଈଶ୍ୱରଙ୍କର ଶରଣାପନ୍ନ ହୋଇ କବି ପ୍ରକାଶ କରିଛନ୍ତି–

'ହେ ପ୍ରଭୁ ସଂଶୟାତୀତ କର ମୋର ଚିତ୍ତ
ଗାଇବି ବିରଳେ ବସି ସ୍ୱର୍ଗୀୟ ସଂଗୀତ
ଗୁଣାତୀତ ବିଶ୍ୱାତୀତ ସର୍ବ ମୂଳାଧାର
ମାନସ ପ୍ରତିମା ମୋର ଘେନ ନମସ୍କାର' ।

ଦୟାମୟ ନିରଞ୍ଜନ ନିରାକାର । ସୁଗୁଣରେ ସାକାର । ଅରୂପ ଅନାମ ଅଭେଦ ଭିତରେ ସେ ସର୍ବମୟ କର୍ତ୍ତା । ସେ ପ୍ରଦାନ କରନ୍ତି ଜୀବନର ବାର୍ତ୍ତା । ହୃଦୟ କନ୍ଦରରେ ସେ ଅବସ୍ଥାପିତ । ଈଶ୍ୱରଙ୍କର ମହିମାଗାନ କରିବା ସହିତ କବି ଈଶ୍ୱରଙ୍କ ସତ୍ତାକୁ ହୃଦୟରେ ଅନୁଭବ କରିଛନ୍ତି । କବିଙ୍କ ଭାଷାରେ–

'ଯାହାବଳେ କ୍ରିୟାବାନ ଜଗତର ଲୋକ
ଅନନ୍ତ ଜ୍ୟୋତିର ଜ୍ୟୋତି ହୃଦ ଆଲୋକ
ପରମ ଜ୍ଞାନର ସୁଧା ଅନନ୍ତ ମହାନ
କରନ୍ତୁ ମୋ' ମନେ ଶିବ ସଙ୍କଳ୍ପ ବିଧାନ ।'



ବ୍ୟକ୍ତିଗତ ଅନୁଭୂତି ସ୍ନିଗ୍ଧ ଓ ତାଙ୍କ ବ୍ୟକ୍ତି ପୁରୁଷର ଏକ ନିଛକ ରୂପାନ୍ତର ତାଙ୍କ କବିତା ସଂକଳନ । ବାସ୍ତବ ଜୀବନର ସକରୁଣ ଅଭିବ୍ୟକ୍ତି ତାଙ୍କ ସୃଷ୍ଟି ସମ୍ପଦ । ତାଙ୍କ କବିତାରେ ସମାଜର ସ୍ମରଣ ଅଛି, ଦର୍ଶନର ପ୍ରତିଫଳନ ଅଛି, ମନନର ମନୀଷା ପ୍ରତ୍ୟୟ ସୃଷ୍ଟି କରିଛି ।

ଫକୀର ମୋହନଙ୍କ ଈଶ୍ୱର, ନିଃସଙ୍ଗ ଜୀବନର ଏକମାତ୍ର ସହାୟ । ତାଙ୍କ ଭଗବତ ଭକ୍ତି, ବିଶ୍ୱାସର ସ୍ୱରୂପ ଆଶା ଓ ଅନୁରାଗର ଐକାନ୍ତିକତା ଓ ବିଭୁ ପଦାରବିନ୍ଦରେ ଆତ୍ମନିବେଦନର ଆତୁରତା ଉପରେ ହିଁ ପ୍ରତିଷ୍ଠିତ । କବି ଫକୀର ମୋହନଙ୍କ ହୃଦୟ ସ୍ୱାର୍ଥ ଜଟିଳ ସଂସାରର ଲାଳସା ପଙ୍କିଳତାର ସ୍ପର୍ଶରୁ ମୁକ୍ତ, ଧର୍ମ ଓ ସତ୍ୟର ଉଦାର ସୁରଭିରେ ସୁରଭିତ, ଜୀବନ ସତେଜ ଶୁଭ୍ର, ଜଗତର ସମ୍ପତ୍ତି ଧୂଳିର ସମଷ୍ଟି ମାତ୍ର ସଂସାରର କାଳିମା କଳୁଷ କବି ମନୀଷାକୁ ପଙ୍କିଳ କରି ପାରିନି, ଯେତେକ ପଦାର୍ଥ ଅଛି ଜଗତ ଯନ୍ତ୍ରଣା ତୁଚ୍ଛ ବସ୍ତ୍ର ପରି ଯାଏ ସବୁ ତାଙ୍କୁ ଜଣା, କାରଣ ସେ ସାହିତ୍ୟ ସାଧନାର ବେଦୀରେ ନିଷ୍ଠାର ସହ କର୍ମତତ୍ପର । ଓଡ଼ିଆ ଭାଷା ଓ ସାହିତ୍ୟର କାରିଗର ଫକୀର ମୋହନ ଓଡିଆ ଜାତି ନିକଟରେ ଚିର ଅମର ।

ବିଭାଗ ମୁଖ୍ୟ, ସ୍ନାତକୋତ୍ତର
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଫକୀର ମୋହନ ବିଶ୍ୱବିଦ୍ୟାଳୟ
ବାଲେଶ୍ୱର

ସହାୟକ ଗ୍ରନ୍ଥସୂଚୀ

୧) ନବଘନ ପଣ୍ଡା: ସଂକ୍ରାନ୍ତି ପୁରୁଷ
୨) ବୈଷ୍ଣବ ଚରଣ ସାମଲ: ଓଡ଼ିଆ ସାହିତ୍ୟର ଇତିହାସ
୩) ଡକ୍ଟର ମାୟାଧର ମାନସିଂହ: ଓଡ଼ିଆ ସାହିତ୍ୟର ଇତିହାସ
୪) ଡକ୍ଟର ଅସିତ୍ କବି: ଫକୀର ମୋହନଙ୍କ କୃତିରେ ସମକାଳୀନ ସମାଜ ଚିତ୍ର
୫) ଡକ୍ଟର ନଟବର ସାମନ୍ତରାୟ: ବ୍ୟାସକବି ଫକୀର ମୋହନ

# ଦେଶ

**କମଳ କୁମାର ମହାନ୍ତି**

ସ୍ୱପ୍ନର ଡେଣାରେ ଉଡିଉଡି ମୁଁ
ପହଞ୍ଚି ଯାଇଛି ଆଜି ସମୟର ବେଳାଭୂମିରେ ।
ବେଳାଭୂମି ନୁହେଁ, ମୋ' ଦେଶର ପାଦ
ଯାହାକୁ ଧୋଇ ଦେଉଥାଏ
ସମୁଦ୍ରର ଅସଂଖ୍ୟ ଲହଡି
ପ୍ରତି ମୁହୂର୍ତ୍ତରେ ।
କାଲି ମୋର ପାଦ ପଡିଥିଲା
ଭୁଲ ଭଟକାରେ
କେଉଁ ଅନ୍ଧାରି ଇଲାକାରେ
ଯେଉଁଠି ଜୁଳୁଜୁଳିଆର
ଆଲୁଅ ପଛରେ ଧାଇଁ ଧାଇଁ
ଖୋଜୁଥିଲି ଜହ୍ନର ସରାଗ ।
ଆଜି ଦେଖେ ମୋ' ମାଟିର ପାଦକୁ ଧୋଉଥାଏ
ଯେଉଁ ସମୁଦ୍ର ଲହଡି
ତା' ଦେହରେ ରେଣୁ ରେଣୁ ରୂପାର ଆଲୁଅ
ବୁଣି ଦେଉଥାଏ ଯେଉଁ ସଫେଦ ଜହ୍ନ
ସବୁଙ୍କୁ ଗ୍ରାସ କରି ନେଇଛି ଅଦିନ କଳଙ୍କ
ଗୋଟିଏ ଚିରାଫଟା ମାନଚିତ୍ରରୁ
ଲିଭି ଯାଇଛି ବିଶ୍ୱାସ
ଛଳନା ଓ ମାୟାର ପୂତିଗନ୍ଧରେ
ଦୂଷିତ ହେଉଛି ମୋ' ଦେଶର ଚିତ୍ର ।

ମୁଁ କିନ୍ତୁ ବସି ରହିଛି ଏତେକାଳ
ସମୟର ବେଳାଭୂମିରେ ଅପେକ୍ଷା କରିଛି
ଶୁଣିବାକୁ ଅମୃତ ବୈଦିକ ମନ୍ତ୍ର
ଯା'ର ମହନୀୟ ଉଚ୍ଚାଟରେ ଦିନେ
କ୍ଷୀଣ ହୋଇଯିବ ଯେତେସବୁ ପାଶବ ହେଣ୍ତାଳ
ଅସୂର୍ଯ୍ୟ ଇଲାକାରୁ ଉଭେଇ ଯିବ
କଳା କଳା ବଉଦ ।

ଆରସା, ଭଦ୍ରକ-୭୫୬୧୩୯




# ଓଡ଼ିଆ ଭାଷାର ବିନ୍ଧାଣୀ
# କଥା ସମ୍ରାଟ୍ ଫକୀରମୋହନ ସେନାପତି

**ଡକ୍ଟର ବସନ୍ତ କୁମାରୀ ନନ୍ଦ**

ଓଡ଼ିଆ ଭାଷାର ଜନକ ଫକୀରମୋହନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏଥିରେ ପ୍ରଥମ ପୁରୋଧା ଥିଲେ ବାରିଷ୍ଟର ମଧୁସୂଦନ ଦାସ । ଏତଦ୍ ବ୍ୟତୀତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଲଢ଼ିଥିବା ବୀରମାନେ ହେଲେ– କବି ଗଙ୍ଗାଧର ମେହେର, ଗୋପବନ୍ଧୁ ଦାସ, ରାଧାନାଥ ରାୟ, ରାଜା ରାମଚନ୍ଦ୍ର ଭଞ୍ଜଦେଓ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ହରେକୃଷ୍ଣ ମହତାବ ଓ ଆହୁରି ଅନେକ । ଏମାନେ ହେଲେ ଆଧୁନିକ ଓଡ଼ିଶାର ନିର୍ମାତା ।

ଓଡ଼ିଶା ଓ ଓଡ଼ିଆ ଭାଷାର ପ୍ରଗତି ଲାଗି ଉପରୋକ୍ତ ମହାପୁରୁଷମାନଙ୍କ ଦାନ ଓ କର୍ମ ଅତୁଳନୀୟ ।

ଫକୀରମୋହନଙ୍କ ଭାଷାରେ–

ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ
ଉତ୍କଳମାତାର ଯୋଗ୍ୟ ନନ୍ଦନ
ଦେଲ ଉତ୍କଳକୁ ନବ ଜୀବନ
ଶିଖାଇଲ ଲୋକେ ଜାତି ବନ୍ଦନ ।।

x x x

ଯେତେକାଳ ଥିବେ ଉତ୍କଳୀ ଜାତି
ଯାବତ ଚନ୍ଦ୍ରାର୍କେ ରଟିବ ଖ୍ୟାତି ।।

ଏଥିରୁ ଓଡ଼ିଆ ଜାତିର ଗୌରବମୟ ଇତିହାସକୁ ସ୍ମରଣ କରି ନିଜକୁ ଗୌରବାନ୍ୱିତ ମନେ କରିବାକୁ ହୁଏ । ଉତ୍କଳୀୟ ସଂସ୍କୃତି, ମାନବିକ ମୂଲ୍ୟବୋଧ, ଆଧ୍ୟାତ୍ମିକ ଚେତନା, ଆଦର୍ଶ ଜୀବନ ଯାପନ ଧାରା ପୃଥିବୀକୁ ଶିଖାଇଛି ଉତ୍କଳ । ଶିଳ୍ପ, କୃଷି, ବାଣିଜ୍ୟ, ଭାଷା, କଳା, ସଂଗୀତ, ବିଜ୍ଞାନ ସବୁ କ୍ଷେତ୍ରରେ ଉତ୍କଳ ଶ୍ରେଷ୍ଠ । ଏକ ବୀର ଜାତି ଓଡ଼ିଆ ଜାତି । ସୀମା ସୁରକ୍ଷା ସମସ୍ତଙ୍କ ପ୍ରତି ସ୍ନେହ, ଐକ୍ୟସ୍ଥାପନ, ଅହିଂସା ଆଚରଣ, ସତ୍ୟ ଧର୍ମ ପଥ ଅନୁସରଣ ସବୁକିଛି ଏହି ଓଡ଼ିଆ ଜାତିର ଓଡ଼ିଆ ଭାଷାରେ ଭରପୂର । ଏହାର ସାମାଜିକ ସଂସ୍କାର, ପରମ୍ପରା ଅନନ୍ୟ । ଭାଷା ବଞ୍ଚିଲେ ଜାତି ବଞ୍ଚିବ । ଜାତି ବଞ୍ଚିଲେ ରାଜ୍ୟବାସୀଙ୍କର ସ୍ୱତନ୍ତ୍ର ସତ୍ତା ବଞ୍ଚିରହେ । ଏହାହିଁ ପ୍ରମାଣ କରିଛି ଉତ୍କଳ ସମ୍ମିଳନୀର ଧାରାବାହିକ ପ୍ରଚେଷ୍ଟା, ସଞ୍ଚାରିତ କରିପାରିଛି ଜାତୀୟ ଜୀବନର ପ୍ରବାହମାନଧାରା, ସର୍ବଭାରତୀୟ ଏକତା, ଜାତୀୟ ସଂହତି, ସର୍ବଭାରତୀୟ ଭାଷା, ସଂସ୍କୃତି, ଧର୍ମ ଓ ପରମ୍ପରାକୁ ସମ୍ମାନ ଦେଇ ଓଡ଼ିଆଭାଷା ସଂସ୍କୃତିର ଅଭିବୃଦ୍ଧି ଓ ପ୍ରସାର କରିବା ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ତଥା ଉଦ୍ଦେଶ୍ୟ ।

ଆସନ୍ତୁ ଜାଣିବା ଓଡ଼ିଆ ଭାଷାକୁ ବଞ୍ଚାଇ ତା'ର ପ୍ରସାର ଘଟାଇଥିବା କେତେଜଣ ମହାରଥୀଙ୍କ ମଧ୍ୟରୁ ଜଣଙ୍କୁ କବି ସମ୍ରାଟ ଫକୀରମୋହନଙ୍କୁ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଭାଷାର ଘୋର ସଂକଟ ସମୟରେ ଏ ଭାଷାର ସ୍ଥିତି ଓ ସତ୍ତାକୁ ରକ୍ଷା କରିବା ପାଇଁ ଯେଉଁ କତିପୟ ମହାପୁରୁଷ ସ୍ୱୀୟ ମସୀ ଦ୍ୱାରା ପ୍ରଚଣ୍ଡ ସଂଗ୍ରାମ କରିଥିଲେ, କଥା ସମ୍ରାଟ ଫକୀର ମୋହନ ଥିଲେ ସେମାନଙ୍କ ମଧ୍ୟରେ ସର୍ବ ଶ୍ରେଷ୍ଠ । ତାଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟର ଇତିହାସ କହିଲେ ଭୁଲ ହେବ ନାହିଁ । ଓଡ଼ିଆ ଭାଷା ସଙ୍କଟଜନକ ସ୍ଥିତିରେ ଗତି କରୁଥିବା ବେଳେ ମହାପୁରୁଷ ଫକୀର ମୋହନ ଜନ୍ମ ହୁଅନ୍ତି ୧୮୪୩ ମସିହା ଜାନୁଆରୀ ମାସ ମକର ସଂକ୍ରାନ୍ତିରେ । ବାଲେଶ୍ୱର ଜିଲ୍ଲାର ମଲ୍ଲୀକାଶପୁର ଗ୍ରାମ ତାଙ୍କ ଜନ୍ମଭୂମି । ପିତା ଲକ୍ଷ୍ମଣ ସେନାପତି ଓ ମାତା ତୁଳସୀ ଦେବୀଙ୍କ କୁଳନନ୍ଦନ । କିନ୍ତୁ ଭାଗ୍ୟର ବିଡ଼ମ୍ବନା କିଏ ବା ଆନ କରିପାରିବ ?



ବାଲ୍ୟତ କାଳରୁ ବାଳକ ଫକୀରମୋହନ ହରାଇଲେ ପାତାମାତାଙ୍କୁ । ଫକୀରମୋହନଙ୍କୁ ମାତ୍ର ଦେଢ଼ ବର୍ଷ ବୟସରେ ପିତାମାତାଙ୍କ ଅକାଳ ମୃତ୍ୟୁ ଘଟିଲା । ଜେଜେମା କୋଶଲା ଦେଈ ଲାଳନପାଳନ କଲେ । ଚିର ରୁଗ୍ଣ ଥିଲେ ଫକୀରମୋହନ, ପିଲାଦିନ ନାମ ବ୍ରଜମୋହନରୁ ସେ ହେଲେ ଫକୀରମୋହନ । ପୀରଙ୍କ ନିକଟରେ ପ୍ରାଣଭିକ୍ଷା କରି ଜେଜେମା ନାମ ରଖିଲେ ଫକୀରମୋହନ ।

ସମୟ ବଡ଼ ବଳବାନ– ବହି ଚାଲିଲା ତା'ର ସ୍ୱଭାବ ସୁଲଭ ଢ଼ଙ୍ଗରେ । ଆଉ ବଢ଼ି ଚାଲିଲେ ଫକୀରମୋହନ ବିଦ୍ୟାଶିକ୍ଷା କଲେ ଚାଟଶାଳୀ ପରେ ବାଲେଶ୍ୱର ବାରବାଟୀ ସ୍କୁଲରେ । ଭଲ ପଢୁଥିଲେ ମଧ୍ୟ ଆର୍ଥିକ ସଙ୍କଟ ତାଙ୍କ ଶିକ୍ଷା ଗ୍ରହଣରେ ବାଧା ସୃଷ୍ଟି କଲା । ତେଣୁ ପାଠପଢ଼ା ବନ୍ଦ ହେଲା । କ୍ରମେ ସେ ସେହି ସ୍କୁଲରେ ପରେ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଶିକ୍ଷକତା ସହ ବିଭିନ୍ନ ସଂସ୍କୃତ କାବ୍ୟ ପାଠକଲେ । କିଛିଦିନ ପରେ ମିଶନ ସ୍କୁଲରେ ଶିକ୍ଷକତା କଲେ ଓ ହେଡ୍‌ପଣ୍ଡିତ ହେଲେ ।

ସେତେବେଳେ ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଭାଷା ବିବାଦ ଲାଗିଥାଏ । ବଙ୍ଗଳାର କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ କହିଲେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ । ସେ ମଧ୍ୟ ଏହି ନାମରେ ଏକ ବହି ପ୍ରକାଶ କଲେ । ଜାତିପ୍ରାଣ ଫକୀରମୋହନଙ୍କୁ ଏ କଥା ଅତ୍ୟନ୍ତ ବାଧିଲା । ସେ ଏହାର ଘୋର ବିରୋଧ କଲେ । ତେଣୁ ଓଡ଼ିଆ ଭାଷାର ସ୍ୱତନ୍ତ୍ର ପରିଚୟ ଓ ସୁରକ୍ଷା ପାଇଁ ସେ ଓଡ଼ିଆରେ ଲେଖିଲେ ଭାରତର ଇତିହାସ, ସରଳ ବ୍ୟାକରଣ, ଅଙ୍କମାଳା ପ୍ରଭୃତି । ଏହା ଓଡ଼ିଆ ପୁସ୍ତକର ଚାହିଦା ମେଣ୍ଟାଇଲା । ସେ ବାଲେଶ୍ୱରରେ ଗୋଟିଏ ଛାପାଖାନା ବସାଇଲେ ଓ ସେହି ପ୍ରେସ୍‌ରୁ ପ୍ରକାଶ କଲେ ବୋଧ ଦାୟିନୀ ପତ୍ରିକା, ବାଲେଶ୍ୱର ସମ୍ବାଦ ବାହିନୀ ପତ୍ରିକା । ଦିନରେ କଲେ ଶିକ୍ଷକତା । ରାତିରେ କଲେ ପ୍ରେସ୍ କାର୍ଯ୍ୟ । ମଧୁବାବୁଙ୍କ ଆହ୍ୱାନ, ଗୋପବନ୍ଧୁ ଦାଶଙ୍କ ପ୍ରେରଣା ଓ ଅନ୍ୟାନ୍ୟ ବନ୍ଧୁଙ୍କ ସାହାଯ୍ୟରେ ରେମୁଣାରେ ଭର୍ଣ୍ଣାକୁଲାର ସ୍କୁଲ ସ୍ଥାପନ କରି ଓଡ଼ିଆ ଭାଷାର ପ୍ରଚାର, ପ୍ରସାରରେ ଲାଗି ପଡ଼ିଲେ ।

ମାତ୍ର ୧୩ ବର୍ଷ ବୟସ । ମାଣିକଖମ୍ଭ ଗ୍ରାମର ଲୀଳାବତୀ ନାମକ ଝିଅକୁ ବିବାହ କଲେ । କିଛି ବର୍ଷ ପରେ ଗୋଟିଏ କନ୍ୟା ମହିଳାମଣିର ଜନ୍ମ ପରେ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁ ହେଲା ଓ ସେ କୃଷ୍ଣାକୁମାରୀଙ୍କୁ ବିବାହ କଲେ । ତାଙ୍କର ଗୋଟିଏ ପୁତ୍ର ମୋହିନୀମୋହନ ଓ ଗୋଟିଏ କନ୍ୟା ସରୋଜିନୀ ଜନ୍ମି ଥିଲେ ।

ବାଲେଶ୍ୱର କଲେକ୍ଟରଙ୍କ ସୁପାରିଶ୍‌ରେ ସେ ନୀଳଗିରି ରାଜାଙ୍କ ଦେବାନ ରୂପେ ନିଯୁକ୍ତି ପାଇଲେ । ସେଠାରେ ରାଣୀଙ୍କ ନାମରେ ଏକ ସଂସ୍କୃତ ଟୋଲ୍ ବସାଇ ଶିକ୍ଷାର ପ୍ରସାର କଲେ । ତା'ପରେ ସେଠାରୁ ଆସିଲେ ଢ଼େଙ୍କାନାଳ । ପ୍ରଥମ ପୁତ୍ରର ମୃତ୍ୟୁ ହେଲା କିଛି ବର୍ଷ ପରେ ଓ ଦ୍ୱିତୀୟ ଥର ଜନ୍ମ ହେଲେ । ଫକୀରମୋହନଙ୍କୁ ଅସୁସ୍ଥତା ଲାଗିରହିଲା । ଭଲହେବା ପରେ ଆସିଲେ ଦେବାନ ହୋଇ । ଓକିଲ ମଧୁସୂଦନ ଦାସଙ୍କ ଦ୍ୱାରା ବହୁ ଉପକୃତ ହେଲେ । ଦ୍ୱିତୀୟ ଥର ଦେବାନ ହେଲେ ଡ଼ମପଡ଼ାରେ । ଏହି ସମୟରେ ପତ୍ନୀଙ୍କ ବିୟୋଗ ହେଲା । ଏଥିରେ ଦୁଃଖିତ ହୋଇ ସେ ଲେଖିଲେ ଶୋକ କବିତା ଉପହାର ।

ତା'ପରେ ଆସିଲେ କଟକ ବାଖରାବାଦ ଓ ଗୋଟିଏ ଗୃହ ନିର୍ମାଣ କରି ସାହିତ୍ୟ ସାଧନାରେ ମନୋନିବେଶ କଲେ । ଉତ୍କଳ ସାହିତ୍ୟରେ ରୀତିମତ ଲେଖିଲେ । ଛ'ମାଣ ଆଠଗୁଣ୍ଠ, ଲଛମା, ରେବତୀ, ନନାଙ୍କ ପାଞ୍ଜି ପ୍ରଭୃତି ରଚନା କରି ଓଡ଼ିଆ ସାହିତ୍ୟକୁ ଅମର କଲେ । ତାଙ୍କ ପୁତ୍ର ମୋହିନୀମୋହନ ସବ୍–ଡ଼େପୁଟି ହୋଇ ବାଲେଶ୍ୱର ଚାଲିଯିବାରୁ ଫକୀରମୋହନ ନିଜ ଜନ୍ମସ୍ଥାନ ମଲୀକାଶପୁର ଫେରିଗଲେ ।

ବାଲେଶ୍ୱର ରହଣି କାଳରେ ବହୁତ ଗଳ୍ପ, ଉପନ୍ୟାସ ଲେଖିଲେ । ଗଳ୍ପସ୍ୱଳ୍ପ ପୁସ୍ତକ ନାମରେ ଏହାର କାଳଜୟୀ ଲେଖା ମାମୁଁ ଉପନ୍ୟାସ ରଚନା କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କଲେ । ପ୍ରାୟଶ୍ଚିତ ଉପନ୍ୟାସ ପରେ ଗଳ୍ପସ୍ୱଳ୍ପରେ ସଭ୍ୟ ଜମିଦାର, ବଗଲା ବଗୁଲୀ, ବିରେଇବିଶାଳ, ପେଟେଣ୍ଟ ମେଡ଼ିସିନ୍, ରାଣ୍ଡିପୁଅ ଅନନ୍ତା, ଡ଼ାକମୁନ୍‌ସୀ, ସୁନା ବୋହୂ, ମାଧ ମହାନ୍ତିଙ୍କ କନ୍ୟାସୁନା ତାଙ୍କର ଲୋକପ୍ରିୟ ଗଳ୍ପ ଭାବରେ ଖ୍ୟାତି ଅର୍ଜନ କରିଛି । ରେବତୀ ଗଳ୍ପ ମାଧ୍ୟମରେ ନାରୀ ଶିକ୍ଷାର ପ୍ରଗତି ପାଇଁ ଓ ସମାଜ ସଂସ୍କାର ପାଇଁ ଉଦ୍ୟମ କରିଛନ୍ତି ।

ଛ'ମାଣ ଆଠଗୁଣ୍ଠ ଆଜି ବିଜ୍ଞାନ ଯୁଗରେ ମଧ୍ୟ ଚିର ଭାସ୍ୱର ଓ କାଳଜୟୀ । ଏହି ଉପନ୍ୟାସ କଥାବସ୍ତୁ ଦ୍ୱାରା ସେ ଜମିଦାରମାନଙ୍କ ଅତ୍ୟାଚାର, ତତ୍କାଳୀନ ସାମାଜିକ ବ୍ୟବସ୍ଥାକୁ ଲୋକ ଲୋକଚନକୁ ଆଣି ସଂସ୍କାରିତ କରିଛନ୍ତି । ସେତେବେଳେ ଇଂରେଜ ଶିକ୍ଷାର କୁପ୍ରଭାବରେ ସମାଜର ସବୁ ଦିଗକୁ ସେ ଚିତ୍ରଣ କରି ତା'ର ସମାଧାନ ଦିଗକୁ ଦର୍ଶାଇଛନ୍ତି ।

ତାଙ୍କର ଅନେକ ମହତ ଗୁଣ ଥିଲା । ଜୀବନ ଦେଇ ଓଡ଼ିଶା ଓ ଓଡ଼ିଆ ଭାଷାକୁ ଭଲ ପାଉଥିଲେ । ଓଡ଼ିଆ ଗଦ୍ୟ ସାହିତ୍ୟର ସେ ସ୍ରଷ୍ଟା । ହାସ୍ୟରସର ସ୍ରଷ୍ଟା । ତାଙ୍କର ବ୍ୟଙ୍ଗ ରଚନା ଆଜି ବି ଚିର ଜାଜ୍ୱଲ୍ୟମାନ ।

◆◆◆





ବାସ୍ତବିକ୍ ଉତ୍କଳଜନନୀଙ୍କର ସେ ଯୋଗ୍ୟ ସନ୍ତାନ । ଓଡ଼ିଆ ଜାତି, ଭାଷା ସଂଗ୍ରାମର ସେ ପ୍ରକୃତ ସେନାପତି । ୧୯୧୮ ମସିହା ରଜ ସଂକ୍ରାନ୍ତିରେ ଏହି ସଂକ୍ରାନ୍ତି ପୁରୁଷଙ୍କର ମହାପ୍ରୟାଣ ଘଟିଥିଲା । ପଦ୍ୟ ସାହିତ୍ୟ ଓ ଗଦ୍ୟ ସାହିତ୍ୟ ବ୍ୟତୀତ ଅନେକ କାବ୍ୟକୁ ଅନୁବାଦ କରିଛନ୍ତି । ତାଙ୍କ ଅମର ଲେଖନୀ ନିଃସୃତ କାବ୍ୟ କବିତା ତାଙ୍କୁ କଥାସମ୍ରାଟ, ବ୍ୟାସକବିର ସମ୍ମାନରେ ଭୂଷିତ କରି ତାଙ୍କୁ ଉତ୍କଳମାତା ଶ୍ରେଷ୍ଠ ସନ୍ତାନ ଭାବେ ପ୍ରତିପାଦିତ କରିପାରିଛି । ଓଡ଼ିଆ ସାହିତ୍ୟର ଏହି ସେନାପତିଙ୍କ ବିୟୋଗରେ ଯଥାର୍ଥରେ ଗଙ୍ଗାଧର ମେହେର ଲେଖିଥିଲେ–

ଆହା ଫକୀର ମୋର ରଙ୍କୁଣୀଧନ
କିମ୍ପା ରହିଲୁ ପଡ଼ି ମୁଦି ନୟନ
ଆକୁଳେ ଡ଼ାକୁଅଛି ମୁଁ ତୋ ଜନନୀ
କିମ୍ପା ନଉଠୁ ଏତ ନୁହେଁ ରଜନୀରେ ॥

ତାଙ୍କ ସାରସ୍ୱତ କୃତି ହିଁ ଉତ୍କଳ ଜନନୀଙ୍କ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି ଓ ଓଡ଼ିଆ ଜାତି, ଭାଷା ପାଇଁ ତାଙ୍କର ସ୍ମୃତି ଚିରଦିନ ପାଇଁ ସାଇତା ହୋଇ ରହିଛି, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ସେ ମରି ମଧ୍ୟ ଆଜି ଅମର ।

ଶିଖରପୁର, ଗୌଡସାହି
କଟକ–୭୫୩୦୦୩

# ଏ ବର୍ଷର ନୂଆ କବିତା

ନୃସିଂହ ପ୍ରସାଦ ଦେବ

ସମୟ ସୁଅରେ ତେର ଗଲା ଦୂର ବିଜନେ
ସ୍ମୃତିର ପାଖୁଡା ଭରି ଦେଇ ମନ କାନନେ ।
କି ଲାଭ ମିଳିବ ଅତୀତକୁ ହେଜି ମଉନେ
ଚାଲ ହେ ସରବେ ଆଗାମୀ ଦିନର ସନ୍ଧାନେ ।

ଚାହିଁ ଦେଖ ବନ୍ଧୁ ସୁଦୂର ପ୍ରାଚ୍ୟ ବିତାନେ
ମଞ୍ଜୁଳ ଆଭା ଝଟକି ଉଠଇ ଗଗନେ ।
ପଉଷ ପ୍ରଭାତେ ସୁନା ଝିଲିମିଲି କିରଣେ
ଚଉଦ ଆସୁଛି ନାଲି ଟୁକୁଟୁକୁ ଅଂଗନେ ।

ସାଥିରେ ଆଣିଛି ସୁରଭିତ ସଜ ସୁମନ
ପ୍ରଜାପତି ଖେଳ ମଧୁଝରା ପ୍ରୀତି ଚୁମ୍ବନ ।
ନାଲି ହଳଦିଆ ଗୋଲାପି ନେଳିଆ ସପନ
ରଙ୍ଗରସେ ଭରା ନାନା ଜାତି ପକ୍ଷୀ କୁଜନ ।

ଆନନ୍ଦେ ଅଧିରେ ବିଭୋରଇ ତନୁ ଗହନ
ଶିହରଣ ଖେଳେ ଦେଖି ଅପରୂପ ଲଗନ ।
ନବ ବରଷର ଶୋଭା ଲଭି ବେନି ନୟନ
ମଧୁମୟ ହେଉ ଆମ ସଭିଙ୍କର ଜୀବନ ।

ପୂର୍ବତନ ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

(ବି.ଦ୍ର.– ମୃତ୍ୟୁର କିଛିଦିନ ପୂର୍ବରୁ ସ୍ୱର୍ଗତ ନୃସିଂହ ପ୍ରସାଦ ଦେବ ଏହି କବିତାଟି 'ଉତ୍କଳ ପ୍ରସଙ୍ଗ'ରେ ପ୍ରକାଶନ ପାଇଁ ପଠାଇଥିଲେ)






# ପରାଧୀନ ଭାରତର ସ୍ୱାଧୀନ ନେତା ନେତାଜୀ

**ଶଶାଙ୍କ ଶେଖର ମହାନ୍ତି**

ନେତାଜୀ ସୁଭାଷ ଓଡ଼ିଆ ମାଟିର ଗର୍ବ ଓ ଗୌରବ। କେବଳ ଭାରତ ଭୂଖଣ୍ଡରେ ନୁହେଁ, ସାରା ବିଶ୍ୱରେ ନିଜେ ନିଜର ପରିଚୟ ସୃଷ୍ଟି କରିପାରିଥିବା ଓଡ଼ିଆ ହେଉଛନ୍ତି ସୁଭାଷ ଚନ୍ଦ୍ର ବୋଷ, 'ନେତାଜୀ ସୁଭାଷ'।

ଭାରତକୁ ସ୍ୱାଧୀନ କରିବା ପାଇଁ କେତେ କେତେ ଯେ ଦେଶପ୍ରେମୀ ନିଜର ଜୀବନ ଉତ୍ସର୍ଗ କଲେ, ତାର ହିସାବ ତ ଦେଇ ହେବନି, ତେବେ ଆଜିର ଦିନରେ ମନେ ପଡନ୍ତି ସେଇମାନେ, ଯେଉଁମାନେ ବିଦେଶୀ ଶାସନରେ ଶୂଳିରେ ଚଢ଼ି ଓ ଆଣ୍ଡାମାନ ନିକୋବରର ସେଲୁଲାର ଜେଲରେ ନିର୍ଯାତୀତ ହୋଇ ଜୀବନ ଯାପନ କରି ଶେଷରେ ପ୍ରାଣ ତ୍ୟାଗ କରିଥିଲେ। ସେହିମାନଙ୍କୁ ପଚାରିବାକୁ ଇଚ୍ଛା ହୁଏ କିଏ କହିଥିଲା ସେମାନଙ୍କୁ ଯେ ବ୍ରିଟିଶ ଶାସନକୁ ବିରୁଦ୍ଧ କରି, ଜୀବନର ସୁଖ ସ୍ୱାଚ୍ଛନ୍ଦକୁ ଉପଭୋଗ ନକରି ନିଜର ଭବିଷ୍ୟତ ବଂଶଧରଙ୍କ କର୍ତ୍ତବ୍ୟକୁ ଜଳାଞ୍ଜଳି ଦେଇ, ମୃତ୍ୟୁ ବରଣ କରିବାକୁ ?

ଆଜିର ଜନ ନେତା ଆଜିଦିନ ଆକାଶରୁ ଫୁଲ ବୃଷ୍ଟି କରାଇବେ, ତ୍ରିରଙ୍ଗା ବାନା ଲହରାଇବେ, ଭାଷଣ ଦେବେ। ନିଜ କଥା କହିବେ, କିନ୍ତୁ ଏହି ୬୬ ବର୍ଷ ସ୍ୱାଧୀନତା ପରେ ଭାରତର ୧୦୦ କୋଟି ଲୋକ ଯେ ସାମାନ୍ୟ ତମ ସୁବିଧାରୁ ବଞ୍ଚିତ, ସେ କଥା କେହି କହିବେନି। ଏମାନଙ୍କ ମୁଖରୁ ଆହା ପଦେ ବାହାରିବ ନାହିଁ। ଏହି ୧୦୦ କୋଟି ଲୋକଙ୍କ ମଧ୍ୟରୁ ଆଜି ଓଡ଼ିଶାରେ ଗୋପବନ୍ଧୁ ଭଳି ସ୍ୱେଚ୍ଛାସେବୀ ନାହାନ୍ତି। ମଧୁବାବୁଙ୍କ ଭଳି ଯୋଗ୍ୟ ସନ୍ତାନ ନାହାନ୍ତି। ରାଧାନାଥ, ଗଙ୍ଗାଧର ଭଳି କବି ନାହାନ୍ତି କି କୃଷ୍ଣଚନ୍ଦ୍ର ରାମଚନ୍ଦ୍ର ଭଳି ପୃଷ୍ଠପୋଷକ ନାହାନ୍ତି। ଯେଉଁମାନେ କି ମାଟି ମା ପାଇଁ ଲୁହ ଗଡାଉ ଥିଲେ। ଭାଷା ପାଇଁ ଓ ତା'ର ସୁରକ୍ଷା ପାଇଁ ସର୍ବଦା ଚିନ୍ତିତ ଓ ବ୍ୟତିବ୍ୟସ୍ତ ହୋଇ ଉଠୁଥିଲେ। କିନ୍ତୁ ଆଜି ଜଣେ ଓଡ଼ିଆ ଜାଣି ନଥିବା ଓଡ଼ିଆ ପୁଅ ଭାଷାର ସୁରକ୍ଷା ପାଇଁ ଇଚ୍ଛାକୃତ ଭାବେ ହେଉ ବା ଅନିଚ୍ଛାକୃତ ଭାବେ ହେଉ ଚେଷ୍ଟା କରି ୪.୧୧.୨୦୧୧ରେ ଓଡ଼ିଶାବାସୀଙ୍କୁ ଖୁସି କରାଇ ପାରିଥିଲା। ଆଜି ଦୁଇ ବର୍ଷ ପୂରି ଯାଇଥିଲେ ମଧ୍ୟ ସ୍ୱାଭିମାନୀ ଓଡ଼ିଆ ବୋଲାଉଥିବା କିଛି ଖବରକାଗଜ ଓ ରାଜ୍ୟରୁ ଦରମା ନେଉଥିବା କର୍ମଚାରୀ ସେହି ଓରିଆ ବା ନାମ ଫଳକରେ ଇଂରାଜୀ ଅଫିସ ମୋହର ଇତ୍ୟାଦିକୁ ବଦଳାଇ ପାରିନାହାନ୍ତି। ଆଜି ସେ ମନେ ପଡ଼ନ୍ତି କାହିଁକି ? କାହିଁକି ନା ସେ ଏକ ମାଧିଆ ଚବିଶ ପଳ– ସେ ସୁଭାଷ– ସେ ଓଡ଼ିଆ। ଯିଏ ଥିଲେ ଏକ ଅପ୍ରତିଦ୍ୱନ୍ଦ୍ୱୀ ନେତା। କେହି ଯଦି ସଙ୍ଗରେ ନାହିଁ 'ଏକଲା ଚଲୋ' ମନ୍ତ୍ର ଶିଖାଇବା ସଙ୍ଗେ ସଙ୍ଗେ କାର୍ଯ୍ୟରେ ମଧ୍ୟ ପୃଥିବୀବାସୀଙ୍କୁ ଦେଖାଇ ଦେଲେ ଯେ ଜଣେ ମଣିଷ କ'ଣ ନକରି ପାରେ।

ମା ଓ ମାତୃଭୂମି ଉଦ୍ଦେଶ୍ୟରେ ତାଙ୍କ ମୁଖ ନିସୃତ କବିତାରୁ ତାହା ସ୍ପଷ୍ଟ ବାରିହୁଏ। ତାଙ୍କର ଦେଶ ଭକ୍ତି ଓ ତାର ମୁକ୍ତି ପାଇଁ ସେ ଗାଇ ଉଠିଥିଲେ–

ତୁମେ ହିଁ ମା, ତୁମେ ହିଁ ଜନନୀ
ତୁମେ ହିଁ ଶାନ୍ତି, ତୁମେ ହିଁ ଶକ୍ତି ଦାୟିନୀ
ତୁମରି ଅଭୟ ଚରଣେ ମାଗୋ
ଅର୍ପିତ ମମ ପରାଣ।
ପିତା–ମାତା ଅବା ସାଥି ପରିଜନ,
ଚାହେଁନା ବନ୍ଧୁ ସ୍ୱଜନ,
ତୁମେ ଏ ଜୀବନେ ଚିର ଆଶ୍ରୟ ମମ,
ତୁମେ ହିଁ ତାରିବ ଅନ୍ତରୁ ଘନ ତମ ॥

ସେହି ଓଡ଼ିଆ ମାଟିର ପିଲା ଦିନେ ଜବାହରଲାଲ୍ ନେହେରୁ ଓ ଶ୍ରୀନିବାସ ଆୟଙ୍ଗାରଙ୍କ ଭଳି ଯୁବ ନେତାଙ୍କୁ ପଛରେ ପକାଇ,





ଯୁବ କଂଗ୍ରେସର ସଭାପତି ଆସନ ଅଳଙ୍କୃତ କରିବାରେ ସକ୍ଷମ ହୋଇ ପାରିଥିଲେ । ଖାଲି ସେତିକି ନୁହେଁ, ଶ୍ରମିକ କଂଗ୍ରେସର ସଭାପତି ରୂପେ ସେ ୧୯୨୯ରୁ ୧୯୩୧ ଏବଂ ୧୯୩୧ରେ ଟ୍ରେଡ ୟୁନିୟନର ସଭାପତି ଭାବେ ଅଧିଷ୍ଠିତ ହୋଇପାରିଥିଲେ । କାରଣ ସେସମୟରେ ଆଜିର ଭଳି କଳୁଷିତ ନେତା ଓଡ଼ିଶାରେ ନଥିଲେ । ଯାହାଫଳରେ କି ଯୁଗପୁରୁଷ, ସ୍ୱାଭିମାନୀ, ସାହସୀ ଭଳି ନେତାଙ୍କୁ ମଧ୍ୟ ଗୋଡ଼ଟାଣି ଧରାଶାୟୀ କରିଦେଲେ ଏବଂ ସେଇ ଭଳି ନେତାଙ୍କୁ ଆଜିର କିଛି ଓଡ଼ିଆ ସୁଉଚ୍ଚ ଆସନରେ ବସାଇବାକୁ ଭୁଲୁ ନାହାନ୍ତି । ତେଣୁ ଆଜିର ସ୍ୱାଧୀନତା ଦିବସରେ ମନେ ପଡନ୍ତି ସୁଭାଷ, ଯିଏ କହିଥିଲେ– ସୃଜନଶୀଳତା ହିଁ ଜୀବନର ସ୍ୱାଦ ଓ ଧର୍ମ ମଧ୍ୟ ।

ସେ ଭାରତବାସୀଙ୍କୁ ସୂଚାଇ ଦେଇଥିଲେ ଯେ ସବୁବେଳେ ମତନେଇ 'ପଥ'(ବାଟ)ର ସୃଷ୍ଟି ହୁଏ । ପଥ ନେଇ ବିଭାଜନର ଆରମ୍ଭ ଓ ବିଭାଜନ ହିଁ ବିଭେଦର ଗ୍ରନ୍ଥିକୁ ନିବିଡ କରେ, ଯାହାକି ଆଜିର ଦିନରେ ଆମ ରାଜ୍ୟର ତଥା ଦେଶର ଅବସ୍ଥା । ସେତେବେଳେ ମଧ୍ୟ (୧୯୩୮–୩୯) ଆମ ଦେଶର କଂଗ୍ରେସ ନେତାଙ୍କର ଚରିତ୍ର ଉପରେ ତାଙ୍କର ବିଶ୍ୱାସ ନଥିଲା । ତେଣୁ ସେ ୧୯୩୯ରେ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇ ଗଢ଼ିଥିଲେ 'ଫରୱାର୍ଡ ବ୍ଲକ' ।

ଭାରତୀୟ ନେତା କଂଗ୍ରେସଙ୍କ ଉପରୁ ବିଶ୍ୱାସ ତୁଟିଥିଲା କର୍ମବୀରଙ୍କର ତେଣୁ ସେ ଛଦ୍ମ ବେଶରେ ଭାରତ ଛାଡି ଚାଲିଲେ ରେଙ୍ଗୁନ, ଜାପାନ, ଋଷିଆ ଭଳି ଦେଶକୁ । ଗଠନ କଲେ ଆଜାଦ୍ ହିନ୍ଦ ଫୌଜ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବନ୍ଦୀ ହୋଇଥିବା ଭାରତୀୟଙ୍କୁ ମୁକୁଳାଇ ଭାରତୀୟଙ୍କୁ ସ୍ୱାଧୀନ କରାଇବା ପାଇଁ ଆଜଦ୍‌ହିନ୍ଦ ଫୌଜ ଗଠନ କରି ଭାରତ ମାଟିରେ ଉଡାଇବାକୁ ସକ୍ଷମ ହୋଇଥିଲେ ସ୍ୱାଧୀନତା ପତାକା । ପ୍ରଣିତ କରିଥିଲେ ନିଜର ମୁଦ୍ରା । ଆଉ ସେହି ସ୍ୱାଭୀମାନୀ ବୀରଙ୍କୁ ଧରିବା ପାଇଁ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଲେଖିଥିଲେ ବିଦେଶୀ ଶାସକ 'ଏଟଲୀ'ଙ୍କ ପାଖକୁ ଏକ ପତ୍ର । ଯାହାର କି ବିଷୟ ବସ୍ତୁ ଏପରିଥିଲା–

Dear Mr. Atlee!

I understand from reliable source that Subas Chandra Bose, your Criminal has been allowed to enter Russian Territory by stalin.

This is a clear Treachlry and betrayal of faith by Russians as Russia has been an ally of the British-Americans should not have been done. Please take note it and do what you consider & fit.

(Sd/- J. Nehru)

କେବଳ ଏତିକି ନୁହେଁ, ଦେଶ ସ୍ୱାଧୀନ ହେବା ପୂର୍ବରୁ ବ୍ରିଟିଶ ସରକାରର ସର୍ତ୍ତ ଯେ, ସୁଭାଷ ବୋଷଙ୍କର ଜୀବିତ କିମ୍ବା ମୃତ ଶରୀରକୁ ଭାରତ ଯଦି ପାଏ, ତେବେ ତାହାକୁ ଭାରତ ସରକାର ବ୍ରିଟିଶ ସରକାରଙ୍କୁ ହସ୍ତାନ୍ତର କରିବ । ଏହାର ସତ୍ୟତା ପାଇଁ ଲେଖକ ଏବେବି ଚିନ୍ତିତ କାରଣ ଏ ସର୍ତ୍ତରୁ ମୁକୁଳିବା ପାଇଁ ଭାରତର କଂଗ୍ରେସ ସରକାର ଚେଷ୍ଟାରୁ ବିରତ ଅଛନ୍ତି ଓ ତଥା କଥିତ କଂଗ୍ରେସ ନେତାମାନେ ଏ ବିଷୟରେ କେତେଦୂର ସଚେତନ ତାହା ସମୟ ହିଁ କହିବ ।

ସେ ଭାରତର ଜନ ସମୂହକୁ ଚେତାଇ ଦେବାପାଇଁ କହିଥିଲେ ଯେ ଶ୍ରମ ସମ୍ପଦ ହି ଜନ ସମ୍ପଦକୁ ସଙ୍ଗରେ ନେଇ ଭାରତ ଭୂ–ଖଣ୍ଡକୁ ବ୍ରିଟିଶ୍ ଶାସନଠାରୁ ଦୂରେଇ ରଖିବାକୁ ସକ୍ଷମ ହେବ । କିନ୍ତୁ ଆଜି ଯେହେତୁ ଧନ ସମ୍ପଦରେ ମତୁଆଲା ନେତାମାନେ ଦେଶକୁ ଶାସନ କରିବାକୁ ଲାଳାୟିତ ଓ ଗରିବ, ଚାଷି, ମୂଲିଆ, ବନବାସୀ ଆଦିବାସୀଙ୍କ ରକ୍ତ ଶୋଷିବାରେ ବ୍ୟସ୍ତ । ତେଣୁ ଯେଉଁମାନଙ୍କ ପାଇଁ ସେମାନେ ଗାଦିସୀନ ତାଙ୍କୁ ଭୁଲି ଗଲେଣି । ବିକାଶ ନାମରେ କରି ଚାଲିଛନ୍ତି ବିନାଶର ଜୟଗାନ । ଯେଉଁମାନଙ୍କ ଲହୁ–ଲୁହରେ ଭାରତ ଆଜି ସ୍ୱାଧୀନ, ସେଇମାନଙ୍କୁ ବିଦ୍ରୂପ କରି ଝରାଉଛନ୍ତି ଆକାଶରୁ ଫୁଲ ଆଉ ଉଡ଼ାଉଛନ୍ତି ତ୍ରିରଙ୍ଗା ନେତ । କେବଳ ସେଇ ପୂର୍ବ ସୂରୀମାନେ କହିପାରିବେ ଏହା ତାଙ୍କର ଲୁହ କିମ୍ବା ରକ୍ତ । ତେଣୁ ସେଇ ବୀର ସହିଦ୍‌ମାନଙ୍କୁ ଭୁଲିଯିବାକୁ ବସିଛି ଭାରତ ମାତା ଓ ତାର ଜନସମୁଦାୟ । ଏ ପରିପ୍ରେକ୍ଷୀରେ ସଚ୍ଚି ରାଉତରାୟଙ୍କର ଗୋଟିଏ ଉକ୍ତି ଉଦ୍ଧାର କରିବି ଦେଶବାସୀଙ୍କୁ ସଚେତନ କରାଇବା ପାଇଁ ।

ଶାସନ ଆସନେ ବସି ତସ୍କର
ଶୋଷଇ ତୁମର ଆୟୁ
ସଭ୍ୟତା ନାମେ ଲୁଣ୍ଠନ ପେଷା
ଚିପୁଡି ତୁମର ସ୍ନାୟୁ
ଛଦ୍ମ ବେଶରେ ଶୋଷଣ ବାବତ
ଚିପୁଛି ତୁମର ବେକ
ଚାରିଆଡ଼େ ଲଘେ ଧୂସ ବାଦଲ
ସମାରୋହ ଅଭିଷେକ

ଆଜିର ସ୍ୱାଧୀନତା ଦିବସରେ ଭାରତର ସେହି ହଜାର ହଜାର ଦେଶଭକ୍ତ, ସହିଦଙ୍କର ଚରଣ ତଳେ ଲେଖକର କୋଟି କୋଟି ପ୍ରଣାମ ।

୮୬୭, ଭୀମଟାଙ୍ଗୀ,
ଭୁବନେଶ୍ୱର–୭୫୧୦୦୨



# ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ପର୍ବ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଓ ନବାଙ୍କ ନୀତି ତିନି ଦିନ ବ୍ୟାପୀ କରାଯାଏ । ମାସନ୍ତ ପୂର୍ବଦିନ ଶ୍ରୀନ୍ଦିରରେ ଦୁଧ ମେଲାଣ ଉପଲକ୍ଷେ ସ୍ୱତନ୍ତ୍ର ନୀତି ଅନୁଷ୍ଠିତ ହୋଇଥାଏ । ଉକ୍ତଦିନ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣ ଘରୁ ରାମକୃଷ୍ଣ ରତ୍ନସିଂହାସନକୁ ବିଜେକରି ଆଜ୍ଞାମାଳ ପ୍ରାପ୍ତ ହେବା ପରେ କଳ୍ପବଟ ନିକଟରେ ପ୍ରସ୍ତୁତ ହୋଇଥିବା ପାଲିଙ୍କିରେ ବଡ଼ଦାଣ୍ଡ ଦେଇ ଛୋଟରାୟପୁର (ଶ୍ରୀନଅର ସମ୍ମୁଖ)ଠାରେ ବିଜେ କରନ୍ତି । ସେଠାରେ ଗଉଡ଼ମାନେ ସଂଗ୍ରହ କରିଥିବା ଦୁଧ ଭାରମାନ ବାଘମୁହାଁ ବାନ୍ଧି କୋଠ ମହାଭୋଇଙ୍କୁ ଦିଅନ୍ତି ଓ ମହାଭୋଇ ଶ୍ରୀମନ୍ଦିରକୁ ଆଣନ୍ତି । ଏହାପରେ ପାଲିଙ୍କି ସହ ସେବକ ମହାଭୋଇ ଘଣ୍ଟାଛତା କାହାଳୀ ପଟୁଆରରେ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ସେଠାରେ ମହାଭୋଇ ଗୋଦୋହନ କରି ପାଲିଙ୍କି ସହ ଦୁଧ ଭାରମାନ ଘେନି ଶ୍ରୀମନ୍ଦିର ନାଟମନ୍ଦିର ସାମ୍ନାକୁ ଆସନ୍ତି । ସେଠାରେ ଭିତରଚ୍ଛ ମଣୋହି କରାଇବା ପରେ ରାମକୃଷ୍ଣ ମହାଲକ୍ଷ୍ମୀ ମନ୍ଦିରରେ ଖଟଶେଯରେ ବିଜେ ହୋଇ ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଦୁଧ ମେଲାଣ ନୀତି ପରେ ଦକ୍ଷିଣ ଘରକୁ ବାହୁଡ଼ା ବିଜେ କରନ୍ତି ।

ମାସନ୍ତ ଦିନ ସନ୍ଧ୍ୟା ଆରତୀ ପରେ ନବାଙ୍କ ପର୍ବରେ ଚାଉଳ ମେଲାଣ ନୀତି ନିମନ୍ତେ ସିଂହଦ୍ୱାର ଚକଡ଼ା ଉପରେ ପାହାଡ଼ା ପଡ଼ି ଧାନ ଘରଠାରୁ ବେରଭୋଇ, ପ୍ରଧାନ ଚାଉଳ ବିଜେ କରାନ୍ତି । ଏଠାରେ ପ୍ରଧାନ, ଭୋଇ ବାଘମୁହାଁ ବାନ୍ଧି ତିନୋଟି ଥାଳିରେ ପାଞ୍ଚଜଣ ଲେଖାଏଁ ଚାଉଳ ମାପି ରଖନ୍ତି । ଏହାପରେ ତଳୁଛ, ପ୍ରଧାନୀ ଓ କୋଠଭୋଗ ଯୋଗାଣିଆ ବାଘମୁହାଁ ବାନ୍ଧି ଘଣ୍ଟଛତା କାହାଳୀ ସହ ପଟୁଆରରେ ଶ୍ରୀମନ୍ଦିରକୁ ଏକଥର ବେଢ଼ା ପରିକ୍ରମା କରି ଇନ୍ଦ୍ରାଣୀ ମନ୍ଦିରର ସମ୍ମୁଖ ବେଢ଼ାରେ ଚାଉଳ ଥାଳିମାନ ରଖନ୍ତି । ମାସନ୍ତ ଦିନ ମଧ୍ୟାହ୍ନ ଧୂପ ପରେ ଅଠରନଳା ନିକଟସ୍ଥ ଆଳାମଚଣ୍ଡୀଙ୍କ ମନ୍ଦିରରୁ ମକରତାଡ଼ ପଟୁଆରରେ ଶ୍ରୀମନ୍ଦିରକୁ ଆସିଥାଏ । ସନ୍ଧ୍ୟା ଧୂପ ପରେ ଏହି ଚାଉଳ ଥାଳି ଓ ତାଡ଼ମାନ ଭୋଗମଣ୍ଡପ ଘରେ ଅଧିବାସ କରି ରଖାଯାଏ । ମକର ସଂକ୍ରାନ୍ତି ଦିନ ଏହି ଚାଉଳ ମକରଚାଉଳ ଭୋଗରେ ବ୍ୟବହାର ବିଧି ଅଟେ ।

ସେହିପରି ମାସନ୍ତ ଦିନ ଫୁଲମେଲାଣ ନୀତି ନିମନ୍ତେ ମାଳିମାନେ ବାଘମୁହାଁ ବାନ୍ଧି ମାଳଚୂଳ, ଜଳକବରମାନ ଧରି ଘଣ୍ଟଛତା କାହାଳୀ ସହ ତଳୁଛ ପଟୁଆରରେ ଶ୍ରୀମନ୍ଦିରକୁ ଏକ ଥର ବେଢ଼ା ବୁଲନ୍ତି । ସନ୍ଧ୍ୟା ଆଳତୀ ବେଶ ଲାଗି ପାଳିଆ ଖୁଣ୍ଟିଆଙ୍କୁ ପ୍ରଦାନ କରନ୍ତି । ଏହି ଦିନ ବଡ଼ ସିଂହାର ବେଶରେ ସୋଲ, ଜରି, କଇଁଥ ଅଠାରେ ପ୍ରସ୍ତୁତ ଶଙ୍ଖଚକ୍ର, ହଳମୂଷଳ, ମକରକୁଣ୍ଡଳ, ତଡ଼ଗୀ ଇତ୍ୟାଦି ଶ୍ରୀବିଗ୍ରହମାନେ ଲାଗି ହୁଅନ୍ତି । ଏହି ବେଶକୁ ନବାଙ୍କ ବେଶ କୁହାଯାଏ । ଭୋଗମଣ୍ଡପ ଗୃହ ପୂର୍ବରୁ ଧୁଆ ହୋଇ ଚାନ୍ଦୁଆ ବନ୍ଧା ହୋଇଥିବା ସ୍ଥାନରେ ପର୍ବଯାତ୍ରା ଯୋଗାଣିଆ ତିନୋଟି ବାଉଁଶିଆରେ ଚାଉଳ ପୂରାଇ ଭଦ୍ରାସନରେ ମୁରୁଜ କାଟି ରଖନ୍ତି । ପରେ ଚେମେଡ଼ି, ପତନି, ଫୁଲ, ଚନ୍ଦନ ଦେଇ ଅଧିବାସ କରିବା ପରେ ତଢ଼ାଉ ମୁଦ ଦିଅନ୍ତି । ଏହାପରେ ବଡ଼ସିଂହାର ବେଶ ହୋଇସାରି ବଡ଼ସିଂହାର ଭୋଗ ଛାମୁକୁ ଆସିଥାଏ ।

ଭୋଗ ଆସିଲା ପରେ ଦକ୍ଷିଣଘରୁ ମଦନମୋହନ ରତ୍ନସିଂହାସନକୁ ବିଜେ କରନ୍ତି ଓ ତିନିବାଡ଼ରେ ତିନିଜଣ ପାଳିଆ ପୂଜାପଣ୍ଡା ଭୋଗ ଲଗାନ୍ତି । ଏହି ଭୋଗ ସମୟରେ ଟେରା ପଡ଼ିବା ପୂର୍ବରୁ ମହାଜନ, ପାଳିଆ ଖୁଣ୍ଟିଆ, ଗରାବଡୁ, ଅଖଣ୍ଡ ଭିତରେ ରହନ୍ତି । ଭୋଗ ସରିଲା ପରେ ଆଜ୍ଞାମାଳ ପାଇ ମଦନମୋହନ ମହାଜନଙ୍କ ହତାରେ ରତ୍ନସିଂହାସନ ଚାରିପଟେ ସାଢ଼େ ଚାରିବେଢ଼ା ବୁଲନ୍ତି ଏବଂ ପ୍ରତି ବେଢ଼ାର ଆରମ୍ଭ ବେଳକୁ ଟେରା ନିକଟରେ ପ୍ରଧାନୀ ରହି କାହାଳୀଆକୁ ଡାକ ଦିଅନ୍ତି । ବେଢ଼ା ସରିଲା ପରେ

ଟେରା ଫିଟାଯାଏ । ଏହାପରେ ଆଜ୍ଞାମାଳ ପାଇ ମଦନମୋହନ ପାଲିଙ୍କିରେ ବିଜେ ହୋଇ ଶ୍ରୀନ୍ଦିରର ଚାରିପଟେ ଘଣ୍ଟଛତା କାହାଳୀ ପଟୁଆରରେ ସାଢ଼େ ଚାରିବେଢ଼ା କରି ଜୟବିଜୟ ଦ୍ୱାର ଲଣ୍ଡାବର୍ତ୍ତକୁ ବିଜେ କରନ୍ତି । ସେଠାରେ ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଦକ୍ଷିଣଘରକୁ ବାହୁଡ଼ା ବିଜେ କରନ୍ତି ।

ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଉପଲକ୍ଷେ ରାତ୍ରରୁ ଦ୍ୱାର ଫିଟା ହୋଇ ଭିତରଶୋଧ, ମଙ୍ଗଳଆରତୀ ଓ ତଡ଼ପ ଲାଗି, ଭୋରୁ ଅବକାଶ ନୀତି ଶେଷ ହେବା ପରେ ଫୁଟା ପହରଣା ଲାଗିହୋଇ ତ୍ରିମୁଣ୍ଡିରେ ମକରଚୂଳ ଲାଗି ସହିତ ମାଳଫୁଲ ଓ କର୍ପୂର ଲାଗି ପରେ ଶ୍ରୀବିଗ୍ରହମାନଙ୍କର ବେଶ ଶେଷ ହୁଏ । ଏହାପରେ ରୋଷହୋମ, ସୂର୍ଯ୍ୟପୂଜା ଓ ଦ୍ୱାରାପାଳ ପୂଜା ହୋଇଥାଏ । ପାଣିପଡ଼ି ସକାଳ ଗୋପାଳବଲ୍ଲଭ ନୀତି ଓ ସକାଳ ଧୂପ କୋଠ ଭୋଗ ହୁଏ । ପରେ ତିନିବାଡ଼ରେ ମୈଲମ ହୋଇ ଯାତ୍ରାଙ୍ଗୀ ମହାସ୍ନାନ, ଘଣ୍ଟଛତା, ଘଟୁଆରୀ ଘରୁ ଚନ୍ଦନ ବିଜେ ହୋଇ ସର୍ବାଙ୍ଗ ଚନ୍ଦନଲାଗି, ନୂଆ ଲୁଗା ଲାଗି, ମାଳଚୂଳ ଲାଗି ହେବା ପରେ ଛଅମୂର୍ତ୍ତି ଅଳଙ୍କାର ଲାଗି ହୋଇ ମକର ବେଶ ଶେଷ ହୁଏ । ଏହାପରେ ଘଣ୍ଟଛତା, ପାଣିପଡ଼ି ମଧ୍ୟାହ୍ନ ଧୂପ, ଚତୁର୍ଦ୍ଧା ମୂର୍ତ୍ତିଙ୍କର ଅପରାହ୍ନ ଘଣ୍ଟଛତା, ମକରବେଢ଼ା ଓ ଭୋଗ ହୋଇଥାଏ । ପରେ ଦକ୍ଷିଣଘର ଭୋଗ, ଭୋଗମଣ୍ଡପ ଓ ସାହାଣମେଲା ଦର୍ଶନ ହୁଏ । ରୋଷରୁ ଘଣ୍ଟଛତା କାହାଳୀ ସହ ତଳିଛ ପ୍ରଧାନୀ ହାତ ପୈଠ ପୂର୍ବକ ଭୋଗ ପଟୁଆରରେ ଛାମକୁ ଆସିଥାଏ । ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ତିନିଜଣ ପାଳିଆ ପୂଜା ପଣ୍ଡା ଷୋଡ଼ଶୋପଚାରରେ ମଧ୍ୟାହ୍ନ ଧୂପ ପୂଜା କରନ୍ତି । ମଧ୍ୟାହ୍ନ ଧୂପ ଟେରା ପଡ଼ିବା ପରେ ମହାପ୍ରଭୁଙ୍କ ବାଡ଼ର ପାଳିଆ ପୂଜାପଣ୍ଡା, ପତ୍ରୀବଡୁ, ସୁଆରବଡୁ ଓ ଗରାବଡୁଙ୍କ ସମେତ ରୋଷପାଇକ ଏକ ଓଳି ଅନ୍ନ ଧରି ବାହାରକୁ ଆସି ଭିତର ବେଢ଼ାରେ ଆଠଗୋଟି ସ୍ଥାନରେ ଅଷ୍ଟ ଦିଗପାଳମାନଙ୍କୁ ଦିଗବଳି ଦେଇ ବଳିନୀତି ଅନୁଷ୍ଠିତ ହୋଇ ଭିତରକୁ ଯାଇ ମଣୋହି ହୋଇ ଭୋଗ ଶେଷହୁଏ । ଭିତର ପୋଖରିଆ ଅଞ୍ଚଳ ଧୋପଖାଳ ହୋଇ ଟେରାବନ୍ଧା ହୋଇ ଭୋଗମଣ୍ଡପ ଗୃହକୁ ମକରଭୋଗ ନିମନ୍ତେ ପ୍ରତିହାରୀ ବେତଧରି ଡାକନ୍ତି । ପୂର୍ବଦିନରୁ ସୁଦ୍ଧସୁଆର ଦ୍ୱାରା ନଡ଼ିଆ, ଘିଅ, ଶର୍କରା, ମିଠା, ଲହୁଣୀ, ମସଲା ଓ ଦୁଧ ସରରେ ପ୍ରସ୍ତୁତ ହୋଇ ଭୋଗମଣ୍ଡପ ଘରେ ଅଧିବାସ ହୋଇ ରହିଥିବା ମକରଚାଉଳକୁ ପନ୍ତିବଡୁ ସେବକମାନେ ବାଘମୁହାଁ ବାନ୍ଧି ଘଣ୍ଟଛତା କାହାଳୀ ସହ ତଳୁଛ ପଟୁଆରରେ ମୁଖ୍ୟ ମନ୍ଦିରକୁ ତିନିଥର, 'ମକର ବେଢ଼ା' ପରିକ୍ରମା କରି ଛାମୁରେ ତିନୋଟି ରୂପା ଥାଳିରେ ପନ୍ତିରେ ବାଢ଼ନ୍ତି । ରୋଷରୁ 'ମକର ଚଉରାଶୀ' ଭୋଗ ଘଣ୍ଟଛତା କାହାଳୀ ସହ ତଳୁଛ ପଟୁଆରରେ ଛାମୁକୁ ଆସିଥାଏ । ମହାଭୋଇ ସେବକମାନେ ବାଘମୁହାଁ ବାନ୍ଧି ଦୁଧ ଘରଠାରୁ ଦହି ଉପରୋକ୍ତ ପ୍ରକାରେ ପଟୁଆରରେ ବିଜେ କରାଇ ମୁଖ୍ୟ ମନ୍ଦିରକୁ ଥରେ ପରିକ୍ରମା କରି ମହାସୁଆରଙ୍କୁ ଦେବାରେ ତାହା ଛାମୁରେ ପନ୍ତିରେ ବଢ଼ାଯାଏ । ପରେପରେ ଗୁଡ଼ିଆ ସେବକମାନେ ପୂର୍ବୋକ୍ତ ପ୍ରକାରେ ସାକର, ଫେଣା ଏବଂ ହଡ଼ପନାୟକ ସେବକମାନେ ନଳିପାନ ଓ ଛାଚିପାନ ଚାଙ୍ଗୁଡ଼ି ବେଢ଼ା କରି ଭୋଗରେ ବାଢ଼ିବା ପାଇଁ ମହାସୁଆରଙ୍କୁ ଦିଅନ୍ତି । ମୁଦିରସ୍ତ ସେବକ ପ୍ରସାଦ ଲାଗି କରିବା ପରେ ତିନିଜଣ ପାଳିଆ ପୂଜାପଣ୍ଡା ଉପରୋକ୍ତ ସମସ୍ତ ଭୋଗ ପଞ୍ଚୋପଚାରରେ ମଣୋହି କରାଇଥାନ୍ତି । ଟେରା ଫିଟିଲା ପରେ ପୂଜାପଣ୍ଡା, ପତିମହାପାତ୍ର ଏବଂ ମୁଦିରସ୍ତ ସେବକ ତିନିବାଡ଼ରେ ବନ୍ଦାପନା କରନ୍ତି । ଏହାପରେ ସନ୍ଧ୍ୟା ଆଳତି, ସନ୍ଧ୍ୟା ଧୂପ, ରାତ୍ର ଚନ୍ଦନ ଲାଗି, ବଡ଼ସିଂହାର ବେଶ, ବଡ଼ସିଂହାର ଭୋଗ ହୋଇ ରାତ୍ର ପହୁଡ଼ି ହୁଏ । ମକର ସଂକ୍ରାନ୍ତି ଦିନ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ରାଜସୂୟ ଯଜ୍ଞର ଫଳ ମିଳିଥାଏ ବୋଲି 'ନୀଳାଦ୍ରି ମହୋଦୟ'ରେ ଉଲ୍ଲେଖ ରହିଛି ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଗ୍ରହରାଜ ଭାବରେ ଗ୍ରହଣ କରାଯାଇଥାଏ । ତେଣୁ ମହାପ୍ରଭୁଙ୍କର ଶ୍ରେଷ୍ଠ ଦ୍ୱାଦଶଯାତ୍ରା ମଧ୍ୟରେ ମକର ସଂକ୍ରାନ୍ତି ଦିନ ଅନୁଷ୍ଠିତ ହେଉଥିବା ଉତ୍ତରାୟଣ ଯାତ୍ରା ଅନ୍ୟତମ । ଏ ସମ୍ପର୍କରେ ସ୍କନ୍ଦ ପୁରାଣ ବିଷ୍ଣୁଖଣ୍ଡରେ ଉଲ୍ଲେଖ ରହିଛି ଯେ ପୂର୍ବ କଳ୍ପରେ ମହର୍ଷି କଶ୍ୟପ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରୀତି ନିମନ୍ତେ ଏହି ମହୋତ୍ସବ ପାଳନ କରିଥିଲେ । ଏହି ମହାପୁଣ୍ୟମୟ ମକର ସଂକ୍ରାନ୍ତି ଦିନ ତୀର୍ଥରାଜ ମହୋଦଧିଙ୍କ ଜଳରେ ସ୍ନାନ କରି କଳ୍ପବୃକ୍ଷ ପ୍ରଦକ୍ଷିଣ ପୂର୍ବକ ଶ୍ରୀଜଗନ୍ନାଥ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କଲେ ସ୍ନାନ, ଦାନ, ତପ, ହୋମ, ସ୍ୱାଧ୍ୟାୟ ସମସ୍ତ ଫଳ ଏକତ୍ର ପ୍ରାପ୍ତି ହୋଇଥାଏ ବୋଲି ସ୍କନ୍ଦ ପୁରାଣରେ ସ୍ୱୟଂ ଜୈମିନୀ ଋଷି ମତବ୍ୟକ୍ତ କରିଛନ୍ତି । ପୁନଶ୍ଚ ଲୋକବିଶ୍ୱାସ ରହିଛି ଯେ ମହାଲକ୍ଷ୍ମୀ ଧନୁ ସଂକ୍ରାନ୍ତିଠାରୁ ନିଜ ପିତୃଗୃହକୁ ଯାତ୍ରା କରି ମକର ସଂକ୍ରାନ୍ତି ଦିନ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ସେ ସାଙ୍ଗରେ ଆଣିଥିବା ପାନଗୁଆ, ମକର ଚାଉଳ, ଧନୁମୁଆଁ ଆଦି ଶ୍ରୀଜଗନ୍ନାଥଙ୍କୁ ଭୋଗ ଲାଗି ହୋଇଥାଏ ।

ଏ.ଏଲ୍‌.–୫୩, ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର



# ଯୁବଶକ୍ତି ବନାମ ଛାତ୍ରଶକ୍ତି

**ବିନ୍ଦୁ ବଳୟ ଦାଶ**

ଗୋଟିଏ ଦେଶ ବା ଜାତିର ଭବିଷ୍ୟତ ଗଠନ ପାଇଁ ଛାତ୍ରଶକ୍ତି ବା ଯୁବଶକ୍ତି ହିଁ ମୂଳ ଉତ୍ସ। ଛାତ୍ରଶକ୍ତି ସଦାସର୍ବଦା ସ୍ୱପ୍ନବାଦୀ। ସେମାନଙ୍କ ସ୍ୱପ୍ନର ପରିକଳ୍ପନାରେ ଥାଏ ଆଗାମୀ ଦିନର ଏକାଧିକ କର୍ମପ୍ରବଣତା ଅବା କର୍ମଚେତନାର ଆଧାର। ତେବେ ଯୁବଶକ୍ତିର ଉକ୍ତ ସ୍ୱପ୍ନ ମହତ ଉଦ୍ଦେଶ୍ୟ ହେବା ଉଚିତ। ଯୁବଶକ୍ତିର ସ୍ୱପ୍ନର ଲକ୍ଷ୍ୟ ଯଦି ଆରମ୍ଭରୁ ଓଲଟି ଯାଏ, ନକାରାତ୍ମକ ହୁଏ, ବିକୃତ ମାନସକତାକୁ ଗତିକରେ ତେବେ ଗୋଟିଏ ଦେଶ କାହାକୁ ନେଇ ଗର୍ବ କରିବ। ମାଟି ମା' କେଉଁ ସନ୍ତାନ ଉପରେ ଭରସା କରିବ? ମା' ମାଟିର ସ୍ୱପ୍ନ ତ ଠୁଳ ହୋଇଥାଏ ତାର ଯୁବସୁଲଭ ଚପଳତାଭରା ଛାତ୍ରଶକ୍ତି ଉପରେ। ଛାତ୍ରଶକ୍ତି ଯଦି ବିଶୃଙ୍ଖଳିତ ହେବେ, ସେମାନେ ଯଦି ନିଜ ଦାୟିତ୍ୱ ଭୁଲିଯିବେ, ନିଜ ଭିତରେ କ୍ରାନ୍ତି ପରିବର୍ତ୍ତେ କ୍ଳାନ୍ତି ଅନୁଭବ କରିବେ, ବଡ଼ ବଡ଼ିଆଙ୍କ ଅନୈତିକ କାର୍ଯ୍ୟରେ ହଁ–ହଜୁର ହେବେ... ଅନ୍ୟାୟକୁ ସହିଯାଇ ଯେନତେନ ପ୍ରକାରେ ନିଜ ସ୍ୱାର୍ଥ ହାସଲ କରିନେବେ ସତ୍ୟକୁ ସାମନା କରିବାରେ ପଛଘୁଞ୍ଚା ଦେବେ, ତେବେ ଏମାଟି... ଏ ଦେଶର ଭାଗ୍ୟ କ'ଣ ହେବ। ଭବିଷ୍ୟତ କ'ଣ ହେବ? କାହାକୁ ନେଇ ଭାରତ ମା' ଗର୍ବ କରିବ...? 'ଛାତ୍ରଶକ୍ତି' ବିରାଟ ଶକ୍ତି ଏଜାତିର, ଏ ଦେଶର। ନିଜ ଭିତରେ ଅସୀମ ଧୈର୍ଯ୍ୟ, ଅଧ୍ୟବସାୟ, କର୍ତ୍ତବ୍ୟକୁ ନେଇ ଆଗକୁ ଆସିବାର ଏକମାତ୍ର ଉତ୍ସ ଛାତ୍ରଶକ୍ତି। ଅନ୍ୟାୟ, ଅନୀତି, ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାର ଶକ୍ତି ରହିଛି କେବଳ ଛାତ୍ରମାନଙ୍କର।

କିନ୍ତୁ ଦେଖାଯାଉଛି, ବେଳେ ବେଳେ ଛାତ୍ରଶକ୍ତି ବା ଯୁବଶକ୍ତି ସେମାନେ ନିଜକୁ ଅକ୍ଷମ, କ୍ଳାନ୍ତ ମନେ କରୁଛନ୍ତି । ବାସ୍ତବ କ୍ଷେତ୍ରରେ ବିନା ଯୁକ୍ତି, ବିଜ୍ଞାନ, ଦର୍ଶନର ପ୍ରୟୋଗ ନକରି ସବୁକୁ ମାନି ନେଉଛନ୍ତି । ଶାସନଠାରୁ ପ୍ରଶାସନ ପର୍ଯ୍ୟନ୍ତ ଘଟୁଥିବା ଅବିଚାରକୁ ସାମନା କରିବାକୁ ପଛଘୁଞ୍ଚା ଦେଉଛନ୍ତି। କାହିଁକି ଏପରି ଘଟୁଛି। କାହିଁକି ଛାତ୍ରଶକ୍ତି ଭିତରୁ ସାହସ, ସଚେତନତା ଦୂରେଇ ଯାଉଛି। ସେ ଶକ୍ତି କ'ଣ ସତରେ ଅସମର୍ଥ, ସତରେ କ'ଣ କଳେବଳେ କୌଶଳେ ନିଜେ ନିଜର କାର୍ଯ୍ୟ ହାସଲ କରିବା ପାଇଁ ତା'ର ଏ ପ୍ରକାର ସ୍ଥାଣୁତା...। ଯଦି ଛାତ୍ରଶକ୍ତି ନିଜକୁ କ୍ଳାନ୍ତ ଭାବିବ, ଆମେ ଏକଥା କରିପାରିବୁନି ବୋଲି ଚିତ୍କାର କରିବା– ତେବେ ଏ ଦେଶର ଆବଶ୍ୟକତାକୁ ପୂରଣ କରିବ କିଏ? ଅନ୍ୟକୁ ଠକି– ସୁଖ ସ୍ୱାଚ୍ଛନ୍ଦ୍ୟରେ ଦିନ ବିତେଇବାକୁ ଚାହୁଁଥିବା ସ୍ୱାର୍ଥପର ମଣିଷମାନେ କ'ଣ ଦେଶର ଅଭାବକୁ ପୂରଣ କରିପାରିବେ?

ଯେଉଁ ଛାତ୍ରମାନେ ଏ ଦେଶର ଭବିଷ୍ୟତ, ଏଦେଶର ନିୟାମକ, ସେଇମାନେ କିନ୍ତୁ ଆଜି ନାନା ପ୍ରଶ୍ନ ଭିତରେ ଉବୁଟୁବୁ। ସେମାନେ କେବେ ବିକ୍ଷୋଭରେ ସାମିଲ ତ କେବେ ଶସ୍ତା ରାଜନୈତିକ ଗଣଦୌଡ଼ରେ ସାମିଲ, କେବେ ପୁଣି ଏକାଧିକ ଶୃଙ୍ଖଳା ଭଙ୍ଗ କାର୍ଯ୍ୟରେ ଲିପ୍ତ। କେଉଁଠି ପରୀକ୍ଷା ବର୍ଜନ... କଲେଜରେ ଅଘଟଣ ଇତ୍ୟାଦି ଘଟାଇବାକୁ ପଛାଉ ନାହାନ୍ତି। ଏପରି କାହିଁକି ହେଉଛି, ସେମାନଙ୍କର କ'ଣ ଅଭାବ ଘଟୁଛି.. ସେମାନେ କ'ଣ ସେମାନଙ୍କ ଅଧିକାରରୁ ବଞ୍ଚିତ ହେଉଛନ୍ତି, କାହିଁକି ସେମାନଙ୍କ ମଧ୍ୟରେ ଧୈର୍ଯ୍ୟ, ନିଷ୍ଠା, ନୀତି ନୈତିକତାର ଅଭାବ ଦେଖାଯାଉଛି, ସେ ସଂପର୍କରେ ଆମ ବୁଦ୍ଧିଜୀବୀ ମହଲ, ପ୍ରଶାସନ, ଶାସକ କେବେ ଗୁରୁତର ସହ ଚିନ୍ତା କରିଛନ୍ତି କି?

ଯୁଗେ ଯୁଗେ ଗୁରୁ ଛାତ୍ରମାନଙ୍କର ମାର୍ଗ ଦର୍ଶକ ସାଜିଥାନ୍ତି। କିନ୍ତୁ ଏବେ ଅଧିକାଂଶ ଗୁରୁ ଛାତ୍ରମାନଙ୍କ ମାର୍ଗଦର୍ଶକ ବା ଶୃଙ୍ଖଳା ଜ୍ଞାନର ପ୍ରବର୍ତ୍ତକ ଅପେକ୍ଷା, ସେମାନଙ୍କୁ ନାନା ଅସାଧୁ ଉପାୟ ଅବଲମ୍ବନରେ ମାର୍କସିଟ୍‌ରେ ନମ୍ବର ବଢ଼େଇବାର ପଥ ଦେଖାଇ ଦେଇ, ଜଣେ ଶ୍ରେଷ୍ଠ ଗୁରୁର ବାହାସ୍ଫୋଟ ମାରୁଛନ୍ତି । ଏଭଳି



ଗୁରୁମାନେ ଛାତ୍ରମାନଙ୍କର ଅଭିଭାବକଙ୍କ ବିତ୍ତ ଅପହରଣ କରନ୍ତି, କିନ୍ତୁ ଛାତ୍ରର ସନ୍ତାପ ହରଣ କରିପାରନ୍ତି ନାହିଁ। ଅସଲି ରତ୍ନ ନାମରେ କପିର ନକଲି କାଗଜ ଖଣ୍ଡେ ଧରାଇ ଦେଇଥାନ୍ତି। ଆଜିକାଲି ଏକାଧିକ ନକଲି ଶସ୍ତା ଉପାୟରେ ଧନ ଅର୍ଜନ କରିବାକୁ ଲକ୍ଷ୍ୟ ରଖିଥିବା ଗୁରୁଙ୍କ ହେତୁ ପାଠପଢ଼ା ତପସ୍ୟା ନହୋଇ ଏକରକମ ତାମସାରେ ପରିଣତ ହେଲାଣି। ଛାତ୍ରମାନଙ୍କର କର୍ତ୍ତବ୍ୟ କ'ଣ ହେବା ଉଚିତ, ଦେଶପାଇଁ ସେମାନଙ୍କର ଦାୟିତ୍ୱ କ'ଣ ହେବା ଉଚିତ ସେ ସଂପର୍କରେ ଆଜିର ଛାତ୍ର ଜାଣିବାର ସୁଯୋଗ ଖୁବ୍ କମ୍ ପାଉଛି। କାରଣ ସବୁଠି ପ୍ରତିଯୋଗିତା, ମାର୍କସିଟ୍‌ର ନମ୍ବର ଉପରେ। ତେବେ ଛାତ୍ରଶକ୍ତି ସବୁବେଳେ ମନେରଖିବା ଉଚିତ, ଯୋଗ୍ୟତାଭିତ୍ତିକ ମାର୍କସିଟ୍ ସହିତ ଜୀବନରେ ଶାନ୍ତି, ସ୍ନେହ, ପ୍ରେମ, ଧୈର୍ଯ୍ୟର ସହ ବଞ୍ଚିବା ଓ କର୍ତ୍ତବ୍ୟ ପାଇଁ ଗୋଟାଏ ମାର୍କସିଟ୍ ଦରକାର। ଆଜି ପର୍ଯ୍ୟନ୍ତ ଛାତ୍ରମାନେ ଭୂଗୋଳ, ଇତିହାସ, ଗଣିତ, ବିଜ୍ଞାନ, ସାହିତ୍ୟରେ ଯେଉଁମାନଙ୍କର କଥା ପଢ଼ନ୍ତି, ଯେଉଁମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାକୁ ପ୍ରେରଣା ପାଆନ୍ତି, ସେମାନେ ପ୍ରାୟତଃ ସାଧାରଣ ମଣିଷ ବା କମନ ମ୍ୟାନ୍। ସେମାନଙ୍କର ଶିକ୍ଷା ବିଭାଗ ମାର୍କସିଟ୍ ଅପେକ୍ଷା ଜୀବନଭିତ୍ତିକ ମାର୍କସିଟ୍ ବେଶ ସୁଦୃଢ଼ ଥିଲା। ତେଣୁ ଯେଉଁଠି ଶସ୍ତା ଶିକ୍ଷାନୁଷ୍ଠାନ ଦ୍ୱାରା ଛାତ୍ରଶକ୍ତିଙ୍କୁ ଉଦ୍‌ଭ୍ରାନ୍ତ କରାଯାଏ, ଅନାଦର୍ଶ ପ୍ରତିଯୋଗିତା ଓ ଭବିଷ୍ୟତରେ ପ୍ରଚୁର ଧନ ରୋଜଗାରର ଲୋଭ ଦେଖାଯାଏ, ସେଠି ଜଣେ ଛାତ୍ର ଜୀବନର ଆଦର୍ଶ, ଦେଶ ଜାତିପାଇଁ କର୍ତ୍ତବ୍ୟ ସଂପର୍କରେ ସଚେତନ ବେଶୀ ନଥାଏ। ତା' ମୁଣ୍ଡରେ ପ୍ରଥମରୁ ଭର୍ତ୍ତି କରାଯାଉଛି– ଅମୁକ ବେସରକାରୀ କୋଚିଙ୍ଗରେ ପଢ଼ିଲେ– ସମୁକ ହୋଇ ବାହାରିବ। ଆଉ ବର୍ଷକୁ ଏତେ ପ୍ୟାକେଜରେ ବଡ଼ କମ୍ପାନୀ କିଣି ନେବେ। ଏଠାରେ ଛାତ୍ରଟି ଜାଣିଲା ଜୀବନ କହିଲେ କେବଳ ଅର୍ଥ ରୋଜଗାରର ମେସିନ୍‌ଟିଏ। ତେଣୁ ସେ ଭୁଲିଗଲା ତାର ସମାଜ, ପରିବାର, ଦେଶ ପ୍ରତି କର୍ତ୍ତବ୍ୟ। ବଞ୍ଚିବା ପାଇଁ ଅର୍ଥର ଆବଶ୍ୟକତା ରହିଛି– ତେବେ ବଞ୍ଚିବା ପାଇଁ ଅର୍ଥ ସର୍ବସ୍ୱ ଚାହିଦା ମେଣ୍ଟାଇ ନଥାଏ। ତେଣୁ ହେ ଛାତ୍ରଶକ୍ତି, ହେ ଯୁବଶକ୍ତି, ବିଦ୍ୟୁତ ଶକ୍ତିର ସମ୍ବନ୍ଧରେ ଜ୍ଞାନ ନଥାଇ ଏହାର ମରାମତି କଲେ ତାହା ବିପଦଜନକ ହୋଇପାରେ। ସେମିତି ସାମାଜିକ ସଂସ୍କାର ପ୍ରତି, ବିଜ୍ଞାନଦର୍ଶନ ପ୍ରତି ଧ୍ୟାନ ନଦେଇ ବା ପ୍ରକୃତ ଜ୍ଞାନ ଆହରଣ ନକରି, ସେସବୁକୁ ଜୀବନରେ ଅୟସ ଆରାମ ପାଇଁ ପ୍ରୟୋଗ ବେଳେବେଳେ ବିପଦ ଆଣିଥାଏ। ବିଜ୍ଞାନ କେବେ ଧ୍ୱଂସର କଥା କହିନି। ବିଜ୍ଞାନ କେବେ ଧ୍ୱଂସର କଥା କହିନି। ବିଜ୍ଞାନର ମୂଲ୍ୟ ନବୁଝି ଏହାକୁ କେବଳ ସୁଖସ୍ୱାଚ୍ଛନ୍ଦ୍ୟ ବା ଭୋଗବିଳାସ ପାଇଁ ବ୍ୟବହାର କରୁଥିବା ମଣିଷ ବିଜ୍ଞାନର ମୂଲ୍ୟ କିପରି ବୁଝିବେ ଯେ– ବିଜ୍ଞାନର ଅନ୍ତଃସୌନ୍ଦର୍ଯ୍ୟରେ ବି କଳାସଂସ୍କୃତି ଭରି ରହିଛି। ବିଜ୍ଞାନକୁ ଠିକ୍ ବାଟରେ ତାହାର ମୂଲ୍ୟକୁ ବୁଝି ପ୍ରୟୋଗ କରିବାର ଦାୟିତ୍ୱ ଯୁବଶକ୍ତି ବା ଛାତ୍ରଶକ୍ତିର। କିନ୍ତୁ ସେ ଯଦି ଷାଣ୍ଢ ପାଳଟିବ, ତଥାକଥିତ ଭୋଗବିଳାସଧାରୀଙ୍କ ପଦାଙ୍କ ଅନୁସରଣ କରିବ ଓ ନିଜର କର୍ତ୍ତବ୍ୟକୁ ଭୁଲି, ଅଧିକାର ସାବ୍ୟସ୍ତ ପାଇଁ ସର୍ବଦା ଅଗ୍ରଧାବନ କରିବ, ଆନ୍ଦୋଳନ ନାମରେ ଜାତୀୟ ସମ୍ପତ୍ତିକୁ ନଷ୍ଟ କରିବ, ତେବେ ଦେଶର ପ୍ରଗତିରେ ପ୍ରଶ୍ନବାଚୀ ସୃଷ୍ଟି ହୋଇପାରେ। ମନବୃତ୍ତି ନ ବଦଳିଲେ ଅନୀତିରେ ଠକି କି ଧନ ଠୁଳ କରିବାକୁ ରୋକି ହେବନି। ଆଇନ ହେଉଥିବ, ଖସିଯିବାର ବାଟ ମଧ୍ୟ ଦେଖାଯାଉଥିବ। ଉପରେ ଉପରେ ହେଉଥିବା ପରିବର୍ତ୍ତନକୁ ଭିତରେ ଭିତରେ ବିରୋଧ ହେଉଥିବ। ଏପରି ଆଚରଣକୁ ଯଦି ଯୁବଶକ୍ତି ଦେଖି ନ ଦେଖିଲାପରି ରହିବ, ତେବେ ଏ ମାଟି ମା' କାହା ଉପରେ ଭରସା ରଖିବ।

ସଂପ୍ରତି ଦେଖାଯାଉଛି– ଛାତ୍ରଶକ୍ତି ବା ଯୁବଶକ୍ତି ବା ଯୁବଶକ୍ତି ସତ୍ୟକୁ ସାମନା କରିବାର ସାହସ ବେଳେ ବେଳେ ହରାଇ ବସୁଛନ୍ତି। ଏହି ଅଭ୍ୟାସଟି ସଂକ୍ରାମକ ରୋଗ ଭଳି ବ୍ୟାପିଲାଣି। ଏମିତିକି ଆଜିର ଯୁବଶକ୍ତି ନିଜ ପିତାମାତାଙ୍କ ନିକଟରେ ମିଥ୍ୟା କହିବାକୁ ପଛଘୁଞ୍ଚା ଦେଉ ନାହାନ୍ତି। ତେଣୁ ଯେଉଁଠି ଛାତ୍ରଶକ୍ତି ବା ଯୁବଶକ୍ତି ସତ୍ୟ ଓ ନୈତିକଠାରୁ ଦୂରରେ– ସେଠାରେ ସେମାନଙ୍କଠାରୁ ଗୋଟିଏ ଦେଶ, ଜାତି କ'ଣ ଆଦର୍ଶ ଆଶା କରିବ। ରାଜନୈତିକ ପ୍ରଭାବ ମଧ୍ୟ ଅନେକ ସମୟରେ ଛାତ୍ରମାନଙ୍କୁ ବିଶୃଙ୍ଖଳା ଭିତରକୁ ଠେଲି ଦେଉଛି। ବାସ୍ତବତାକୁ ଚିନ୍ତାକଲା ପୂର୍ବରୁ ସେମାନେ ସେଇ ଜଟିଳ ପଥକୁ ଆବୋରି ନେଉଛନ୍ତି। ଗୋଟିଏ ଜାତି ପାଇଁ, ସମାଜ ପାଇଁ ଛାତ୍ରମାନଙ୍କର ଦାୟିତ୍ୱ କ'ଣ, ସେମାନଙ୍କର ଅବସ୍ଥାନ କେଉଁଠି, କ'ଣ ତାଙ୍କର ଆଦର୍ଶ, ଏକଥାକୁ ସେମାନଙ୍କୁ ନକହି ବରଂ ଶସ୍ତା ପରାମର୍ଶରେ କୁହନ୍ତି– ତୁମେ ସବୁ ଦେଶର ଭବିଷ୍ୟତ, ଏ ଦେଶର ଭବିଷ୍ୟତ କେବଳ ତୁମରିମାନଙ୍କ ଉପରେ...' ଇତ୍ୟାଦି କହି ଅପରିପକ୍ୱ କୋମଳମତି ଛାତ୍ରମାନଙ୍କ ମସ୍ତିଷ୍କରେ ନାନା ପ୍ରକାର ମିଥ୍ୟା ଧାରଣା ପ୍ରବେଶ କରିଦିଅନ୍ତି। ବେଳେ ବେଳେ ବିକ୍ଷୋଭ, ଅନଶନ ପାଇଁ ପ୍ରବର୍ତ୍ତାଇ ଉତ୍ତମ ଶିକ୍ଷାନୁଷ୍ଠାନମାନଙ୍କର ବା ଉତ୍ତମ ଗୁରୁମାନଙ୍କ ବିରୁଦ୍ଧାଚରଣ ସୃଷ୍ଟି କରନ୍ତି। କ୍ଷମତା ପାଇଁ ରାଜନୀତିର କୌଶଳ ଛାତ୍ରମାନଙ୍କୁ ଦେଇ ଶିକ୍ଷାନୁଷ୍ଠାନର ପବିତ୍ରତା ଓ ଆଦର୍ଶକୁ ନଷ୍ଟ କରନ୍ତି। ଏଭଳି କ୍ଷେତ୍ରରେ ଛାତ୍ରଶକ୍ତି ବା ଯୁବଶକ୍ତି ମଧ୍ୟରେ ଆଦର୍ଶ ଆସିବ କୁଆଡୁ। ସେମାନେ ଆଦର୍ଶର କଥା ପାଠ୍ୟପୁସ୍ତକରେ ପଢୁଥିଲେ ବି ବାହାର ଆଚରଣ, ନକଲି ଗୁରୁଙ୍କ



ପରାମର୍ଶ ତାଙ୍କୁ ବିଭ୍ରାନ୍ତ କରୁଛି । ସବୁଜ ସ୍ୱପ୍ନ ଦେଖୁଥିବା ଛାତ୍ରମାନଙ୍କ ମଧ୍ୟରେ ଭବିଷ୍ୟତର ଅୟସ ଆରାମ, କ୍ଷମତା ଲୋଭ ଦେଖାଇ ପ୍ରଥମରୁ ହିଁ ରାଜନୀତି ଭିତରକୁ ଆଣିବା ଅପେକ୍ଷା ସେମାନଙ୍କ ମଧ୍ୟରେ ଚିନ୍ତା ଚେତନା ଯୁକ୍ତ ଦାର୍ଶନିକ ଭାବ ଉଦ୍ରେକ କଲେ ସେମାନେ ଆପେ ଆପେ ଦେଶର ସ୍ୱାର୍ଥ ପାଇଁ ଉତ୍ତମ ଶାସକ ହେବାକୁ ପଛଘୁଞ୍ଚା ଦେବେନି । ଛାତ୍ରଶକ୍ତି ଜ୍ଞାନ ଲାଭ ପାଇଁ ଶିକ୍ଷାନୁଷ୍ଠାନ ଆସନ୍ତି, କିନ୍ତୁ ବର୍ତ୍ତମାନ ତାଙ୍କ ମନରେ ଗୋଟିଏ କଥା ରହିଛି– ଚାକିରି ପାଇଁ ଶିକ୍ଷାନୁଷ୍ଠାନ ଯିବାକୁ ପଡିଥାଏ । ଯେତେବେଳେ ଶିକ୍ଷା ପରେ ସେ ଚାକିରି ପାଏନି ବିଭିନ୍ନ ବିକ୍ଷୋଭ, ଅନୈତିକ କାର୍ଯ୍ୟ କରିବସେ । ଯୁବକମାନଙ୍କୁ ବାସ୍ତବ କ୍ଷେତ୍ରରେ ଥଇଥାନ ନକରି ଅଧିକାଂଶ ତାଙ୍କୁ ବେକାରୀର ଆଖ୍ୟା ଦେଇଥାନ୍ତି । ଏଥିପାଇଁ ସେମାନଙ୍କ ଭିତରେ ଥିବା ନୈତିକତା, ଆଦର୍ଶ ଦୂର ହୋଇ ନୈରାଶ୍ୟ ସୃଷ୍ଟି ହୁଏ ଓ ସେ ନିଜକୁ ସମାଜର ଜଣେ ଅଦରକାରୀ ମଣିଷ ଭାବେ, ତେଣୁ ଛାତ୍ରଶକ୍ତି ଯଦି ଏମିତି ନୈରାଶ୍ୟ ଭିତରେ ଗତି କରିବ– ଏ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ହେବ କିପରି ? ପ୍ରାବନ୍ଧିକ ଗୋଲକ ବିହାରୀ ଧଳଙ୍କ ମତରେ– ଯେଉଁ ଦେଶର ଯୁବଶକ୍ତି ଉତ୍ସାହ ଓ ଆଦର୍ଶ ଅଭାବରୁ ଅକାଳରେ ଅବସନ୍ନ ହୋଇପଡେ, ସେହି ଦେଶର ଭବିଷ୍ୟତ ତମସାଚ୍ଛନ୍ନ ହୋଇଉଠେ ।

କେବେ କେବେ ଅଭିଭାବକମାନଙ୍କର ସେମାନଙ୍କ ସନ୍ତାନମାନଙ୍କର ଦୋଷ ଦୁର୍ବଳତାକୁ ଘୋଡ଼ାଇ ଥାଆନ୍ତି । ମାତ୍ରାଧିକ ବାତ୍ସଲ୍ୟ ହେତୁ, ସେମାନେ ଯୁବ ଅବସ୍ଥାରେ ସମାଜର ବାସ୍ତବ ଚିତ୍ରକୁ ସହଜରେ ଗ୍ରହଣ କରିପାରନ୍ତି ନାହିଁ । ଅଭିଭାବକମାନେ ସବୁବେଳେ ଦୃଷ୍ଟି ଦେବା ଉଚିତ– ସେମାନଙ୍କ ଉତ୍ତର ଦାୟାଦ ଯେମିତି ସମାଜ ପାଇଁ ଆଦର୍ଶ ମଣିଷଟିଏ ହେଉ– ସେହିପରି ସ୍ନେହ, ଶ୍ରଦ୍ଧା ସହିତ ଆଦର୍ଶ କରି ଗଢ଼ିବାର ଦାୟିତ୍ୱ ନେବା ଉଚିତ୍ । ଛାତ୍ରମାନଙ୍କ ମଧ୍ୟରେ ସମୟାନୁବର୍ତ୍ତିତା ରହିବା ଉଚିତ । ଆଜିକାଲି ସମୟାନୁବର୍ତ୍ତିତା ଯୁବଶକ୍ତିଙ୍କ ନିକଟରେ କମିଯାଉଛି ଶଯ୍ୟାତ୍ୟାଗଠାରୁ ସଭାସମିତି, ସ୍କୁଲ କଲେଜ ଯିବା ପର୍ଯ୍ୟନ୍ତ ସମୟ ନିର୍ଘଣ୍ଟରେ ତାଳମେଳ ରହୁନି । ତେଣୁ ଯୁବଶକ୍ତି ସମୟାନୁବର୍ତ୍ତିତା ନହେଲେ– ଦେଶର ଭବିଷ୍ୟତ ଚିନ୍ତା ପାଇଁ ସେମାନେ କିପରି ଦାୟିତ୍ୱବାନ ହେବେ ।

ଅଗ୍ନି ପଛରେ ପତଙ୍ଗ ଧାଇଁଲା ପରି ଆଦର୍ଶ ଦେଖିଲେ ଛାତ୍ରଶକ୍ତି ବା ଯୁବଶକ୍ତି ତା' ପଛରେ ଧାଇଁବ । କିନ୍ତୁ ଯଦି ଅନାଦର୍ଶର ତଥ୍ୟଗୁଡିକ ତା'ଚାରିପଟରେ ଘେରିଯିବ, ତା' ମୁଣ୍ଡରେ ବସା ବାନ୍ଧିବ, ସେଠି ଆଦର୍ଶ, ନୈତିକ କଥା ସେ ବା ଚିନ୍ତା କରିବ କିପରି ? ବୁଢ଼ା ବଗ ବି ଗଡ଼ିଆ ଗୋଳାଇବାରେ ବେଳେ ବେଳେ ବ୍ୟସ୍ତ– କାଳେ ମାଛଟାଏ ମିଳିଯିବ । ତେଣୁ ଯୁବକମାନଙ୍କ ଆଦର୍ଶ କଥା କହିବା କ'ଣ ? ତଥାପି ଛାତ୍ରଶକ୍ତି, ଯୁବଶକ୍ତି କ'ଣ ମିଥ୍ୟା, ଅନାଦର୍ଶକୁ ଗ୍ରହଣ କରିନେବେ ? ସେମାନଙ୍କ ଭିତରର ଉଦ୍ଦମତା, ସାହସିକତା କ'ଣ ଆସିବନି... । ଅସଲି ନାଁରେ ସବୁବେଳେ ନକଲିରେ ସନ୍ତୁଷ୍ଟ ହେଉଥିବେ ଛାତ୍ରଶକ୍ତି । ସେମାନେ କ'ଣ ସବୁବେଳେ କହୁଥିବେ ନାଇଁ ଆମେ ଏ କାମ କରିପାରିବୁନି... ସତ କହିବୁନି... କହିଲେ– କାଳେ ଅମୁକ ଗ୍ରେଡ ରଖିବେ– ମାର୍କ କମିଯିବ ବା ଚାକିରି ମିଳିବନି... । ଏଇ କ'ଣ ଛାତ୍ରଶକ୍ତି ବା ଯୁବଶକ୍ତିର କ୍ରାନ୍ତି । ଏଇ କ'ଣ ଛାତ୍ରଶକ୍ତି, ଯୁବଶକ୍ତିର ଗୋଟିଏ ଜାତିର ଐତିହ୍ୟ ଓ ଇତିହାସ ପ୍ରତି ଶ୍ରଦ୍ଧାସୁମନ । ଛାତ୍ରଶକ୍ତି ନିଜକୁ ଦୁର୍ବଳ ମନେକଲେ– ଏ ଦେଶ କାହା ଉପରେ ନିର୍ଭର କରିବ । ଯୁବଶକ୍ତି ସବୁବେଳେ ସ୍ୱାଧୀନଚେତା ଓ ନିର୍ଭୀକ ହେବା ଉଚିତ୍ । କେବଳ ପୋଷାକ ବଦଳେଇ ଦେଲେ ସ୍ୱାଧୀନଚେତାର ପରିଚୟ ମିଳେ ନାହିଁ । ଢ଼ିଲା ପୋଷାକ ସ୍ଥାନରେ ଟାଇଟ୍ ଫିଟିଙ୍ଗ୍, ଲୁଗା ଗାମୁଛା ସ୍ଥାନରେ ପ୍ୟାଣ୍ଟସାର୍ଟ ପିନ୍ଧିଲେ ଦେଶ ବଦଳିବନି– ବରଂ ମନର ପୋଷାକ ବଦଳାଇଲେ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ହେବ । ମନ ଭିତରୁ ଅହଂକାର, ଈର୍ଷା, ପରଶ୍ରୀକାତରତା, ଅସହିଷ୍ଣୁ ଭଳି ବିକୃତ ମାନସିକତାକୁ ବଦଳେଇଲେ ଯୁବଶକ୍ତି ସୁସ୍ଥ ସମାଜର ନିୟାମକ ହୋଇପାରିବ । ଛାତ୍ରଶକ୍ତି ବା ଯୁବଶକ୍ତି ପରିବର୍ତ୍ତନ ପାଇଁ କରୁଥିବା ପ୍ରତ୍ୟେକ ବିପ୍ଳବ, ଆନ୍ଦୋଳନ, ଦାର୍ଶନିକ ଭିତ୍ତିଭୂମି ଉପରେ ପର୍ଯ୍ୟବସିତ ହେବା ବିଧେୟ । ଯୁବଶକ୍ତି ବା ଛାତ୍ରଶକ୍ତି ଯେଉଁ ବିପ୍ଳବ ଆଣିବେ ବା ଆଣିବାକୁ ଚିନ୍ତା କରିବେ– ତାହା ଚିନ୍ତା ଓ ଚେତନାର ବିପ୍ଳବ ବା ସାମାଜିକ ବିପ୍ଳବ ଉପରେ ପର୍ଯ୍ୟବସିତ ହେଲେ– କିଛି ନୂତନ ଆଶା ସମ୍ଭାବନାର ମାର୍ଗ ଦିଶିବ । ତେବେ ଏହା ଆଦର୍ଶ ଉପରେ ଆଧାରିତ ହେବା ବିଧେୟ ।

ଯେହେତୁ ଛାତ୍ରଶକ୍ତି, ଅସୀମ ସାହସ, ଉଦ୍ଦାମ ଓ ଅଜସ୍ର ବଳର ଅଧିକାରୀ, ସେମାନେ ସତ୍ୟକୁ ସାମନା କରି... ଆଦର୍ଶକୁ ଉପସ୍ଥାପନା କରିବା ସେମାନଙ୍କର କର୍ତ୍ତବ୍ୟ ହେବା ଉଚିତ । ଛାତ୍ରଶକ୍ତି ସାମୟିକ ଲାଭ ଲାଳସାରେ ଭୁଲି ନଯାଉ, ନିଜର ଗୁରୁଦାୟିତ୍ୱକୁ ବିଶ୍ଳେଷଣ କରୁ, ସେମାନଙ୍କର ପ୍ରକୃତ ଦାୟିତ୍ୱ ଏ ଦେଶ ପାଇଁ କ'ଣ ? ମିଥ୍ୟା ପ୍ରଲୋଭନରେ ନପଡି, ଅନୈତିକତାର ଆବେଗକୁ ନିଜକୁ ମୁକ୍ତକରି ନୈତିକତା କ'ଣ ଚିହ୍ନଟ କରୁ । ଯଦି ତା' ନହୁଏ, ମନରେ ସ୍ୱତଃ ପ୍ରଶ୍ନ ଉଠେ... ଏ ଦେଶର ଯେଉଁ ମହତ ଜନମାନେ ଦେଶ ପାଇଁ ସ୍ୱପ୍ନ ଦେଖି ମହତବାଣୀ ଦେଇଯାଇଛନ୍ତି– ତାହା କ'ଣ କେବଳ ପାଠ୍ୟ ପୁସ୍ତକରେ ସଂରକ୍ଷିତ ହୋଇ ରହିଯିବ.. ?

ଜେ.କେ.ବି.କେ ସରକାରୀ ମହାବିଦ୍ୟାଳୟ,
କଟକ–୩





# ଭାରତୀୟ ସ୍ୱାଧୀନତା ସଂଗ୍ରାମ ନାଟକର ମହାନାୟକ ନେତାଜୀ ସୁଭାଷ ବୋଷ

**ଗିରିଜା ଶଙ୍କର ତରାସିଆ**

ସ୍ୱାଧୀନୋତ୍ତର ଭାରତବର୍ଷର ନେତୃମଣ୍ଡଳୀ କ୍ଷମତାର ଇନ୍ଦ୍ରଜାଲ ବିଛାଇ କ୍ଷୁଦ୍ର ବ୍ୟକ୍ତି ସ୍ୱାର୍ଥ ହାସଲ କରିବା ପାଇଁ ଯେକୌଣସି ଉପାୟ ଅବଲମ୍ବନ କରିବାକୁ ସାମାନ୍ୟତମ କୁଣ୍ଠାବୋଧ ପ୍ରକାଶ କରୁନଥିବା ବେଳେ ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତ କରି ନିଜ ଜନ୍ମ ଭୂମିର ସ୍ୱାଧୀନତା ପ୍ରାପ୍ତି ପାଇଁ ସମସ୍ତ ବିପଦକୁ ହସି ହସି ବରଣ କରି ସାରା ଜୀବନକୁ ଜଳାଇ ଦେଇଥିବା ଦେଶପ୍ରେମୀ ବୀରପୁଙ୍ଗବମାନଙ୍କ ଜୀବନୀ ଅନୁଧ୍ୟାନ କଲେ ମନରେ ବିସ୍ମୟ ଜାତ ହୋଇଥାଏ। ଅତି ଆକର୍ଷଣୀୟ ଇଣ୍ଡିଆନ୍ ସିଭିଲ ସର୍ଭିସ ପରି ଲୋଭନୀୟ ଉଚ୍ଚପଦବୀର ମୋହରେ ବାନ୍ଧି ନହୋଇ ପ୍ରିୟ ଜନ୍ମଭୂମି ଭାରତବର୍ଷର ସ୍ୱାଧୀନତା ନିମନ୍ତେ ନିଜକୁ ସଂଗ୍ରାମୀ ବେଶରେ ସଜାଇ ପ୍ରବାସୀ ଭାରତୀୟଙ୍କୁ ଏକତ୍ର କରାଇ ପ୍ରବାସରେ ସ୍ୱାଧୀନତାର ମହାମନ୍ତ୍ର ଗାଇ ଉଠିଥିବା ଏହି ଐତିହାସିକ ପୁରୁଷ ଥିଲେ ଆମର ପ୍ରିୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ।



ପ୍ରସିଦ୍ଧ ଆଇନ୍‌ଜୀବୀ ରାୟବାହାଦୁର ଜାନକୀ ନାଥ ବୋଷଙ୍କର ସୁଯୋଗ୍ୟ ସନ୍ତାନ ଭାବେ ଜନ୍ମ ଗ୍ରହଣ କରିଥିବା ଏହି ମହାନ ପ୍ରତିଭା କଟକସ୍ଥିତ ରେଭେନ୍ସା କଲେଜିଏଟ୍ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ଲାଭକରି କଲିକତା ନଗରୀରେ ଉଚ୍ଚଶିକ୍ଷା ଅଧ୍ୟୟନ କଲେ। ପରମାଣୁ ବୋମା ମଧ୍ୟରେ ନ୍ୟୁକ୍ଲିୟସ ରହିଥିବା ପରି ବିପ୍ଳବୀ ସୁଭାଷ ଚନ୍ଦ୍ର ବୋଷଙ୍କ ହୃଦୟରେ ବିପ୍ଳବର ବୀଜ ଛାତ୍ର ଅବସ୍ଥାରୁ ବପନ ହୋଇଥିଲା। କୌଣସି ଅନ୍ୟାୟ ଆଗରେ ସେ କଦାପି ମଥାପାତ କରୁନଥିଲେ। ଜାତୀୟତାବୋଧ ଏବଂ ଜାତିପ୍ରୀତି ତାଙ୍କର ପ୍ରତିଟି ରକ୍ତକଣାରେ ପ୍ରତିଫଳିତ ହେଉଥିଲା। କଲିକତାର ପ୍ରେସିଡେନ୍ସି ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବା ବେଳେ ମହାବିଦ୍ୟାଳୟର ଅଧ୍ୟକ୍ଷ ମିଷ୍ଟର ଓଟାନ୍ ଭାରତବାସୀଙ୍କ ପ୍ରତି ଅପମାନସୂଚକ ମନ୍ତବ୍ୟମାନ ପ୍ରଦାନ କରିବାରୁ ସୁଭାଷ ଚନ୍ଦ୍ର ବୋଷ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଅଧ୍ୟକ୍ଷଙ୍କୁ ମାଡ଼ ଦେବାକୁ ଆଗେଇ ଆସିଥିଲେ। ଏହି ଘଟଣା ଯୋଗୁଁ ତାଙ୍କୁ ଦୁଇ ବର୍ଷ ନିମନ୍ତେ ମହାବିଦ୍ୟାଳୟରୁ ବହିଷ୍କୃତ ହେବାକୁ ପଡିଥିଲା। ଆଇ.ସି.ଏସ୍ ପରି କ୍ଷମତାସମ୍ପନ୍ନ ଲୋଭନୀୟ ସରକାରୀ ଚାକିରି ପାଇବା ପାଇଁ ସେ ଯୋଗ୍ୟ ପ୍ରାର୍ଥୀଭାବେ ବିବେଚିତ ହୋଇଥିଲେ ମଧ୍ୟ ଜନ୍ମ ଭୂମିର ପରାଧୀନତାର ଗ୍ଲାନି ତାଙ୍କୁ ବିଶେଷ ମର୍ମାହତ କରି ପକାଉଥିଲା। ପିତାଙ୍କ ଇଚ୍ଛା ପୂରଣ କରିବାକୁ ଯାଇ ସେ ଇଂଲଣ୍ଡରେ ଆଇସିଏସ ଶିକ୍ଷା ନବୀଶ ଭାବେ ତାଲିମ ପାଉଥିବାବେଳେ ବ୍ରିଟିଶ ଶାସନ ଅହଙ୍କାରର ପ୍ରତିବାଦ ପୂର୍ବକ ଏହି ଆକର୍ଷଣୀୟ ଚାକିରିକୁ ପଦାଘାତ କରି ଜନ୍ମ ଭୂମିର ସ୍ୱାଧୀନତା ପାଇଁ ସଂଗ୍ରାମ କରିବାର ଦୁର୍ବାର ଶପଥ ନେଇ ଭାରତମାଟିକୁ ପ୍ରତ୍ୟାବର୍ତ୍ତନ କରିଥିଲେ। କୋଟି କୋଟି ଭାରତବାସୀଙ୍କ ପାଇଁ ଯାହାର ପ୍ରାଣ କାନ୍ଦି ଉଠୁଥିଲା, ବିଶ୍ୱଦରବାରରେ ଯିଏ ନେତାଜୀ ଭାବରେ ପରିଚିତ ଲାଭ କରିବା ପାଇଁ ଅଭିପ୍ରେତ ହୋଇଥିଲେ, ସେ ବା କାହୁଁ କ୍ଷମତାର ସ୍ୱର୍ଣ୍ଣପଞ୍ଜୁରୀ ମଧ୍ୟରେ ଆବଦ୍ଧ ହୋଇ ରହିପାରିଥାନ୍ତେ ? ଇଂଲଣ୍ଡ ପରିତ୍ୟାଗ କରି ପରାଧୀନ ଭାରତ ମାଟିରେ ପଦାର୍ପଣ କରି ସେ ନିଜର ସଂଗ୍ରାମୀ ଜୀବନ ଅତିବାହିତ କରିବାକୁ ଆରମ୍ଭ କଲେ। ଜାତୀୟ କଂଗ୍ରେସ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମ



ଗଢ଼ିଉଠିଥିବା ବେଳେ ସୁଭାଷ ଚନ୍ଦ୍ର ବୋଷ ଦୁଇଥର କଂଗ୍ରେସର ସଭାପତି ଭାବେ ନିର୍ବାଚିତ ହୋଇଥିଲେ। କିନ୍ତୁ ଗାନ୍ଧିଜୀଙ୍କ ସହିତ ତାଙ୍କର ତୀବ୍ର ମତଭେଦ ଥିଲା। ଉଭୟଙ୍କର ମତ ଥିଲା ଦୁଇଟି ସମାନ୍ତରାଳ ରେଳ ଧାରଣା ସଦୃଶ। ଏପରିକି ସୁଭାଷ ଚନ୍ଦ୍ର ବୋଷଙ୍କ ସଭ୍ୟପଦ ଉଚ୍ଛେଦ କରାଯାଇ ତାଙ୍କୁ କଂଗ୍ରେସରୁ ବହିଷ୍କୃତ କରାଯାଇଥିଲା। ସୁଭାଷ ଚନ୍ଦ୍ର ବୋଷ କଂଗ୍ରେସର କେତେକ ନୀତି ବିରୁଦ୍ଧରେ ଖୋଲାଖୋଲି ପ୍ରତିବାଦ କରୁଥିଲେ। ସୁଭାଷଙ୍କୁ କଂଗ୍ରେସରୁ ବହିଷ୍କୃତ କରିବା ଘଟଣାରେ ପ୍ରତିକ୍ରିୟା ପ୍ରକାଶ କରି ପ୍ରଖ୍ୟାତ ଐତିହାସିକ ମାଇକେଲ ଏଡୱାର୍ଡ ତାଙ୍କ ରଚିତ 'ଲାଷ୍ଟଇୟର୍ସ ଅଫ୍ ବ୍ରିଟିଶ ଇଣ୍ଡିଆ' ଗ୍ରନ୍ଥରେ ଦର୍ଶାଇଛନ୍ତି ଯେ, "Gandhi now turned the technique of Non-cooperation not against the British, but against Congres's own President Bose forced to resign." ୧୯୩୯ ମସିହା ସେପ୍ଟେମ୍ବର ମାସ ୩ ତାରିଖରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସଙ୍ଗଠିତ ହେବାକୁ ଲାଗିଲା। ଏହି ଯୁଦ୍ଧରେ ବ୍ରିଟିଶ ପକ୍ଷରୁ ସାହାଯ୍ୟ କରିବା ପାଇଁ ଗାନ୍ଧିଜୀ ମତ ପୋଷଣ କରିଥିବା ବେଳେ ଭାରତର ପରମ ଶତ୍ରୁ ବ୍ରିଟିଶ ସହିତ ସମସ୍ତ ଅସହଯୋଗ କରିବା ପାଇଁ ନେତାଜୀ ଦୃଢ଼ ଯୁକ୍ତି ଉପସ୍ଥାପିତ କରିଥିଲେ। ନେତାଜୀ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ସାମ୍ରାଜ୍ୟବାଦୀ ଶକ୍ତି ସହିତ ସଂଗ୍ରାମ ଚଳାଇବା ପାଇଁ ବିପ୍ଳବ ଅବଶ୍ୟମ୍ଭାବୀ । ନିଜର ବୈପ୍ଳବିକ ଚିନ୍ତାଧାରାକୁ ଚରିତାର୍ଥ କରିବା ପାଇଁ ସେ ଫରୱାର୍ଡ ବ୍ଲକ, ବି.ଭି ଅନୁଶୀଳନ ସମିତି, ପଞ୍ଜାବର କୀର୍ତ୍ତି ନିଷାଣ ପାର୍ଟି ପରି ଅନେକ ବିପ୍ଳବୀ ସଂଗଠନ ସମୂହକୁ ଏକତ୍ର କରାଇବାକୁ ଲାଗିଲେ। ନେତାଜୀଙ୍କ ନେତୃତ୍ୱରେ ହଲଓୟେଲ ମୁଭମେଣ୍ଟ ଆନ୍ଦୋଳନ ସଂଗଠିତ ପାଇଁ ୧୯୪୦ ମସିହା ଜୁଲାଇ ମାସ ୩ ତାରିଖକୁ ଧାର୍ଯ୍ୟ କରାଯାଇଥିବା ବେଳେ ଏହାର ପୂର୍ବଦିନ ଅର୍ଥାତ୍ ୨ ତାରିଖ ଅପରାହ୍ନ ୨ଟା ବେଳେ ଡେପୁଟି କମିଶନର ମିଃ ଜାନଭିନ୍ ଭାରତରକ୍ଷା ବିଧିର ୧୨୯ ଧାରା ଅନୁଯାୟୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଗିରଫ କରି ପ୍ରେସିଡେନ୍ସୀ ଜେଲକୁ ପଠାଇଦେଲେ। ସୁଭାଷ ଚନ୍ଦ୍ର ବୋଷ ଡିସେମ୍ବର ୫ ତାରିଖ ଦିନ ସର୍ତ୍ତାଧୀନ ମୁକ୍ତିଲାଭ କରିବା ପରେ ନଜରବନ୍ଦୀ ଭାବେ କାଳାତିପାତ କରିବାକୁ ଲାଗିଲେ। ଯେକୌଣସି ପ୍ରକାରେ ଜନ୍ମ ଭୂମିର ସ୍ୱାଧୀନତା ପାଇଁ ସୁଭାଷଙ୍କ ହୃଦୟ ଉଦ୍‌ବେଳିତ ହୋଇ ଉଠୁଥାଏ। ବିଦେଶକୁ ଯାଇ ବ୍ରିଟିଶ ଶକ୍ତି ବିରୋଧରେ ସଂଗ୍ରାମ ଚଳାଇବା ଆବଶ୍ୟକତା ଅନୁଭବ କରି ଅତ୍ୟନ୍ତ ନାଟକୀୟ ଭାବେ ବ୍ରିଟିଶ୍ ଗୁପ୍ତଚରଙ୍କ ଆଖିରେ ଧୂଳିଦେଇ ଛଦ୍ମବେଶ ଧାରଣ କରି ନେତାଜୀ ପଞ୍ଜାବ ମେଲରେ ଦ୍ୱିତୀୟ ଶ୍ରେଣୀ ଯାତ୍ରୀଭାବେ ଯାତ୍ରାକରି ୧୯୪୧ ମସିହା ଜାନୁୟାରୀ ୧୭ ତାରିଖ ରାତ୍ର ପ୍ରାୟ ୯ ଘଣ୍ଟା ସମୟରେ ପେଶବାର ରେଳଷ୍ଟେସନରେ ପହଞ୍ଚିଲେ । କଲିକତାସ୍ଥିତ ଏଲପିନ ରୋଡ୍ ବାସଭବନରୁ ମୌଲବୀ ବେଶ ଧାରଣ କରି ଅନ୍ୟତ୍ର ପଳାଇ ଯିବାକୁ ସୁଭାଷଙ୍କୁ ୪୦ ଦିନ ଧରି ପ୍ରସ୍ତୁତ ହେବାକୁ ପଡିଥିଲା। ସୁଭାଷ ଚନ୍ଦ୍ର ବୋଷ ୧୭ ତାରିଖରୁ ଅନ୍ତର୍ଦ୍ଧାନ ହୋଇଥିଲେ ମଧ୍ୟ ଦୀର୍ଘ ୯ଦିନ ପରେ ଅର୍ଥାତ୍ ୨୬ ତାରିଖ ଦିନ ତାଙ୍କ ଅନ୍ତର୍ଦ୍ଧାନ ବିଷୟରେ ବିଶ୍ୱବାସୀ ଅବଗତ ହୋଇଥିଲେ। ପେଶୱାରରୁ ଦୁର୍ଗମ ପାହାଡିଆ ପଥ ଦେଇ ସେ ପହଞ୍ଚିଲେ କାବୁଲ ସହରରେ। ସେଠାରେ ଜନୈକ ରେଡ଼ିଓ ବ୍ୟବସାୟୀ ଉତ୍ତମଚାନ୍ଦ ସୁଭାଷଙ୍କୁ ଆତିଥ୍ୟ ପ୍ରଦାନ କରିଥିଲେ। ଏହାପରେ ମାର୍ଚ୍ଚ ୧୮ ତାରିଖ ଦିନ ଇଟାଲୀୟ ରାଷ୍ଟ୍ରଦୂତ ଆଲବର୍ଟ କେରାନୀଙ୍କର ସହଯୋଗୀତାକ୍ରମେ ନେତାଜୀ ଇଉରୋପ ଉଦ୍ଦେଶ୍ୟରେ ଯାତ୍ରା କଲେ। ସେ ମାର୍ଚ୍ଚ ୨୮ ତାରିଖ ଦିନ ବର୍ଲିନଠାରେ ପହଞ୍ଚିଲେ। ବର୍ଲିନଠାରେ ସୁଭାଷଙ୍କର ବିପ୍ଳବର ଶିଖା ପ୍ରଜ୍ଜ୍ୱଳିତ ହେବାରେ ଲାଗିଲା। ନାଜି ନାୟକ ହିଟଲରଙ୍କ ପ୍ରତ୍ୟକ୍ଷ ସହଯୋଗକ୍ରମେ ନେତାଜୀ ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରବାସରେ ଚାଲୁ ରଖିବାକୁ ଆରମ୍ଭ କଲେ। ବର୍ଲିନ ମାଟିରେ ଜନ୍ମନେଲା ଆଜାଦହିନ୍ଦ ସଂଘ। କର୍ମୀ ସଂଗ୍ରହ ପାଇଁ ନେତାଜୀଙ୍କର ଆରମ୍ଭ ହେଲା ଇଉରୋପ ପରିକ୍ରମା। ଦୀର୍ଘ ଅଠର ବର୍ଷ ଧରି ପ୍ୟାରିସରେ ବସବାସ କରୁଥିବା ଭାରତୀୟ ନାମ୍ବିୟାର ଶର୍ମା, ଜର୍ମାନ ପ୍ରଚାର ବିଭାଗର ଜଣେ ବିଶିଷ୍ଟ କର୍ମୀ ହବିବୁର ରହମାନ, ପ୍ରମୋଦ ସେନଗୁପ୍ତ, ଆବିଦ ହାସାନ, ଏମ୍.ଜି ରାଓ, କାନ୍ତାରାମ, ଡକ୍ଟର ମଲ୍ଲିକ, ବିଖ୍ୟାତ୍ ସାମ୍ବାଦିକ ଗିରିଜା ମୁଖାର୍ଜୀ ପ୍ରମୁଖ ପ୍ରାୟ ୩୫ ଜଣ ସ୍ୱାଧୀନତାକାମୀ ଭାରତୀୟ ମିଳିତ ହୋଇ ଭାରତୀୟ ସ୍ୱାଧୀନତା ସଂଗ୍ରାମର ମୂଳଦୁଆ ସ୍ଥାପନ କରିବାକୁ ଲାଗିଲେ। ଆଜାଦହିନ୍ଦ୍ ସଂଘର ନୂତନ ଦପ୍ତର ବର୍ଲିନର ଡିୟାରଗାର୍ଡ ଇଲାକାରେ ଖୋଲିବାକୁ ଲାଗିଲା । ନେତାଜୀ ୬ ନମ୍ବର ସୋଫେନ ଟ୍ରସରେ ଅବସ୍ଥିତ ପ୍ରାକ୍ତନ ବ୍ରିଟିଶ ରାଜଦୂତ ଭବନରେ ଅବସ୍ଥାପନ କରିବାକୁ ଲାଗିଲେ। ଆଜାଦ୍‌ହିନ୍ଦ୍ ସଂଘର ପ୍ରଥମ ଅଧିବେଶନ ୧୯୪୨ ମସିହା ନଭେମ୍ବର ୨ ତାରିଖ ଦିନ ବର୍ଲିନ ନଗରୀରେ ଅନୁଷ୍ଠିତ ହୋଇଥିଲା। ଭାରତ ମାଟିରୁ ୬ ହଜାର ମାଇଲ ଦୂରରେ ସେଦିନ ପ୍ରଥମେ ଭାରତର ତ୍ରିରଙ୍ଗା ଜାତୀୟ ପତାକା ଫରଫର ହୋଇ ଉଡିଉଠିଲା। ବିଶ୍ୱକବିଙ୍କର ଜନଗଣ ମନ ଅଧିନାୟକ ସଂଗୀତ ଜାତୀୟ ସଂଗୀତ ରୂପରେ ଗୃହୀତ ହେଲା। ମାତ୍ର ୩୫ ଜଣ କର୍ମୀଙ୍କୁ ନେଇ ଆରମ୍ଭ ହୋଇଥିବା ଆଜାଦ୍‌ହିନ୍ଦ ସଂଘ ଆନୁକୂଲ୍ୟରେ ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତି





ନିମନ୍ତେ ସଶସ୍ତ୍ର ବିପ୍ଳବ ଗଢ଼ିତୋଳିବା ପାଇଁ ପ୍ରବାସରେ ବନ୍ଦୀ ହୋଇ ରହିଥିବା ଭାରତୀୟ ଯୁଦ୍ଧବନ୍ଦୀଙ୍କୁ ମୁକ୍ତ କରାଇ ଏକ ଫୌଜ ଗଠନ କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା । ପ୍ରଥମେ ସୁଭାଷଙ୍କ ସହକର୍ମୀ ଏନ୍ ଜି ସ୍ୱାମୀ ଏବଂ ଆବିଦ ହାସାନଙ୍କୁ ବନ୍ଦୀଶାଳାରୁ ସୈନ୍ୟ ସଂଗ୍ରହ କାର୍ଯ୍ୟରେ ନିଯୁକ୍ତ କରାଯାଇଥିଲା । ପରେ ସୁଭାଷ ନିଜେ ଏହି କାର୍ଯ୍ୟରେ ସହାୟତା କଲେ । ୧୯୪୨ ମସିହା ଜୁନ୍ ୧୪ ତାରିଖରେ ବର୍ଲିନଠାରେ ଇଣ୍ଟର ନ୍ୟାସନାଲ ପ୍ରେସ୍ କ୍ଲବ ପକ୍ଷରୁ ସୁଭାଷଙ୍କ ଉଦ୍ଦେଶ୍ୟରେ କରାଯାଇଥିବା ସମ୍ବର୍ଦ୍ଧନାର ଉତ୍ତର ଦେଇ ସୁଭାଷ କହିଉଠିଥିଲେ– 'ଭାରତବର୍ଷ ଭାରତୀୟଙ୍କ ପାଇଁ' । ଜୁନ୍ ୧୫ ତାରିଖ ଦିନ ଅନୁଷ୍ଠିତ ହୁଏ ଐତିହାସିକ ବ୍ୟାଙ୍କକ ସମ୍ମିଳନୀ । ଏହି ସମ୍ମିଳନୀର ସଭାପତି ଥିଲେ ରାସବିହାରୀ ବସୁ । ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ଦେବନାଥ ଦାସ । ମାଳୟ, ବର୍ମା, ଜାପାନ, ଥାଇଲାଣ୍ଡ, ମାଞ୍ଚୁରିଆ, ନାନକିଂ, ସାଂହାଇ, କ୍ୟାଣ୍ଟନ, ହଂକଂ, ବୋର୍ଣ୍ଣିଓ, ମ୍ୟାନିଲା, ଇଣ୍ଡୋଚୀନ୍ ପ୍ରଭୃତି ଅଞ୍ଚଳର ପ୍ରତିନିଧିମାନଙ୍କ ସମେତ ଜାପାନ, ଜର୍ମାନୀ ଏବଂ ଇଟାଲୀୟ କୂଟନୈତିକ ପଦାଧିକାରୀମାନେ ସମ୍ମିଳନୀରେ ଯୋଗଦାନ କରିଥିଲେ । ଏହି ସମ୍ମିଳନୀରେ ଆନନ୍ଦ ମୋହନ ସହାୟ, ଏନ୍ ରାଘବନ, କର୍ଣ୍ଣେଲ ଏସ୍ ଏନ୍‌ଗ୍ରୀଲ ଏବଂ କ୍ୟାପଟେନ୍ ମୋହନ ସିଂ ପ୍ରମୁଖ ସାମରିକ ନେତୃବୃନ୍ଦ ଭାରତର ସ୍ୱାଧୀନତା ପାଇଁ ଦାବି ଜଣାଇ ଜ୍ୱାଳାମୁଖୀ ଭାଷଣମାନ ପ୍ରଦାନ କରିଥିଲେ । ସମ୍ମିଳନୀର ସାଫଲ୍ୟ କାମନା କରି ଥାଇଲାଣ୍ଡ ପ୍ରଧାନମନ୍ତ୍ରୀ ଫିଲଡ୍ ମାର୍ଶାଲ ପିବୁଲ ସଂଗ୍ରାମୀ ଅଭିବାଦନ ଜଣାଇବା ସହିତ ତାଙ୍କ ବାର୍ତ୍ତାରେ ସ୍ୱାଧୀନ ଭାରତବର୍ଷ ପୂର୍ଣ୍ଣ ମର୍ଯ୍ୟାଦା ପ୍ରତିଷ୍ଠିତ ହେଉ ବୋଲି ଅଭିମତ ପ୍ରକାଶ କରିଥିଲେ । ଜାପାନ ପ୍ରଧାନମନ୍ତ୍ରୀ ତୋଜୋ ତାଙ୍କ ବାର୍ତ୍ତାରେ ଦର୍ଶାଇଥିଲେ ଯେ, 'ଆସନ୍ନ ସଂଗ୍ରାମରେ ଭାରତ ତ୍ରିଶକ୍ତିଙ୍କର ସହାୟତାରୁ ବଞ୍ଚିତ ହେବନାହିଁ' । ଐତିହାସିକ ବ୍ୟାଙ୍କକ ସମ୍ମିଳନୀ ଭାରତର ସ୍ୱାଧୀନତା ପ୍ରାପ୍ତି ପାଇଁ ପ୍ରଧାନ ସହାୟକ ଭାବେ କାର୍ଯ୍ୟ କରିଥିଲା ବୋଲି ଆନ୍ତର୍ଜାତୀୟ ରାଜନୈତିକ ପର୍ଯ୍ୟବେକ୍ଷକମାନେ ମତ ପୋଷଣ କରିଥାନ୍ତି । ନଅ ଦିନ ବ୍ୟାପୀ ଅନୁଷ୍ଠିତ ଏହି ସମ୍ମିଳନୀରେ ମୋଟ୍ ୩୫ଟି ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗୃହୀତ ହୋଇଥିଲା । ସୁଭାଷ ଚନ୍ଦ୍ର ବୋଷଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଏବଂ ଅସାଧାରଣ ପ୍ରତିଭାରେ ବିମୋହିତ ହୋଇ ନାଜି ନାୟକ ହିଟଲର, ଇଟାଲୀୟ ଶାସକ ମୁସୋଲିନ୍ ଏବଂ ଜାପାନ ପ୍ରଧାନମନ୍ତ୍ରୀ ତୋଜୋ ସୁଭାଷଙ୍କୁ ଯେଉଁ ଉତ୍ସାହ ଏବଂ ସାହାଯ୍ୟ ପ୍ରଦାନ କରିଥିଲେ, ତା' ଫଳରେ ବ୍ରିଟିଶ ଶକ୍ତି ପରି ପରାକ୍ରମଶାଳୀ ଶକ୍ତି ବିରୋଧରେ ପ୍ରବାସରେ ରହି ନେତାଜୀ ଆଜାଦ୍ ହିନ୍ଦ୍ ଫୌଜ ମାଧ୍ୟମରେ ବ୍ରିଟିଶ ଶାସନ ପତନ ଘଟାଇବା ଦିଗରେ ପଥ ସୃଷ୍ଟି କରି ପାରିଥିଲେ ।

କାଳର ଗତି ଅତି ବିଚିତ୍ର । ହିଟଲରଙ୍କ ହଠାତ୍ ପତନ ଘଟିବାରୁ ନେତାଜୀ କିଛି ମାତ୍ରାରେ ଭାଙ୍ଗି ପଡିଲେ । ସେ ବ୍ୟଥିତ ହୃଦୟରେ ୧୯୪୫ ମସିହା ଅପ୍ରେଲ ମାସ ୨୪ ତାରିଖ ଦିନ ରେଙ୍ଗୁନ ପରିତ୍ୟାଗ କଲେ । ଏହାର କିଛିଦିନ ପରେ ଜାପାନରୁ ପ୍ରକାଶିତ ଏକ ଚମକପ୍ରଦ ସମ୍ବାଦ ଶୁଣି ସମଗ୍ର ବିଶ୍ୱ ଚମକି ପଡିଲା । ସୁଭାଷ ଚନ୍ଦ୍ର ବୋଷଙ୍କର ମହାପ୍ରଣାୟ ଘଟିଛି ବୋଲି ପ୍ରଚାରିତ ଏହି ସମ୍ବାଦରେ କୁହାଯାଇଥିଲା ଯେ ୧୯୪୫ ମସିହା ଅଗଷ୍ଟ ମାସ ୧୬ ତାରିଖ ଦିନ ନେତାଜୀ ସିଙ୍ଗାପୁର ପରିତ୍ୟାଗ କରି ବିମାନ ଯୋଗେ ଟୋକିଓ ଯାତ୍ରା କଲେ । ଅଗଷ୍ଟ ୧୮ ତାରିଖରେ ତାଇହୋକୁ ବିମାନଘାଟିରୁ ଆକାଶକୁ ଉଠିବା ସମୟରେ ବିମାନଟି ତଳେ ଜଳିଯାଇଥିଲା ଏବଂ ନେତାଜୀଙ୍କର ଏହି ଦୁର୍ଘଟଣାରେ ପ୍ରାଣହାନି ଘଟିଥିଲା । ମର୍ମନ୍ତୁଦ ବିମାନ ଦୁର୍ଘଟଣାରେ ନେତାଜୀଙ୍କର ମୃତ୍ୟୁ ଘଟିବା କୁହାଯାଉଥିଲେ ମଧ୍ୟ ପ୍ରକୃତରେ ତାଙ୍କର ମୃତ୍ୟୁ ରହସ୍ୟ ଏଯାବତ୍ ସନ୍ଦେହର କୁହେଳିକା ମଧ୍ୟରେ ଢ଼ାଙ୍କି ହୋଇ ରହିଛି । ସୁଭାଷ ଥିଲେ ଯୌବନର ଅଗ୍ରଦୂତ, ବିପ୍ଳବର ପ୍ରଦୀପ୍ତ ସୂର୍ଯ୍ୟ ଏବଂ ଅସମ୍ଭବର ନାୟକ । ତାଙ୍କ ସମ୍ପର୍କରେ ମତାମତ ପ୍ରକାଶ କରିବାକୁ ଯାଇ ବିପ୍ଳବୀ ଭୂପେନ୍ଦ୍ର କିଶୋର ଅରକ୍ଷିତରାୟ କହି ଉଠିଛନ୍ତି ସୁଭାଷ ହଠାତ୍ ସୃଷ୍ଟି ନୁହଁନ୍ତି । ସୁଭାଷଙ୍କର ପ୍ରାଣଗୁରୁ ସ୍ୱାମୀ ବିବେକାନନ୍ଦ, ତାଙ୍କର କର୍ମଗୁରୁ ଦେଶବନ୍ଧୁ ଚିତ୍ତରଞ୍ଜନ, ତାଙ୍କର ବିପ୍ଳବଗୁରୁ ଶ୍ରୀ ଅରବିନ୍ଦ । ତାଙ୍କର ସତୀର୍ଥ ବନ୍ଧୁ ଥିଲେ ଦୁର୍ଜୟ ବିପ୍ଳବୀଦଳ । ତାଙ୍କୁ ଦେଶନାୟକର ଆସନରେ ବରଣ କରିଛନ୍ତି ଆଉ କେହି ନୁହନ୍ତି, ସୁଦୂରଦ୍ରଷ୍ଟା ଋଷିକବି ସ୍ୱୟଂ ରବୀନ୍ଦ୍ର ନାଥ । ତାଙ୍କର ଶୈଶବ–କୈଶୋର–ଯୌବନ ଏହି ଋଷିଙ୍କର ସ୍ନେହ ସୁଧା ଧାରାରେ ହିଁ ଲାଳିତ ।

ଆଡଭୋକେଟ୍,
ସା/ପୋ– ଖଣ୍ଡପଡା, ନୟାଗଡ







# ଉତ୍କଳୀୟ ସାମରିକ ବିଭବ ଓ ପାଇକ ସଂସ୍କୃତି

**ଅଧ୍ୟାପକ ଦାମୋଦର ବେହେରା**

ଯେଉଁ ଯେଉଁ ଜାତି ଭାରତ ଇତିହାସର ସ୍ୱର୍ଣ୍ଣିମ ପୃଷ୍ଠାରେ ସମର କଳା କୌଶଳ ଓ ବିଶାରଦ ଭାବରେ ଆପଣାର ପଦାଙ୍କକୁ ସୁଦୃଢ଼ କରି ସ୍ୱତନ୍ତ୍ର ମାର୍ଗ ନିର୍ଣ୍ଣୟ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଆମର ଜନ୍ମଭୂମି ଓଡ଼ିଶା ଅଗ୍ରଗଣ୍ୟ, ସ୍ମରଣୀୟ ତଥା ଦେଦୀପ୍ୟମାନ ଅଟେ । ଅତିକ୍ରାନ୍ତ ଅତୀତର ସମୃଦ୍ଧ ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ହୋଇ କେଉଁ କାଳରୁ ଏ ଜାତି ତାର ଶୌର୍ଯ୍ୟ, ବୀର୍ଯ୍ୟ ସାହସ ସହିତ ସମର କୃଷ୍ଟି ପ୍ରଦର୍ଶନ କରି ଓଡ଼ିଆ ଜାତିର ସ୍ୱାଭିମାନ ଓ ଉଚ୍ଚତର ସମ୍ମାନକୁ ବଜାୟ ରଖି ପାରିଥିଲେ । ଆଜି ଆମେ ଯେଉଁ ଓଡ଼ିଆ ପାଇକଙ୍କ ସମ୍ପର୍କରେ ବିଚାର ଆଲୋଚନା କରୁଛେ, ସେମାନଙ୍କର ବହୁବିଧ କାର୍ଯ୍ୟ ଦକ୍ଷତା, ତ୍ୟାଗ, ତିତୀକ୍ଷା, ରଣ କୁଶଳତା, ଆଗ୍ରହୀ ପାଦର ବୀରତ୍ୱ–ବିଭା ଆମ ଶାସ୍ତ୍ର ଓ ପୁରାଣ ପୃଷ୍ଠାରେ ଲିପିବଦ୍ଧ ହୋଇଛି । ଆହୁରି ମଧ୍ୟ ତାହା ଆକୁମାରୀ ହିମାଚଳ, କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । ସାଧାରଣତଃ ଆମର ପଦାତିକ ବାହିନୀକୁ ପାଇକ ନାମରେ ସ୍ୱୀକାର କରାଯାଏ । ପାଇକ ଶବ୍ଦର ଅର୍ଥଟି ସାଧାରଣ ଭାବରେ ବ୍ୟାପ୍ତି ଅର୍ଥରେ ବ୍ୟାପକ ଅଟେ । ଯେଉଁ ଯୋଦ୍ଧୃଦଳ ସର୍ବଦା ତାର ପାଦକୁ ରଣାଙ୍ଗନ ଉଦ୍ଦେଶ୍ୟରେ ଅଭିପ୍ରେତ କରାଇଥାଏ, ସେ ହିଁ ଯଥାର୍ଥରେ ପାଇକ ଭାବରେ ପରିଚିତ । ଅନେକ ପାଇକମାନଙ୍କୁ ଏକ ଜାତି ବୋଲି ଭାବନାରେ ଆଣିବାବେଳେ ମନେରଖିବା ଉଚିତ୍ ଯେ ପାଇକ ଜାତି ନୁହେଁ ଏକ ବୃତ୍ତି । ଆବଶ୍ୟକ ଭେଦରେ ଏହି ପାଇକମାନେ କୃଷି କ୍ଷେତ୍ରରେ କର୍ଷଣ କାର୍ଯ୍ୟରେ ଆପଣାକୁ ନିୟୋଜିତ କରୁଥିଲେ ତ ଆବଶ୍ୟକ ହେଲେ ଯୁଦ୍ଧ କ୍ଷେତ୍ରରେ ନିଜକୁ କରୁଥିଲେ ନିୟୋଜନ । ଏହି ପରିପ୍ରେକ୍ଷୀରେ ଆମେ ମାଟିର ମହାକବି ମହାଭାରତର ସ୍ରଷ୍ଟା ସାରଳା ଦାସଙ୍କ କଥା ବିଚାର କରିପାରିବା । ଆମେ ଦିନେ 'ଜୟ ଜବାନ ଜୟ କିଷାନ' ପରି ଯେଉଁ ଉଦ୍‌ଘୋଷଣାଟି ଶୁଣିଲେ ତାହା ଅନେକ ଆଗରୁ ଓଡ଼ିଶାରେ ପ୍ରଣୟନ ହୋଇ ସାରିଥିଲା । ସେତେବେଳେ ଉତ୍କଳର ସାଧାରଣ ଜନତାର ଚିନ୍ତନ ଥିଲା ଦେଶର ରକ୍ଷା, ସୀମାର ସୁରକ୍ଷା, ଆଭ୍ୟନ୍ତରୀଣ ଶାନ୍ତି ସ୍ଥାପନ ତଥା ଯେଉଁ ସମ୍ପତ୍ତି ପ୍ରକୃତି ସୂତ୍ରରେ ଆମେ ପ୍ରାପ୍ତ ହୋଇଛନ୍ତି– ତାହାକୁ ରକ୍ଷା କରିବା । କର୍ତ୍ତବ୍ୟ ସମ୍ପାଦନ ହିଁ ଥିଲା ସେତେବେଳେ ବ୍ୟକ୍ତିର ମୁଖ୍ୟ ସ୍ୱପ୍ନ । ସେଥିପାଇଁ ହୋଇପାରେ ପ୍ରାଣବଳୀ, ହୋଇପାରେ କୃଚ୍ଛ୍ର ସାଧନା – ସେଥିପାଇଁ ନଥିଲା ଦ୍ୱିଧା ଓ ଶଙ୍କା । ତେଣୁ ଓଡ଼ିଶାର ସାମରିକ ସାଂସ୍କୃତିକ ପରିମଣ୍ଡଳରେ ପାଇକମାନେ ଥିଲେ ଗର୍ବ ଓ ଗୌରବର ସଂକେତ, ସ୍ମରଣୀୟ ବିଭୁତି ।

ଆମ ପୁରାଣ ରଚନାର ପ୍ରାଚୀନତାକୁ ଯଦି ସ୍ୱୀକାର କରାଯାଏ ବିଭିନ୍ନ ପରିପ୍ରେକ୍ଷୀରେ ସ୍ୱାଭିମାନର ପରିଚୟ ପାଇକମାନେ ଏଇ ପୁରାଣ ପୃଷ୍ଠାରେ ଅଂକିତ କରି ଯାଇଛନ୍ତି । ପୁରାଣ ପୃଷ୍ଠାରେ ଯେଉଁସବୁ ଯୁଦ୍ଧ ଓ ବୀରତ୍ୱର ନିଦର୍ଶନ ରହିଛି, ପାଇକମାନେ ଯେ ସେଥିରେ ଛାୟାକାୟା ପରି ବିଜଡ଼ିତ ଏଥିରେ ସଂଦେହ ନାହିଁ । 'ମାଧବ ଧର୍ମ ସୂତ୍ର' ଓ ଐତରୀୟ ଆରଣ୍ୟକ ପରି ଦୁଇଗୋଟି ପୁରାଣରେ ଓଡ଼ିଆ ସୈନିକଙ୍କ କାହାଣୀ ଗୌରବଦୀପ୍ତ ଭାବରେ ବର୍ଣ୍ଣିତ । ସୂର୍ଯ୍ୟବଂଶର ବୀରପୁଙ୍ଗବ ରାଜା ରଘୁ ଯେତେବେଳେ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଗମନ କରୁଥିଲେ, ସେତେବେଳେ ସେ ଉଡ୍ର ବା କଳିଙ୍ଗବାସୀଙ୍କ ସମର ନିପୁଣତାର ଭୂରି ଭୂରି ପ୍ରଶଂସା କରୁଛନ୍ତି । ମହାଭାରତର କୁରୁକ୍ଷେତ୍ର ଯୁଦ୍ଧ ବର୍ଣ୍ଣନାରେ ଲିପିବଦ୍ଧ ଅଛି ଯେ ସେତେବେଳେ ଯେଉଁ ବୀରଯୋଦ୍ଧାମାନେ ନିଜକୁ ରଣାଙ୍ଗନରେ ନିୟୋଜନ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ କଳିଙ୍ଗ ନରପତି କେତୁମାନ, ଶୁକ୍ରଦେବ, ଭାନୁମାନ ଓ ଶୁକ୍ରଦେବଙ୍କ ସୈନ୍ୟମାନେ । ଏମାନେ କୌରବମାନଙ୍କ ସପକ୍ଷରେ ନିଜକୁ ଉତ୍ସର୍ଗ କରି ନିଜର ରଣ କୌଶଳ ପ୍ରଦର୍ଶନ କରିଥିବାର ଜଣାଯାଏ । ଶୁଣାଯାଏ ପରବର୍ତ୍ତୀ



ସମୟରେ ପାଣ୍ଡବ ବଂଶୋଦ୍ଭବ ସହଦେବ ଯେତେବେଳେ କଳିଙ୍ଗ ବିଜୟ ଉଦ୍ଦେଶ୍ୟରେ ଉତ୍କଳ ପରିଭ୍ରମଣରେ ଆସିଥିଲେ, ସେତେବେଳେ ଓଡ଼ିଆ ବୀରଙ୍କ ରଣକୌଶଳ, ଯୋଦ୍ଧୃକଳା, ବୀରତ୍ୱବିଭା ଦେଖି ଚକିତ ହୋଇ ଉଠିଥିଲେ । କଥାଟି ଏତିକିରେ ସୀମିତ ହୋଇ ରହି ନଥିଲା । ପାଞ୍ଚାଳମାନେ ଯେତେବେଳେ ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରିଥିଲେ, ସେତେବେଳେ ସେମାନେ ସମର ପ୍ରିୟ ଏ ଓଡ଼ିଆଙ୍କ ରଣଦକ୍ଷତା ଦେଖି ଧନ୍ୟ ଧନ୍ୟ କହିଥିଲେ । ପୁରାଣ ଯୁଗର ଇତିହାସ କହେ – ସମଗ୍ର ଭାରତବର୍ଷରେ ଉତ୍କଳୀୟଙ୍କୁ ବାଦଦେଲେ ଆଉକେହି ଜାତି ଏପରି ରଣ କୁଶଳତାକୁ ଅଗ୍ରାଧିକାର ଦେଇଥିଲେ । ସେଥିପାଇଁ ତ କୁହାଯାଇଛି 'କଳିଙ୍ଗା ସାହାସିକାଃ'।

ଏଠାରେ ପ୍ରକାଶଥାଉକି ଏ ଜାତିର ସାହସିକତା କେବଳ ଯେ ଯୁଦ୍ଧାଭିଯାନରେ ପ୍ରଦର୍ଶିତ ହୋଇଥିଲା, ତାହା ନୁହେଁ ବାଣିଜ୍ୟ ବ୍ୟବସାୟ ସହିତ ଉପନିବେଶ ସ୍ଥାପନରେ ସେମାନେ ଥିଲେ ପାରଙ୍ଗମ, ଦକ୍ଷ । ବାଣିଜ୍ୟମାନସିକତା ନେଇ ଉତ୍କଳୀୟମାନେ ଯେତେବେଳେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବ୍ରହ୍ମଦେଶ ସହିତ ପୂର୍ବ ଭାରତୀୟ ଦୀପପୁଂଜକୁ ଅଧିକାର କରିଥିଲେ, ସେତେବେଳେ ଅମାପ ବୀରତ୍ୱ ଭାବନା ତାଙ୍କୁ ସଫଳତାର ସ୍ୱାଦୁ ଚଖାଇବାରେ ସହଯୋଗ କରିଥିଲା । କେତେକ ଐତିହାସିକ ମତବ୍ୟକ୍ତ କରନ୍ତି ପ୍ରାଚୀନର କଳିଙ୍ଗ ନରପତିଙ୍କ ସାମରିକ ବାହିନୀ ଥିଲା ଖୁବ୍ ଶକ୍ତିଶାଳୀ । ପ୍ରାୟତଃ ଷାଠିଏ ହଜାର ପଦାତିକ, ଦଶହଜାର ଅଶ୍ୱାରୋହୀ ଓ ସାତଶହ ହସ୍ତୀ ଅନ୍ତର୍ଭୁକ୍ତ ଥିଲେ । ଆମେ ଯଦି ମୌର୍ଯ୍ୟ ଯୁଗକୁ ଫେରିଯିବା, ସେତେବେଳେ ଉତ୍କଳ କିପରି ସମୃଦ୍ଧିଶାଳୀ ରାଷ୍ଟ୍ରର ମାନ୍ୟତା ପାଇଥିଲା, ତାହା ସହଜରେ ବୁଝିହେବ । ଏ ସମ୍ପର୍କରେ ପରିବ୍ରାଜକ ମେଘାସ୍ଥିନ୍ସ ତାଙ୍କ ବିବରଣୀରେ ଯଥାର୍ଥ ଭାବରେ ଉଲ୍ଲେଖ କରିଯାଇଛନ୍ତି । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସେଥିପାଇଁ ତ ତାଙ୍କ ସାମ୍ରାଜ୍ୟ ବିସ୍ତାର ଯୋଜନାରେ ସବୁ ମଧ୍ୟରେ ଓଡ଼ିଶା ଆକ୍ରମଣ ପାଇଁ ସାହସ କରି ନଥିଲେ । ଇତିହାସର ଆଇନାରେ କଳିଙ୍ଗ ମହାସମର କଥା ଚିନ୍ତା କଲେ ଜଣାଯାଏ ଦୟାନଦୀର ଅବବାହିକାରେ ଖ୍ରୀଷ୍ଟପୂର୍ବ ୨୬୧ ରେ ଯେଉଁ ଲୋମହର୍ଷଣକାରୀ ଘଟଣାର ସୂତ୍ରପାତ ହୋଇଥିଲା, ସେଥିରେ ଲକ୍ଷ ଲକ୍ଷ କଳିଙ୍ଗ ସେନା ଯେଉଁ ଅପୂର୍ବ ବୀରତ୍ୱର ପ୍ରଦର୍ଶନ କରିଥିଲେ, ତା'ର ପଟ୍ଟାନ୍ତର ନାହିଁ। ସମୟର ସନ୍ଧିକ୍ଷଣରେ ସେମାନେ ଯୋଦ୍ଧୃ ପର୍ଯ୍ୟାୟରେ ପଛଘୁଞ୍ଚା ଦେଇଥିଲେ ମଧ୍ୟ ନୈତିକ ବିଜୟର ଧ୍ୱଜା ଉଡାଇ ଚଣ୍ଡାଶୋକଙ୍କୁ ପରିଣତ କରିଦେଇଥିଲେ ଧର୍ମାଶୋକରେ । ଉତ୍କଳର ପାଇକ ସେନା ଯେପରି ଥିଲେ ଯୋଦ୍ଧା, ସେପରି ଥିଲେ କୌଶଳୀ ବିଚକ୍ଷଣ, ପାରଙ୍ଗମ ତଥା ବୁଦ୍ଧିବାଦୀ। ଆଜି ଭାରତର ସମର ଇତିହାସର ପୃଷ୍ଠାରେ ଉପରୋକ୍ତ ଘଟଣାଟି ବିଜ୍ଞମାନସରେ ଏକ ଆଲୋକସ୍ତମ୍ଭ ରୂପେ ବିଦ୍ୟମାନ । ସମ୍ରାଟ ଖାରବେଳଙ୍କ କ୍ଷେତ୍ରରେ ମଧ୍ୟ ଉତ୍କଳର ପାଇକସେନା ଅପୂର୍ବ ପାରଦର୍ଶିତା ପ୍ରଦର୍ଶନ କରିଥିଲେ। ସେତେବେଳେ ଆଫ୍‌ଗାନସ୍ଥାନ ପର୍ଯ୍ୟନ୍ତ ଯେଉଁ ଦିଗ୍‌ବିଜୟ ହୋଇଥିଲା, ସେଥିରେ ଯବନମାନେ ଶଙ୍କାକୁଳ ହୋଇ ଭାରତରୁ ବିତାଡ଼ିତ ହୋଇଥିଲେ। ଉତ୍କଳ ଫେରିପାଇଥିଲା ତାର ଅପହୃତ ଜୀନାସନକୁ । ଉତ୍କଳ ଗୌରବାନ୍ୱିତ ହୋଇ ଉଠିଲା ପୁନଶ୍ଚ । ସମୟ ବଦଳି ଗଲା ଏବଂ ପରେ ପରେ ଭୌମକର ବଂଶର ସ୍ୱାଭିମାନୀ ରାଜା ଓ ରାଣୀମାନେ ଏଇ ପାଇକସେନାଙ୍କ ସାମରିକ ଦକ୍ଷତା ଉପରେ ଭରସା ଏବଂ ବିଶ୍ୱାସ ସ୍ଥାପନ କରି ଦୀର୍ଘକାଳ ରାଜୁତି କରିବାର ସୁଯୋଗ ପାଇଥିଲେ। ସବୁଠି ବ୍ୟାପି ଯାଇଥିଲା ପାଇକମାନଙ୍କ ସମ୍ମାନ, ଦକ୍ଷତାର ଯଶୋଗାନ । ଇତିହାସ କହେ ଏହି ସମୟରେ ପ୍ରସିଦ୍ଧ ଚୀନ ପରିବ୍ରାଜକ ହୁଏନ୍‌ସାଂ ତାଙ୍କ ଭ୍ରମଣ ବିବରଣୀରେ ପାଇକ ସେନାଙ୍କର ଗୁଣଗାନ କରି ଅନେକ ପ୍ରଶସ୍ତି ପ୍ରକାଶ କରିଯାଇଛନ୍ତି।

କ୍ରମ ପର୍ଯ୍ୟାୟରେ ସମୟର ପରିବର୍ତ୍ତନ, ସ୍ପନ୍ଦନ ତଥା ସଂକେତର ପ୍ରତିଫଳନରେ ପାଇକମାନେ ନିଜକୁ ବହୁ କ୍ଷେତ୍ରରେ ନିୟୋଜିତ କରିଛନ୍ତି । ଅଭ୍ୟାସ କ୍ଷେତ୍ର, ପାଇକ ଆଖଡ଼ା ଶାଳାରୁ ଅଜସ୍ର ଶକ୍ତି ସାମର୍ଥ୍ୟ ତଥା ଶପଥର ଉଂଲଘନରେ ପାଇକମାନେ ଜାତିର ଗୌରବରେ ନିଜକୁ କରିଛନ୍ତି ଗୌରବାନ୍ୱିତ । ନାହିଁ ପଛଘୁଞ୍ଚା, ନାହିଁ ଅବସାଦ । କଥା ଉଠେ– ଯେତେବେଳେ ମହାପ୍ରଭୁ ଜଗନ୍ନାଥଙ୍କୁ ପାତାଳୀ କରାଯାଇଥିଲା, ସେତେବେଳେ ଏହି ପାଇକସେନା ଯବନମାନଙ୍କୁ ପ୍ରତିହତ କରି ଠାକୁରଙ୍କୁ ପୁନଃ ପ୍ରତିଷ୍ଠାପୂର୍ବକ ଓଡ଼ିଶାର ଧାର୍ମିକ ସଦ୍‌ଭାବନାକୁ ଫେରାଇ ଆଣିଥିଲେ । ସେସମୟରେ ସୂର୍ଯ୍ୟବଂଶୀ ନରପତିମାନଙ୍କର ଦିଗ୍ ବିଜୟର ଅନ୍ତରାଳରେ ଉତ୍କଳର ପାଇକ ସେନା ଥିଲେ ଚାବିକାଠି । ସମଗ୍ର ଭାରତାଞ୍ଚଳ ମୁସଲମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇଥିବା ବେଳେ ପାଇକସେନା ସେତେବେଳେ ଉତ୍କଳର ରକ୍ଷାକବଚ ହୋଇ ଜଗି ରହିଥିଲେ, ଫଳରେ ଉତ୍କଳର ସ୍ୱାଧୀନତା ରହିଥିଲା ଅକ୍ଷୁଣ୍ଣ । ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇ ଉଠିଥିଲା ରଣୋନ୍ମାଦନାର ଅପୂର୍ବ ମୁଦ୍ରାରେ । କୁହାଯାଏ ବହୁ ଚର୍ଚ୍ଚିତ ରାଜା ପୁରୁଷୋତ୍ତମ ଦେବ ଯେଉଁ କାଞ୍ଚିଅଭିଯାନରେ ନିଜକୁ ନିୟୋଜିତ କରିଥିଲେ, ସେତେବେଳେ ଉତ୍କଳୀୟ ପାଇକ ସେନା ବେଶରେ ସ୍ୱୟଂ ଜଗନ୍ନାଥ ବଳଭଦ୍ର କଳାଘୋଡ଼ା, ଧଳାଘୋଡ଼ା ଚଢ଼ି ମାଣିକ ଗଉଡୁଣୀଠାରୁ



ଦହିପିଇ ଯୁଦ୍ଧ ଯାତ୍ରା କରି ଥିଲେ । ବାସ୍ତବରେ ଓଡ଼ିଆ ଜାତିର ବୀରତ୍ୱର ପରାକାଷ୍ଠା ପାଇଁ ଆଉ ଅଧିକ କ'ଣ ନିଦର୍ଶନ ଥାଇପାରେ ?

ପରେ ପରେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯେତେବେଳେ ଇଂରେଜମାନେ ଓଡ଼ିଶା ଆକ୍ରମଣ କରିବାକୁ ଚେଷ୍ଟିତ ହୋଇଥିଲେ, ତାଙ୍କର ପରମ ପ୍ରତିବନ୍ଧକ ହୋଇଥିଲେ, ଓଡ଼ିଶାର ପାଇକସେନା ଅମିତ ସାହସୀ, ନିର୍ଭୟ ଶତ୍ରୁ ଦମନକାରୀ ପାଇକ ଶକ୍ତି ଇଂରେଜମାନଙ୍କ ମନରେ ହୃତ୍‌କମ୍ପ ସୃଷ୍ଟି କରିଥିଲା। ଶୁଣାଯାଏ ଫରାସୀ ଓ ମରହଟ୍ଟାମାନଙ୍କୁ ପାଇକମାନେ ବିଭିନ୍ନ ସମୟରେ ରାଜଭକ୍ତି ଓ ସ୍ୱଦେଶପ୍ରେମର ଦ୍ୱାହୀଦେଇ ଯେପରି ହତଚକିତ କରାଇଥିଲା, ତାହା ଇତିହାସରେ ସୃଷ୍ଟି କରିଥିଲା ଏକ ବିରଳ ଅଧ୍ୟାୟ। ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଛଳନାକୁ ଆଶ୍ରାକରି ଓଡ଼ିଶା ସିନା ଅଧିକାର କଲେ କିନ୍ତୁ ପାଇକମାନେ ସମସ୍ତ ଶକ୍ତିକୁ ଏକତ୍ରିତ କରି ୧୮୧୭ ମସିହାରେ ବୀର ବାଦ୍ୟ ବଜାଇ ପାଇକ ବିଦ୍ରୋହର ଶୁଭସ୍ତମ୍ଭ ପ୍ରୋଥିତ କରିଥିଲେ। ଅନେକ ପାଇକ ବୀରଙ୍କ ମଧ୍ୟରେ ଆଗଧାଡ଼ିର ଯେଉଁ ଯୋଦ୍ଧାଙ୍କ ନାମ ଶୁଣାଯାଏ ସେ ହେଲେ ବକ୍ସି ଜଗବନ୍ଧୁ । ସେ ହିଁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅଗ୍ର ସାରଥୀ, ଅଗ୍ରପୂଜ୍ୟ। ଜଳରେ, ସ୍ଥଳରେ, ଜଙ୍ଗଲରେ କଠୋର ଶ୍ରମ ସ୍ୱୀକାର ପୂର୍ବକ ମା' ମାଟିର ସମ୍ମାନ ପାଇଁ ଜନ୍ମମାଟି ଉତ୍କଳର ମର୍ଯ୍ୟାଦା ଓ ସ୍ୱାର୍ଥ ପାଇଁ ପାଇକ ସେନାର ଭୂମିକା ଥିଲା ଅପ୍ରକାଶ୍ୟ। ବୀର ସୁରେନ୍ଦ୍ର ସାଏଙ୍କ ନାମ ଶୁଣିଲେ ସେତେବେଳେ କିଏ ବା ଚକିତ ହେଉ ନଥିଲା। ସେତେବେଳେ ଦେଶ ପାଇଁ ଜାତିପାଇଁ କାମ କରିବାକୁ ପାଇକମାନେ କେବେ ବେତନ ଭୋଗ କରୁ ନଥିଲେ। ତାଙ୍କ ମନରେ ବେତନ ଭୋଗ ଥିଲା ଏକ ଅପରାଧ, ଏକ ପାପ । ପରିବାର ପ୍ରତିପୋଷଣ ପାଇଁ ସେମାନଙ୍କୁ ବରଂ ଜାଗିରି ମିଳୁଥିଲା । ସେମାନଙ୍କୁ ମିଳିଯାଉଥିଲା ବରଂ ଯୁଦ୍ଧାସ୍ତ୍ର । ଗୋଟିଏ ଗୋଟିଏ ଦୁର୍ଗ ବା ପାଇକାଳୀ ଗ୍ରାମରେ ସେମାନେ ଆଖଡ଼ାଶାଳା ନିର୍ମାଣ କରି ଅଭ୍ୟାସରେ ନିୟୋଜିତ ହେଉଥିଲେ। ଗଦାଯୁଦ୍ଧ, ମୁଷ୍ଟିଯୁଦ୍ଧ, ମଲ୍ଲଯୁଦ୍ଧ, ତରବାରୀ, ତୀରଚାଳନା ପରି ନାନା କୌଶଳ ଅବଲମ୍ବନ କରି ସେମାନେ ନିଜର ପାରଦର୍ଶିତା ବଜାୟ ରଖିଥିଲେ। ପାଇକ ବିଶ୍ୱାସରେ ସର୍ବଦା ଗୋଟିଏ କଥା ଅଗ୍ରାଧିକାର ଲାଭ କରିଥିଲା, ତାହା ହେଉଛି ଯେ ଜନ୍ମମାଟି ପାଇଁ ପ୍ରାଣ ବଳି ଦେଲେ ପରମପୁଣ୍ୟ ଅର୍ଜନ ହୋଇଥାଏ। ଏକଥା ମଧ୍ୟ ତତ୍କାଳୀନ ସାହିତ୍ୟରେ ବିଶଦ ଭାବରେ ବର୍ଣ୍ଣିତ ହୋଇଥିଲା। ଓଡ଼ିଶାର ପାଇକମାନେ ଏପରି ଭାବରେ ଆପଣାକୁ ବୀର ବେଶରେ ସଜ୍ଜିତ କରୁଥିଲେ ଯାହା ଦେଖିଲେ ଶତ୍ରୁପକ୍ଷର ନିଶ୍ଚିତ ହୃତ୍‌କମ୍ପ ସୃଷ୍ଟି ହେବ। ମୁଣ୍ଡରେ ଦୃଢ଼ପଗଡ଼ି, ବାହୁରେ ମୋଟା ବାହୁଟି, କାନରେ ସୁଶୋଭିତ କୁଣ୍ଡଳ, ଶିରରେ ଶିରସ୍ତ୍ରାଣ, ହାତରେ ଢ଼ାଲ ତରବାରୀ ତ କଟୀରେ କଟାରୀ, ମୁଣ୍ଡରେ ସିନ୍ଦୂର କଲି ଥିଲା ପାଇକମାନଙ୍କର ବୀରତ୍ୱ ରୂପ ବିଭବର ବିଶେଷତ୍ୱ। ଯାହାକୁ ଦେଖିଲେ ଯେ କେହି ଶଙ୍କି ଉଠିବ ଏବଂ ପାଇକ ଚେତନାର ପରିଚୟ ପାଇଯିବ। ଅନ୍ୟପକ୍ଷରେ ହୁଂକାର ଓ କୁହାଟ ଥିଲା ଆଉ ଏକ କଳା ଯାହାକୁ ଅବଲମ୍ବନ କରି ପାଇକମାନେ ଛାତି ଫୁଲେଇ ବାଟ ଚଲୁଥିଲେ। ବୋଲୁଥିଲେ ଜାତୀୟ ଚେତନାର ସଂଗୀତ ବଜାଉ ଥିଲେ କେତେନା କେତେ ବୀରବାଦ୍ୟ ଯଥା– ତୂରୀ, ଭେରୀ, ଟମକ, ଢ଼ୋଲ, ନାଗରା, ସିଙ୍ଗା, କାହାଳୀ, ଚାଙ୍ଗୁ, ବଡ଼କାଠ, ଶଙ୍ଖ ଇତ୍ୟାଦି।

ଆଜି ସମୟ ପରିବେଶ ସହିତ ଅବସ୍ଥାର ପଟ୍ଟ ପରିବର୍ତ୍ତନ ଘଟିଛି। ବିଜ୍ଞାନର ଯାତ୍ରା ଲୋକମାନଙ୍କୁ ଭିନ୍ନ ବିଶ୍ୱାସ ଭିନ୍ନ ଭାବନାରେ ମଣ୍ଡିତ କରିଛି। ମାତ୍ର ଅତିକ୍ରାନ୍ତ ଅନେକ ସ୍ମୃତିକୁ ଏ ଜାତି ତା'ର ସୁଯୋଗ୍ୟ ଦାୟାଦ ସୂତ୍ରରେ ସ୍ମୃତିରେ ସଜାଗ ରଖିଛି। ଯେତେବେଳେ ମୃଣ୍ମୟୀ ଶାରଦୀୟ ଅବକାଶରେ ଦୁର୍ଗାଙ୍କର ପୂଜାରାଧନା ହୁଏ ସେତେବେଳେ ଉତ୍କଳର ସେହି ପାଇକ ବଂଶଧର ବିଜୟା ଦଶମୀ ପାଳନ ଅବସରରେ ତାଙ୍କର ଅସ୍ତ୍ର ଶସ୍ତ୍ର ପୂଜା କରନ୍ତି। ଆଉଥରେ ଆଖଡ଼ାଶାଳା କମ୍ପି ଉଠେ। ନାଚ, ଗୀତ, ବାଦ୍ୟ ସାହସିକ କ୍ରୀଡ଼ା ପ୍ରଦର୍ଶନରେ ସେମାନେ ପୂର୍ବର ବୀରପଣକୁ ସ୍ମରଣକୁ ଆଣନ୍ତି। ଇଷ୍ଟ ଦେବୀଙ୍କ ସମ୍ମୁଖରେ ଆପଣାକୁ ଉତ୍ସର୍ଗ କରନ୍ତି। ଏ କାର୍ଯ୍ୟଧାରାରେ ଓଡ଼ିଆ ଜାତି ପାଇଁ ଥାଏ ଅଜସ୍ର ଶିକ୍ଷା ଓ ପ୍ରୋତ୍ସାହନ। ପାଇକ ଚେତନା ପ୍ରମାଣ କରେ କର୍ପୂର ସିନା ଉଡ଼ି ଯାଇଛି ମାତ୍ର କନା ତା'ର ସମ୍ମାନ ହରାଇ ନାହିଁ। ଆମେ ଯେତେବେଳେ ଆମର ସବୁକିଛିକୁ ହରାଇ ନୂତନର ସଂଧାନରେ ଅଗ୍ରସର ହେଉଛେ ପ୍ରାଚୀନର ଦ୍ୟୁତି ଓ ପରମ୍ପରାକୁ ସାମଗ୍ରିକ ଭାବରେ ପାଶୋରି ଦେଲେ ଚଳିବ ନାହିଁ। ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ପାରସ୍ପରିକ ସମ୍ବନ୍ଧିତ ଏକ ପରିପୂର୍ଣ୍ଣତା ହୋଇପାରେ। ମାତ୍ର ଆମ ପରିଚୟର ବିଶେଷତ୍ୱ ସଂଜୀବିତ ହୋଇ ଉଠିବା କ୍ଷେତ୍ରରେ ଆମର ଚେତନା ସଜାଗ ରହିବା ଉଚିତ।

ଓଡ଼ିଆ ବିଭାଗ
ଯୁଣଭଦ୍ରା ମହାବିଦ୍ୟାଳୟ, ବିତନା, ଯାଜପୁର

◆◆◆





# ସ୍ୱାମୀ ବିବେକାନନ୍ଦଙ୍କର ରାଜନୈତିକ ବିଚାର

**ସୌରୀବନ୍ଧୁ କର**

ସ୍ୱାମୀ ବିବେକାନନ୍ଦଙ୍କର ୧୫୦ ତମ ଜୟନ୍ତୀ ବିଶ୍ୱବ୍ୟାପୀ ପାଳନ କରାଯାଉଛି। ସ୍ୱାମୀଜୀଙ୍କ ସମ୍ପର୍କରେ ଅନେକ ଆଲୋଚନା ହେଉଛି, ପୁସ୍ତକ ଲେଖାଯାଉଛି। ସ୍ୱାମୀଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶ ଗଠନ କାର୍ଯ୍ୟରେ ବ୍ରତୀ ହେବାକୁ ଏବଂ ନିଜ ଜୀବନକୁ ଗଠନ କରିବାକୁ ମଧ୍ୟ ଯୁବପିଢ଼ିକୁ ପରାମର୍ଶ ଓ ଉଦ୍‌ବୋଧନ ଦିଆଯାଉଛି। ବର୍ତ୍ତମାନ ଆମେ ଏକବିଂଶ ଶତାବ୍ଦୀରେ ବାସ କରୁଛେ। ଏହା ସମଗ୍ର ମାନବ ସମାଜ ଆଗରେ ଅନେକ ଆହ୍ୱାନ ନେଇ ଉପସ୍ଥିତ ହୋଇଛି। ସମଗ୍ର ବିଶ୍ୱବ୍ୟବସ୍ଥାରେ ମନୁଷ୍ୟ ସମ୍ମୁଖୀନ ହେଉଥିବା ସମସ୍ୟାର ସମାଧାନ ରାଷ୍ଟ୍ରମାନଙ୍କ ଦ୍ୱାରା କରାଯିବା ବେଳେ, ସାମୂହିକ ଭାବରେ ମଧ୍ୟ କରିବାର ପ୍ରଚେଷ୍ଟା ହେଉଛି। ଯେହେତୁ ଶାସନ ବ୍ୟବସ୍ଥା ରାଜନୈତିକ ଦଳ ବା ରାଜନୈତିକ ଶକ୍ତିମାନଙ୍କ ଦ୍ୱାରା ପରିଚାଳିତ, ତେଣୁ ସମାଜରେ ରାଜନୀତି ହିଁ ସବୁକିଛି ନିର୍ଦ୍ଧାରଣ କରୁଛି । ସ୍ୱାମୀ ବିବେକାନନ୍ଦଙ୍କ ସମ୍ପର୍କରେ ଆଲୋଚନା କଲାବେଳେ ସମାଜକୁ ନିୟନ୍ତ୍ରିତ କରୁଥିବା ରାଜନୈତିକ ଦିଗଟି ପ୍ରତି ଦୃଷ୍ଟି ଦେବାକୁ ହେବ।



ସ୍ୱାମୀ ବିବେକାନନ୍ଦ ରାଜନୈତିକ ନେତା ନଥିଲେ କିମ୍ବା ତାଙ୍କର କୌଣସି ରାଜନୈତିକ ଦଳ ସହିତ ସମ୍ପର୍କ ନଥିଲା। ସ୍ୱାମୀଜୀ ମଧ୍ୟ କୌଣସି ରାଜନୈତିକ ଆନ୍ଦୋଳନରେ ଜଡିତ ନଥିଲେ । ସେ ନିଜେ କହିଛନ୍ତି– ମୁଁ କୌଣସି ରାଜନୀତିଜ୍ଞ ନୁହେଁ କିମ୍ବା ରାଜନୈତିକ ଆନ୍ଦୋଳନକାରୀ ନୁହେଁ । ତେଣୁ ସେ ୧୮୯୭ ମସିହାରେ ଯେତେବେଳେ ରାମକୃଷ୍ଣ ମିଶନ ଆରମ୍ଭ କଲେ, ତା'ର ରାଜନୀତି ସହିତ କୌଣସି ସମ୍ପର୍କ ରହିବ ନାହିଁ ବୋଲି ମଧ୍ୟ ଉଲ୍ଲେଖ କଲେ। ଏପରିକି ୧୮୯୪ ମସିହାରେ ସେ ତାଙ୍କର ଜଣେ ଶିଷ୍ୟ ପାଖକୁ ଲେଖିଥିବା ଚିଠିରେ ଲେଖିଥିଲେ, ବିଶ୍ୱରେ କେବଳ ସତ୍ୟ ଓ ଈଶ୍ୱର ହେଉଛନ୍ତି ବାସ୍ତବ ରାଜନୀତି, ଅନ୍ୟ ସବୁ ବାଜେ କଥା। ଏହା କହିବା ସତ୍ତ୍ୱେ ଦେଖାଯାଉଛି ଯେ ସ୍ୱାମୀଜୀ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ଲକ୍ଷ ଲକ୍ଷ ଯୁବପିଢ଼ିର ଥିଲେ ପ୍ରେରଣାର ସ୍ରୋତ। ତାଙ୍କର ଅଗ୍ନିବର୍ଷୀ ବକ୍ତୃତା ପଢ଼ି ମୁକ୍ତି ସଂଗ୍ରାମରେ ଯୋଗ ଦେବାକୁ ଯୁବକମାନେ ଉଦ୍‌ବୁଦ୍ଧ ହୋଇଥିଲେ।

ସ୍ୱାଧୀନତା ସଂଗ୍ରାମର ପ୍ରମୁଖ ମହାନ୍ କାଣ୍ଡାରୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏହାକୁ ଉପଲବ୍ଧି କରି କହିଥିଲେ, ଯଦିଓ ସ୍ୱାମୀଜୀ କୌଣସି ରାଜନୈତିକ ବାର୍ତ୍ତା ଆମକୁ ଦେଇନାହାନ୍ତି, କିନ୍ତୁ ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଛନ୍ତି କିମ୍ବା ତାଙ୍କ ଲେଖା ପଢ଼ିଛନ୍ତି, ସେମାନଙ୍କ ମଧ୍ୟରେ ଦେଶାତ୍ମବୋଧର ଭାବନା ଓ ରାଜନୈତିକ ବିଚାରର ଭାବନା ଜାଗ୍ରତ ହୋଇଛି।

ସାଧାରଣ ଭାବରେ କହିଲେ ସନ୍ନ୍ୟାସୀ ଯେପରି ହେବା କଥା ସ୍ୱାମୀ ବିବେକାନନ୍ଦ ସେପରି ସନ୍ନ୍ୟାସୀ ନଥିଲେ। ଇତିହାସକୁ ଅନୁଧ୍ୟାନ କଲେ ଦେଖାଯାଏ, ସେ ଥିଲେ ଅତି ଅସାମାନ୍ୟ, ଉତ୍ତୁଙ୍ଗ ସନ୍ନ୍ୟାସୀ ଏବଂ ମହାନ୍ ସାମାଜିକ କ୍ରାନ୍ତିକାରୀ। ଶ୍ରୀରାମକୃଷ୍ଣଙ୍କ ଜୀବନୀ ଓ ଭାବକୁ ଆଧାର କରି ସ୍ୱାମୀଜୀ ମନୁଷ୍ୟର ସେବା ମାଧ୍ୟମରେ ଈଶ୍ୱରଙ୍କୁ ପୂଜା କରିବାର ବିଚାରକୁ ଉପସ୍ଥାପିତ କରିଥିଲେ। ଏଇ ମଣିଷ ହିଁ ଈଶ୍ୱର ଏବଂ ମଣିଷର ସେବା ହିଁ





ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ପୂଜା ଏହା ଆଧ୍ୟାତ୍ମିକ ଇତିହାସରେ ହୋଇଥିଲା ସବୁଠାରୁ ବଡ଼ ଚ୍ୟାଲେଞ୍ଜ ବା ଆହ୍ୱାନ। ସମାଜରୁ ପୃଥକ ରହି ନୁହେଁ ବରଂ ଏଇ ସମାଜ ଜୀବନ ମଧ୍ୟରେ ରହି, ସମାଜର ସବୁକିଛି ସମସ୍ୟାକୁ ସମ୍ମୁଖୀନ କରି ଏଇ ଆଧ୍ୟାତ୍ମିକ ଅନୁଭୂତିକୁ ପ୍ରାପ୍ତ କରିହେବ, ଏହା ଥିଲା ନୂତନ ନବଜାଗରଣର ଅୟମାରମ୍ଭ। ତେଣୁ ସ୍ୱାମୀଜୀ ସଚେତନ ଭାବରେ କୌଣସି ରାଜନୈତିକ ଭାବ ସୃଷ୍ଟି କରିବା ପାଇଁ ଚେଷ୍ଟା କରି ନଥିଲେ କିମ୍ବା ତାଙ୍କ ମିଶନର ଲକ୍ଷ୍ୟ ଏହା ନଥିଲା। ସେ ଚାହୁଁଥିଲେ ବ୍ୟକ୍ତି ଓ ସମାଜ ସାମଗ୍ରିକ ଭାବରେ ବିକାଶ ଲାଭ କରୁ। ଶାରୀରିକ ବୌଦ୍ଧିକ, ନୈତିକ ଓ ଆଧ୍ୟାତ୍ମିକ ସ୍ତରରେ ବ୍ୟକ୍ତି ଓ ସମାଜର ଅଭିବୃଦ୍ଧି ଘଟୁ। ଏହାଦ୍ୱାରା ଏକ ସମତୁଲ ବିକାଶ ହେବ। ଏଥିରେ ମଧ୍ୟ ରାଜନୀତିର ଭୂମିକା ରହିବ।

ରାଜନୀତି ତାଙ୍କ ପାଇଁ ଅସ୍ପୃଶ୍ୟ ନଥିଲା କିମ୍ବା ସେ ରାଜନୀତିକୁ ନକାରାତ୍ମକ ଦୃଷ୍ଟିରେ ଦେଖୁ ନଥିଲେ। କିନ୍ତୁ ସେ ଅନୁଭବ କରୁଥିଲେ ଯେ ଆମର ସାମଗ୍ରିକ ରାଜନୈତିକ ବିଚାର କେବଳ ରାଜନୀତି ଦ୍ୱାରା ସମାଧାନ ହେବା ସମ୍ଭବ ନୁହେଁ। ଯଦିଓ ରାଜନୀତିର ଭୂମିକା କୌଣସି ପରିମାଣଗତ ନୁହେଁ ବରଂ ପରିପୂରକ। ସେ ସମଗ୍ର ଭାରତବର୍ଷ ପ୍ରବ୍ରଜ କରି ଏକ ଗଭୀର ରାଜନୈତିକ ଅନ୍ତର୍ଦୃଷ୍ଟି ଲାଭ କରିଥିଲେ। ବିଭିନ୍ନ ବ୍ୟକ୍ତି ଓ ସମଷ୍ଟି ସହିତ ତାଙ୍କର ଭାବର ଆଦାନ ପ୍ରଦାନ ହୋଇଥିଲା। ବିଭିନ୍ନ ଦେଶ ଭ୍ରମଣ କାଳରେ ସେ ଲୋକମାନଙ୍କର ଆଚାର, ବ୍ୟବହାର, ଦକ୍ଷତା ସମ୍ପର୍କରେ ମଧ୍ୟ ଜ୍ଞାନଲାଭ କରିଥିଲେ। ତାଙ୍କର ଭ୍ରମଣ ଜନିତ ଏହି ବ୍ୟାପକ ଦୃଷ୍ଟିଭଙ୍ଗୀ ହେତୁ, ସେ ସମସ୍ୟା ସମାଧାନ ନିଗୂଢ଼ତା ମଧ୍ୟକୁ ପ୍ରବେଶ କରିପାରିଥିଲେ।

ସ୍ୱାମୀଜୀଙ୍କ ପ୍ରାଥମିକତା ଥିଲା ମୁକ୍ତି ବା ସ୍ୱାଧୀନତା। କାରଣ ସେ ବିଚାର କରୁଥିଲେ ଯଦି ବ୍ୟକ୍ତିର ସ୍ୱାଧୀନତା ନଥାଏ, ତେବେ ତା'ର ବିକାଶ ହେବା ସମ୍ଭବ ନୁହେଁ। ବିକାଶ ସହିତ ସ୍ୱାଧୀନତା ବା ମୁକ୍ତି ପରସ୍ପର ପରିପୂରକ। କେହି କେହି ହୁଏତ ବିଚାର କରି ପାରନ୍ତି ବା କହି ପାରନ୍ତି ଯେ ଜଣେ ଅନ୍ୟ ଜଣକୁ ନିର୍ଦ୍ଦେଶ ଦେଲେ କିମ୍ବା ପଥପ୍ରଦର୍ଶକ ହେଲେ, ଅନ୍ୟର ବିକାଶ ହୋଇପାରେ କିନ୍ତୁ ଯେ ପଥ ଦେଖାଇବ ବା ନିର୍ଦ୍ଦେଶ ଦେବ ତା' ନିକଟରେ ମୁକ୍ତିର ବାଟଟି ରହିଥିବ। ଏପରି ବିଚାର ସମ୍ପୂର୍ଣ୍ଣ ଭାବେ ଭୁଲ। ଏପରି ବିଚାର ଫଳରେ ଦୀର୍ଘ ବର୍ଷ ଧରି ବିଶ୍ୱର କୋଟି କୋଟି ଲୋକ ଦାସତ୍ୱ ବନ୍ଧନରେ ବାନ୍ଧି ହୋଇ ରହିଛନ୍ତି ବୋଲି ସ୍ୱାମୀଜୀ ଉପଲବ୍ଧ କରିଥିଲେ। ସ୍ୱାମୀଜୀ ଚିନ୍ତା, ବାକ୍ୟ ଓ କାର୍ଯ୍ୟର ସ୍ୱାଧୀନତା ଉପରେ ଗୁରୁତ୍ୱ ଦେଇଥିଲେ। ସେ ମଧ୍ୟ ଖାଦ୍ୟ, ବସ୍ତ୍ର ଓ ବିବାହ ସମ୍ପର୍କରେ ସ୍ୱାଧୀନତା ରହିବା ଉପରେ ପ୍ରାଧାନ୍ୟ ଦେଇଥିଲେ। ଯେକୌଣସି ଉତ୍ତମ କାର୍ଯ୍ୟ ଅନ୍ୟର ହସ୍ତକ୍ଷେପ ଫଳରେ ତା'ର ମୌଳିକତ୍ୱ ହରାଏ ବୋଲି ତାଙ୍କର ମତ ଥିଲା। କୌଣସି ବ୍ୟକ୍ତିକୁ ଯଦି ବ୍ୟକ୍ତିଗତ ସ୍ୱାଧୀନତା ପ୍ରଦାନ କରାନଯାଏ, ତେବେ କେହି କେବେ ହେଲେ ସର୍ବୋତ୍କୃଷ୍ଟ ସଫଳତା ବା କାର୍ଯ୍ୟ ସମ୍ପାଦନ କରିପାରି ନାହିଁ, ଏହା ଥିଲା ତାଙ୍କର ମତ।

ସେ କହୁଥିଲେ ଆବଶ୍ୟକ ହେଉଛି ସ୍ୱାଧୀନ ଶରୀର, ସ୍ୱାଧୀନ ମନ ଓ ସ୍ୱାଧୀନ ଆତ୍ମା। ସ୍ୱାଧୀନତା ଓ ମୁକ୍ତି ହେଉଛି ମୋର ଧର୍ମ। ମୁଁ ବନ୍ଧନରେ ରହି ଉତ୍ତମ କାର୍ଯ୍ୟ କରିବା ଅପେକ୍ଷା ମୁକ୍ତ ଭାବରେ ମନ୍ଦ କାର୍ଯ୍ୟ କରିବାକୁ ପସନ୍ଦ କରିବି। ଅତୀତର କଥା ସ୍ମରଣ କରି ସେ କହିଥିଲେ, ଆମର ପୂର୍ବପୁରଷମାନେ ଧାର୍ମିକ ଚିନ୍ତାକୁ ମୁକ୍ତ ରଖିଥିଲେ, ଯାହାଫଳରେ ଆମେ ଏପରି ଏକ ଧର୍ମ ପାଇଛୁ । କିନ୍ତୁ ସେମାନେ ସମାଜକୁ ଶିକୁଳିରେ ବାନ୍ଧି ପକାଇଥିଲେ, ଯାହା ଫଳରେ ଆମ ସମାଜ ବ୍ୟବସ୍ଥା ମଧ୍ୟରେ ଭୟଙ୍କର ପୈଶାଚିକତା ପ୍ରବେଶ କଲା।

ତେଣୁ ସ୍ୱାମୀଜୀ ପ୍ରଥମେ ଏହି ସ୍ୱାଧୀନତା ଉପରେ ଗୁରୁତ୍ୱାରୋପ କଲେ, ଯାହା ତାଙ୍କର ସାମଗ୍ରିକ ମୁକ୍ତି ଚେତନାରୁ ପ୍ରକାଶିତ ହେଲା। ଗୋଟିଏ ପରାଧୀନ ରାଷ୍ଟ୍ର କେବେହେଲେ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଭାବରେ ମୁକ୍ତହୋଇ ନପାରେ। ଭାରତର ରାଜନୈତିକ ମୁକ୍ତି ପ୍ରଥମେ ଆବଶ୍ୟକ, ଏହା ସେ ବାରମ୍ବାର ବିଭିନ୍ନ ଉପଲକ୍ଷ୍ୟରେ କହିଥିଲେ। ସାଂସ୍କୃତିକ ଓ ଆର୍ଥିକ ସ୍ୱାଧୀନତା ପାଇଁ ଏହା ହେଉଛି ପ୍ରଥମ ଆବଶ୍ୟକତା।

ବ୍ୟକ୍ତିଗତ ସ୍ୱାଧୀନତା ବା ମୁକ୍ତି ଉପରେ ଗୁରୁତ୍ୱ ଦେବାବେଳେ ସେ ଜାଣିଥିଲେ ଯେ ଏହା ସମ୍ପୂର୍ଣ୍ଣ ଭାବରେ ସମ୍ଭବ ନୁହେଁ । କାରଣ ବ୍ୟକ୍ତି ଯଦି ସମ୍ପୂର୍ଣ୍ଣ ଭାବରେ ମୁକ୍ତ ଓ ସ୍ୱାଧୀନ ହୁଏ, ତେବେ ତାହା ସମାଜିକ ବିଶୃଙ୍ଖଳାକୁ ପ୍ରଶ୍ରୟ ଦେବ । ଯେପର୍ଯ୍ୟନ୍ତ ବ୍ୟକ୍ତି ସ୍ୱାଧୀନତା ଅନ୍ୟର କ୍ଷତି ନ ପହଞ୍ଚାଇଛି ଏବଂ ଅନ୍ୟମାନେ ତାହା ଦ୍ୱାରା ଆକ୍ରାନ୍ତ ହୋଇ ନାହାନ୍ତି, ସେପର୍ଯ୍ୟନ୍ତ ବ୍ୟକ୍ତି ସ୍ୱାଧୀନତା ରହିବା ଉଚିତ୍ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ୟୁରୋପରେ କେତେକ ଦାର୍ଶନିକ ଯଥା ଜନ୍ ଷ୍ଟୁଆଟ୍ ମିଲ୍, ହରବର୍ଟ ସ୍ପେନସର, ଟି.ଏଚ.ଗ୍ରୀନ୍ ପ୍ରଭୃତି ବ୍ୟକ୍ତିଗତ ସ୍ୱାଧୀନତାକୁ ନିୟନ୍ତ୍ରଣ କରିବା ଉପରେ ଜୋର ଦେଇଥିଲେ । ୟୁରୋପରେ ଯାହାସବୁ ରାଜନୈତିକ ସ୍ତରରେ ଘଟୁଛି, ସ୍ୱାମୀଜୀଙ୍କର ତାହାର ଅବଧାରଣା ଥିଲା । ତେଣୁ ସେ ସମାଜର ବୃହତ୍ତର ମଙ୍ଗଳ ପାଇଁ ବ୍ୟକ୍ତିଗତ



ସ୍ୱାଧୀନତାକୁ ନିୟନ୍ତ୍ରଣ କରିବା ଉପରେ ଜୋର ଦେଇଥିଲେ । ସ୍ୱାମୀଜୀଙ୍କ ଜୀବନ କାଳ ମଧ୍ୟରେ ଏପରି ସନ୍ତୁଳିତ ବିଚାର ଏସିଆ ମହାଦେଶରେ ପ୍ରବେଶ କରିନଥିଲା । ଭାରତୀୟ ସମ୍ବିଧାନର ୧୯(୧)ଅନୁଚ୍ଛେଦ ତୃତୀୟ ଭାଗରେ ସମସ୍ତଙ୍କ ପାଇଁ ସ୍ୱାଧୀନତା ନିଶ୍ଚିତ କରାଯାଇଛି । ପ୍ରତ୍ୟେକ ଭାରତୀୟ ନାଗରିକ ସ୍ୱାଧୀନ ଏହା ଲିପିବଦ୍ଧ ହୋଇଛି । କିନ୍ତୁ ସେହି ଅନୁଚ୍ଛେଦର ୨ଠାରୁ ୬ଧାରାରେ ରାଷ୍ଟ୍ର ବ୍ୟକ୍ତି ସ୍ୱାଧୀନତାକୁ ମଧ୍ୟ ନିୟନ୍ତ୍ରିତ କରିପାରିବ ବୋଲି ଉଲ୍ଲେଖ ଅଛି । ଏହାର ଅର୍ଥ ହେଉଛି ସମାଜ ସମଷ୍ଟିର ସ୍ୱାର୍ଥ ପାଇଁ ବ୍ୟକ୍ତି ସ୍ୱାଧୀନତାକୁ ନିୟନ୍ତ୍ରିତ କରି ଏକ ସନ୍ତୁଳନ ଅବସ୍ଥାରେ ରଖିବା ।

ସ୍ୱାମୀଜୀଙ୍କର ସ୍ୱାଧୀନତା ବା ମୁକ୍ତି ବିଚାର ସମ୍ପର୍କରେ ସମ୍ୟକ୍ ଆଲୋଚନା କରିବାବେଳେ ସମାଜର ସର୍ବବୃହତ୍ ଅଂଶ ହେଉଛି ମଣିଷ ବା ଜନଗଣ । ଏମାନେ ରାଜନୈତିକ ପ୍ରକ୍ରିୟାର ଅଂଶ ବିଶେଷ । ତେଣୁ ସ୍ୱାମୀଜୀ ଜନଗଣଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ସହିତ ସେମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ସ୍ୱାମୀଜୀଙ୍କ ସମୟକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ ସେସମୟରେ ଶିକ୍ଷିତ ବର୍ଗ ସାଧାରଣ ମଣିଷମାନଙ୍କର ସ୍ୱାର୍ଥର ସୁରକ୍ଷାକାରୀ । ଯାହାଫଳରେ ଶିକ୍ଷିତ ଶ୍ରେଣୀ ତା'ର ବହୁଳ ଅପବ୍ୟବହାର କରି ନିଜର ପୁଷ୍ଟିସାଧନରେ ବ୍ରତୀ । ସ୍ୱାମୀଜୀ ଏହି ଚିନ୍ତାଧାରାକୁ ପରିବର୍ତ୍ତନ କରି ଦେଇଛନ୍ତି । ସେ ବାରମ୍ବାର ଉଦ୍‌ଘୋଷଣା କରି କହିଛନ୍ତି ଯେ ସାଧାରଣ ମଣିଷମାନେ ହେଉଛନ୍ତି ଏ ଜାତିର ମେରୁଦଣ୍ଡ । ସେମାନଙ୍କ ନିକଟରେ ସମସ୍ତ ଶକ୍ତି ନିହିତ ଅଛି । ଜନଗଣଙ୍କ ପ୍ରକୃତ ଶକ୍ତି ସମ୍ପର୍କରେ ସେ ଉଲ୍ଲେଖ କରିଛନ୍ତି । ଯଦିଓ ସମାଜର ନେତୃତ୍ୱ କେତେକ ଶିକ୍ଷିତ ବ୍ୟକ୍ତିମାନଙ୍କ ହାତରେ, ଧନୀମାନଙ୍କ ହାତରେ ରହିଛି, ଯେଉଁମାନେ କ୍ଷମତାକୁ ସମ୍ପୂର୍ଣ୍ଣ ଉପଭୋଗ କରୁଛନ୍ତି କିନ୍ତୁ ବାସ୍ତବରେ ଏହି ଶକ୍ତି ରହିଛି ଶାସିତ ହେଉଥିବା ସାଧାରଣ ମଣିଷମାନଙ୍କ ହାତରେ । ଯେହେତୁ ଶାସକଶ୍ରେଣୀ ଶାସିତ ଜନଗଣଙ୍କଠାରୁ ଦୂରେଇ ଯାଇଛନ୍ତି, ଫଳରେ ଶାସନ ବ୍ୟବସ୍ଥାରେ ଦୁର୍ବଳତା ପ୍ରକାଶ ପାଉଛି । ଶାସକଶ୍ରେଣୀ ଯେଉଁମାନଙ୍କଠାରୁ କ୍ଷମତା ହାସଲ କରିଛନ୍ତି, ସେମାନଙ୍କୁ ଭୁଲି ଯାଇଛନ୍ତି । ଏହାହିଁ ବିଡ଼ମ୍ବନା । ଶାସକ ଶ୍ରେଣୀ ଛଳନା, ପ୍ରବଞ୍ଚନା, ଶକ୍ତି ପ୍ରୟୋଗ କରି ଶାସନ କ୍ଷମତାକୁ ଅକ୍ତିଆର କରିଛନ୍ତି ।

ଇତିହାସ ପ୍ରତି ଦୃଷ୍ଟି ନିକ୍ଷେପ କରି ସ୍ୱାମୀଜୀ କହିଛନ୍ତି, ପୌରୋହିତ୍ୟବାଦ ଭୁଷୁଡ଼ି ପଡ଼ିବା ଫଳରେ ରାଜା ରାଜୁଡ଼ାମାନେ ଗଣଶକ୍ତିର ସାହାଯ୍ୟରେ ଶାସନ କ୍ଷମତାକୁ ଜାବୋଡ଼ି ବସିଲେ । ସମୟକ୍ରମେ ଏହି ରାଜଶାସନ ଲୋକମାନଙ୍କଠାରୁ ଦୂରେଇ ଯାଇ ନିଜକୁ ସମ୍ପୂର୍ଣ୍ଣ ଭାବେ ସ୍ୱାଧୀନ ଭାବେ ବିଚାର କଲେ ଏବଂ ଅଖଣ୍ଡ କ୍ଷମତା ଭୋଗ କରିବାକୁ ଲାଗିଲେ । ଯାହାର ପରିଣତି ହେଲା ରାଜାରାଜୁଡ଼ା ଶାସନ ବ୍ୟବସାୟୀ ବା ପୁଞ୍ଜିପତିଙ୍କର କ୍ରୀଡ଼ନକ ପାଲଟିଗଲେ । ଭାରତରେ ଏହାହିଁ ଘଟୁଛି । ଜନଗଣଙ୍କର କ୍ଷମତା ସଙ୍କୁଚିତ କରି ରାଜାରାଜୁଡ଼ା ଶାସନ ଓ ପରବର୍ତ୍ତୀ ସମୟରେ ବ୍ରିଟିଶ୍ ଦ୍ୱାରା ଦେଶ ଶାସନ ହୋଇ ପରାଧୀନ ହୋଇଯାଇଛି । ପୁଞ୍ଜିପତି ଶାସନର ମଧ୍ୟ ଅବସାନ ଘଟୁଛି । ଜନଶକ୍ତିକୁ ପ୍ରତିହତ କରି ନିରଙ୍କୁଶ ଶାସନ ବ୍ୟବସ୍ଥା ବେଶୀ ଦିନ ତିଷ୍ଠି ପାରି ନାହିଁ ବା ପାରିବ ନାହିଁ ।

୧୮୯୭ ମଇ କିମ୍ବା ଜୁନ୍ ମାସରେ ଅଲମୋଡ଼ାଠାରେ ଅବସ୍ଥାନ ସମୟରେ ସ୍ୱାମୀଜୀଙ୍କର ଅଶ୍ୱନୀକୁମାର ଦତ୍ତଙ୍କ ସହିତ ଆଲୋଚନା ବେଶ୍ ପ୍ରଣିଧାନଯୋଗ୍ୟ । ଅଶ୍ୱିନୀକୁମାର ଭାରତୀୟ ଜାତୀୟ କଂଗ୍ରେସର ପ୍ରମୁଖ ନେତା ଥିଲେ । ସେହି ବୈଠକରେ ସ୍ୱାମୀଜୀ କଂଗ୍ରେସ ମଧ୍ୟରେ ସାଧାରଣ ଲୋକମାନଙ୍କର ଯୋଗଦାନ ଉପରେ ଗୁରୁତ୍ୱ ଆରୋପ କରିଥିଲେ କାରଣ ସେପର୍ଯ୍ୟନ୍ତ କଂଗ୍ରେସ କେତେକ ମୁଷ୍ଟିମେୟ ଶିକ୍ଷିତଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ଥିଲା । ବାସ୍ତବରେ କହିଲେ ୧୯୨୦ ମସିହା ପରେ ଗାନ୍ଧୀଜୀଙ୍କର କଂଗ୍ରେସରେ ଯୋଗଦାନ ହେତୁ ସାଧାରଣ ଜନଗଣ କଂଗ୍ରେସ ମଧ୍ୟରେ ସକ୍ରିୟ ଅଂଶ ଗ୍ରହଣ କଲେ । ଡିସେମ୍ବର ୧୮୯୭ରେ ଆମରୋଟି କଂଗ୍ରେସ ଅଧିବେଶନରେ ଅଶ୍ୱିନୀ କୁମାର କଂଗ୍ରେସକୁ ସମାଲୋଚନା କରି ଏହା 'ବାର୍ଷିକ ତାମସା'କରୁଥିବାର ଉଲ୍ଲେଖ କରିଥିଲେ ।

ସ୍ୱାମୀଜୀ କେବଳ ଜନଗଣଙ୍କୁ ରାଜନୈତିକ ବା ଶାସନ ପ୍ରକ୍ରିୟାରେ ସାମିଲି କରିବା ଉପରେ ଗୁରୁତ୍ୱ ଦେଇ ନଥିଲେ । ସେଥିମଧ୍ୟରୁ ଜନ୍ମଲାଭ କରିଥିଲା ତାଙ୍କର ଯୁଗାନ୍ତକାରୀ ବିଚାର ସାମ୍ୟବାଦ । ସ୍ୱାମୀଜୀଙ୍କର ସାମ୍ୟବାଦୀ ବିଚାରରେ ଅନେକ ମୌଳିକତା ପରିଲକ୍ଷିତ ହୁଏ ।

କ) ବିବେକାନନ୍ଦ ପ୍ରଥମେ ଭାରତୀୟ ନେତୃବର୍ଗଙ୍କ ସମ୍ମୁଖରେ ଜନଗଣଙ୍କର ଦାରିଦ୍ର୍ୟର ସ୍ୱରୂପକୁ ଉନ୍ମୋଚନ କଲେ । ଦେଶରେ କୋଟି କୋଟି ଲୋକ ଭୋକିଲା ଥିବାବେଳେ ରାଷ୍ଟ୍ରର ନବଜାଗରଣ ହେବା ଅସମ୍ଭବ । ତେଣୁ ପ୍ରଥମେ ଏହି ନିରନ୍ନ ଲୋକମାନଙ୍କୁ ସେଥିରେ ମୁକ୍ତ କରିବାକୁ ହେବ । ଜାତୀୟ ଅଭ୍ୟୁତ୍ଥାନ ପାଇଁ ପ୍ରଥମେ ଲୋଡ଼ା ଗରିବମାନଙ୍କ ପାଇଁ ଖାଦ୍ୟ । ତେଣୁ ସଂଗଠିତ ଓ ସମୟଭିତ୍ତିକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରଥମେ ନେବା ଉପରେ ସେ ଦେଇଥିଲେ ଗୁରୁତ୍ୱ ।



ଖ) ଊନବିଂଶ ଶତାବ୍ଦୀରେ ସରକାର ବିରୁଦ୍ଧରେ କୃଷକମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ଥିବାର ସେ ଦେଖିବାକୁ ପାଇଥିଲେ । କିନ୍ତୁ କୃଷକମାନଙ୍କର ରାଜନୈତିକ ଆନ୍ଦୋଳନ ବା ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କର ଯୋଗଦାନ ସେପର୍ଯ୍ୟନ୍ତ ସମ୍ଭବ ହୋଇ ନଥିଲା । ୧୯୩୦ ମସିହାରେ ଚାଷୀମାନେ ଆନ୍ଦୋଳନରେ ସାମିଲ ହେଲେ ।

ଏପରିକି ଶିଳ୍ପରେ କାମ କରୁଥିବା ଶ୍ରମିକମାନେ ମଧ୍ୟ ସଂଗଠିତ ହୋଇ ମାଲିକମାନଙ୍କ ବିରୋଧରେ ଆନ୍ଦୋଳନ କରିବାକୁ ଆରମ୍ଭ କରି ଦେଇଥିଲେ । ବମ୍ବେ, କଲିକତା, ମାନ୍ଦ୍ରାଜଠାରେ ବୟନ ଶିଳ୍ପରେ କାର୍ଯ୍ୟରତ ଶ୍ରମିକମାନେ ଧର୍ମଘଟ କରିଥିଲେ । କିନ୍ତୁ ଏହି ଧର୍ମଘଟ ସୁସଂହତ ଓ ସଂଗଠିତ ନଥିଲା । ଏହାଦ୍ୱାରା କୌଣସି ରାଜନୈତିକ ପ୍ରଭାବ ପଡୁ ନଥିଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ଶ୍ରମିକମାନଙ୍କୁ ଜାତୀୟତାବାଦୀ ଆନ୍ଦୋଳନ ମଧ୍ୟକୁ ପ୍ରବେଶ କରାଇବାକୁ ଚେଷ୍ଟା କରାଯାଇଥିଲା ।

ସ୍ୱାମୀଜୀ ଥିଲେ ଦୂରଦ୍ରଷ୍ଟା । ସେ ଅନୁଭବ କଲେ ଯେକୌଣସି ସାମାଜିକ ଓ ରାଜନୈତିକ ଆନ୍ଦୋଳନ ମଧ୍ୟରେ କୃଷକ ଓ ଶ୍ରମିକମାନଙ୍କୁ ସାମିଲ କରିବାକୁ ହେବ । ସେ ନିଜର ଲେଖା ଓ ବକ୍ତୃତା ମାଧ୍ୟମରେ ଶ୍ରମିକଶ୍ରେଣୀ ପ୍ରତି ଗଭୀର ଆସ୍ଥା ସ୍ଥାପନ କଲେ ଏବଂ ସେମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କଲେ । କେବଳ ସେତିକିରେ ତାଙ୍କର ବିଚାର ସୀମିତ ହେଲାନାହିଁ । ଚାଷ କରୁଥିବା ଚାଷୀମାନଙ୍କୁ ଜମି ଦେବା ଉପରେ ସେ ଦେଲେ ଗୁରୁତ୍ୱ । ବୈଷୟିକ ଜ୍ଞାନର ବିକାଶ ସେତେବେଳକୁ ଆରମ୍ଭ ହୋଇଯାଇଥାଏ । କୃଷିକୁ ଟେକ୍ନୋଲୋଜି ସହିତ ଯୋଡ଼ି ପାରିବା ପାଇଁ କୃଷି କ୍ଷେତ୍ରକୁ ପୁନର୍ଗଠନ ଉପରେ ଥିଲା ତାଙ୍କର ଗୁରୁତ୍ୱ ।

ସେ ଅନୁଭବ କରିଥିଲେ ଯେ ଦିନେ ନା ଦିନେ ନିପିଡ଼ିତ ଜନଗଣ ଉଠିବେ ଏବଂ ରାଷ୍ଟ୍ରର ଶାସନ କ୍ଷମତା ସେମାନଙ୍କ ହାତକୁ ଯିବ । ଥରେ ସେ ଦିବ୍ୟ ଭାବରେ ଥିବାବେଳେ କହିଥିଲେ, ପରବର୍ତ୍ତୀ ଉତ୍ଥାନ ଯାହା ଏକ ନୂତନ ସମ୍ଭାବନା ସୃଷ୍ଟି କରିବ, ତାହା ଋଷ ବା ଚୀନ୍‌ରୁ ହେବ । ମୁଁ ହୁଏତ ସଠିକ୍ ଭାବରେ କହିପାରୁନି କେଉଁଠି ପ୍ରଥମେ ହେବ କିନ୍ତୁ ଏହା ନିଶ୍ଚିତ ଭାବରେ ଚୀନ୍ ବା ଋଷ । ସ୍ୱାମୀଜୀଙ୍କ ଏହି ଦିବ୍ୟବାଣୀ ଥିଲା ଯେତେବେଳେ ଚୀନ୍ ଏକଛତ୍ରବାଦୀ ଶାସକ ମଞ୍ଚୁ ସମ୍ରାଟଙ୍କ ଅଧୀନରେ ଥିଲା ଏବଂ ଋଷ ଅଧୀନରେ ଶାସିତ ହେଉଥିଲା । ସ୍ୱାମୀଜୀ ନିଶ୍ଚିତ ଥିଲେ ଯେ ସାମାଜିକ ବିକାଶ ପ୍ରକ୍ରିୟା ମାଧ୍ୟମରେ ଶୂଦ୍ର ରାଜତ୍ୱ ହେବ, କିନ୍ତୁ ଏହାର ପ୍ରେରଣା ଶକ୍ତି ମନୁଷ୍ୟ ମଧ୍ୟରେ ନିହିତ ଥିବା ଅଫୁରନ୍ତ ଆଧ୍ୟାତ୍ମିକତା ଶକ୍ତି ଯୋଗୁଁ ସମ୍ଭବ ହେବ । ଏହା ସତ୍ତ୍ୱେ ଇତିହାସରେ ଆର୍ଥିକ ଶକ୍ତିର ପ୍ରଭାବ ରହିବ ବୋଲି ମଧ୍ୟ ତାଙ୍କର ବିଚାର ଥିଲା ।

ସ୍ୱାମୀଜୀ ଶ୍ରେଣୀ ସଂଘର୍ଷକୁ ଗ୍ରହଣ କରୁ ନଥିଲେ । ସେ ଚାହୁଁଥିଲେ ନିମ୍ନତମ ଶ୍ରେଣୀକୁ ଉଚ୍ଚକୁ ଉଠାଇବା ପାଇଁ ସେମାନଙ୍କୁ ଶିକ୍ଷା ସହିତ ସମସ୍ତ ପ୍ରକାର ସାହଯ୍ୟ ଯୋଗାଇ ଦିଆଯାଉ । ଉଚ୍ଚଶ୍ରେଣୀକୁ ସମୂଳେ ଲୋପକରି ସମାଜ ବ୍ୟବସ୍ଥାରେ ସୁଧାର ଅଣାଯାଇ ପାରିବ ନାହିଁ ବୋଲି ତାଙ୍କର ମତ ଥିଲା । ସ୍ୱାମୀଜୀ ଏଇ ଦୃଷ୍ଟିକୋଣରୁ ମାର୍କ୍ସବାଦ ବିଚାରଠାରୁ ଭିନ୍ନ ମତପୋଷଣ କରିଥିଲେ ।

ସ୍ୱାମୀଜୀଙ୍କର ସାମ୍ୟବାଦ ବିଚାର ଧର୍ମ ସହିତ କୌଣସି ଦ୍ୱନ୍ଦ୍ୱ ରଖୁ ନଥିଲା । ସେ ବିଶ୍ୱାସ କରୁଥିଲେ ଯେ ଧର୍ମ ହେଉଛି ମନୁଷ୍ୟ ଜୀବନର ମୌଳିକ ଆବଶ୍ୟକତା । ଧର୍ମ କହିଲେ ସେ ଏହାକୁ ବ୍ୟାପକ ଦୃଷ୍ଟିରୁ ବିଚାର କରୁଥିଲେ । ସାମ୍ୟବାଦ ସମ୍ପର୍କରେ ସେ କହିଥିଲେ– ହୁଏତ ଏହା ଏକ ପରିପୂର୍ଣ୍ଣ ବ୍ୟବସ୍ଥା ହୋଇ ନପାରେ, କିନ୍ତୁ ପୂରା ରୋଟି ବଦଳରେ ଅଧ ଖଣ୍ଡେ ମଧ୍ୟ ଉତ୍ତମ ଅଟେ । ଏହି ସଂକ୍ଷିପ୍ତ ଆଲୋଚନାରୁ ଆମେ ଦେଖିପାରିବା ଯେ ଯଦିଓ ସ୍ୱାମୀଜୀ ରାଜନୀତି ସହିତ ସମ୍ପର୍କ ରଖି ନଥିଲେ କିନ୍ତୁ ତାଙ୍କର ବିଚାର ରାଜନୈତିକ ବ୍ୟକ୍ତିବିଶେଷଙ୍କୁ ବହୁ ଭାବରେ ଅନୁପ୍ରେରିତ କରିଥିଲା ଏବଂ ସେମାନେ ରାଷ୍ଟ୍ରର ମୁକ୍ତି ସଂଗ୍ରାମରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥିଲେ ।

ପ୍ଲଟ୍ ନଂ– ୫୦୧୨/୫୮୫୩
ଗଜପତି ନଗର,
ଭୁବନେଶ୍ୱର–୭୫୧୦୦୫





# ପାଇକ ବିଦ୍ରୋହର ଅନ୍ୟତମ ବିପ୍ଳବୀ ସାମନ୍ତ ପିଣ୍ଡିକି ବାହୁବଳେନ୍ଦ୍ର

ଡକ୍ଟର ଜନ୍ମେଜୟ ଚୌଧୁରୀ

ଭାରତ ଇତିହାସରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କର ନାମ ଏବେ ମଧ୍ୟ ଲୋକଲୋଚନକୁ ଆସିପାରିନାହିଁ । ସେହିମାନଙ୍କ ମଧ୍ୟରୁ ଭାରତର ଅନ୍ୟତମ କୃତୀ ସନ୍ତାନ ହେଉଛନ୍ତି ଜାତୀୟ ବୀର ପିଣ୍ଡିକି ବାହୁବଳେନ୍ଦ୍ର । ଓଡ଼ିଶାର ଇତିହାସରେ ଏହି ମହାନ ଇତିହାସ ପୁରୁଷଙ୍କର ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭାବ ହୋଇଥିଲା । ଖୋରଧା ପାଇକ ବିଦ୍ରୋହର ତେର ବର୍ଷ ପୂର୍ବରୁ ଯେଉଁ ରାଜବିଦ୍ରୋହ ହୋଇଥିଲା, ସେ ଥିଲେ ତା'ର ପଚ୍ଛପୁରୋଧା । ପିଣ୍ଡିକି ବାହୁବଳେନ୍ଦ୍ର ଖ୍ରୀଷ୍ଟୀୟ ପ୍ରାୟ ୧୭୬୮ ଖ୍ରୀଷ୍ଟାବ୍ଦରେ ଦାରୁଠେଙ୍ଗ ଗଡ଼ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷ ଥିଲେ ଖୋର୍ଦ୍ଧା ରାଜାଙ୍କର ଦଳେଇ । ୧ ବାଲ୍ୟକାଳରୁ ବିଭିନ୍ନ ପ୍ରକାର ବିଦ୍ୟାରେ ବିଶେଷତଃ ସେ ଅସ୍ତ୍ରଚାଳନା ତଥା ଅଶ୍ୱ ସଂଚାଳନରେ ସେ ଅଦ୍ଭୁତ କୌଶଳୀ ଥିଲେ । ସେତେବେଳେ ସମଗ୍ର ଓଡ଼ିଶାରେ ସାମନ୍ତ, କ୍ଷତ୍ରୀୟ, ଖଣ୍ଡାୟତ ଦଳପତିମାନଙ୍କର ଗୋଟିଏ ଗୋଟିଏ ଚଉପାଢ଼ୀ ଥିଲା । ଏଠାରେ ଚାରିପ୍ରକାର ବିଦ୍ୟାଶିକ୍ଷା ଦିଆଯାଉଥିବାରୁ ଏହାର ନାମ ଚଉପାଢ଼ୀ ଅଟେ । ଯଥା– ଫରିଖେଳ (ଖଣ୍ଡା ଚାଳନା), ଧନୁର୍ବିଦ୍ୟା, ଗୁଳିଚାଳନା ଓ ମଲ୍ଲଯୁଦ୍ଧ । ଏ ସମସ୍ତ ବିଦ୍ୟାରେ ନିପୁଣ ଥିଲେ ପିଣ୍ଡିକି । ପିଣ୍ଡିକି ମଧ୍ୟ ଥିଲେ ଯୋଦ୍ଧା । ରାଜୋଚିତ ଚେହେରା, କର୍ଣ୍ଣରେ ସ୍ୱର୍ଣ୍ଣ ଅଳଙ୍କାର, ବେକ ତଥା ହାତରେ ସୁନା ମାଳି ଓ କଙ୍କଣ ପିନ୍ଧୁଥିଲେ । ୨ ତାଙ୍କୁ ୩୫ ବର୍ଷ ହୋଇଥିବାବେଳେ ଇଂରେଜମାନେ ଖୋରଧା ଆକ୍ରମଣ ଓ ଅଧିକାର କରିଥିଲେ । ପିଣ୍ଡିକି ବାହୁବଳେନ୍ଦ୍ର ଖୁଡୁପୁର ପାଇକରାୟ ବଂଶରେ ବିବାହ କରିଥିଲେ । ତାଙ୍କର ଶ୍ୱଶୁର ବିଷ୍ଣୁ ପାଇକରାୟ ଜଣେ ଇଂରେଜ ବିରୋଧୀ ନେତା ଥିଲେ । ଗଜପତି ପ୍ରଥମ ରାମଚନ୍ଦ୍ର ଦେବ ପୂର୍ବ ଖୋର୍ଦ୍ଧାର ପୂର୍ବଦ୍ୱାର ବରୁଣାଇ ପର୍ବତ ପାଦ ଦେଶର ଅନତି ଦୂରରେ ଉଆସ କରି ତୀର କମାଣ ଜାଗିର ଦେଇ ସେନାପତି ରୂପେ ନିଯୁକ୍ତ କରିଥିଲେ । ଏମାନଙ୍କର ରାଜପଦର ଉପାଧି ଥିଲା ଛୋଟରାୟ । ରାଜସିଦ୍ଧି ଅନୁସାରେ ସିଂହଛବି ଖୋଦିତ ମଗରମୁହାଁ ପାଲିଙ୍କି, ଲାଲଛତ୍ରୀ, ଆଲଟ, ଯୋଡ଼ି କାହାଳୀ, ଯୋଡ଼ି ମଶାଲ, ଧବଳ ଅଶ୍ୱ ଓ ପାଟଖଣ୍ଡା ଥିଲା ଗଜପତି ପ୍ରଦତ୍ତ ରାଜସିଦ୍ଧିର ପରିଚାୟକ ।



୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ମରହଟ୍ଟା କବଳରୁ ରକ୍ଷା ପାଇବା ପାଇଁ ଗଜପତି ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜମାନଙ୍କର ଆନୁଗତ୍ୟ ସ୍ୱୀକାର କରିଥିଲେ । ରାଜାଙ୍କଠାରୁ ମରହଟ୍ଟାମାନେ ଛଡ଼ାଇ ନେଇଥିବା ପୁରୀ, ଲେମ୍ବାଇ, ଚବିଶିକୁଦ ଓ ରାହାଙ୍ଗ ପ୍ରଗଣା ଇଂରେଜମାନଙ୍କଠାରୁ ଫେରିପାଇବେ ବୋଲି ରାଜା ୧୮୦୩ରେ କର୍ଣ୍ଣେଲ ହାରକୋର୍ଟଙ୍କୁ ସ୍ୱାଗତ କରିଥିଲେ । ଇଂରେଜମାନଙ୍କ ଓଡ଼ିଶା ଅଧିକାର ପୂର୍ବରୁ ମରହଟ୍ଟାମାନେ ଖୁରୁଧା ଗଜପତିଙ୍କ ଅଧିକାରଭୁକ୍ତ ଚବିଶିକୁଦ, ରାହାଙ୍ଗ, ସିରାଇ ଓ ଲେମ୍ବାଇ ପ୍ରଗଣା ସହିତ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ନେଇସାରିଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର





ମରହଟ୍ଟା ଅଧିକୃତ ଓଡ଼ିଶା ଜୟ କରିବା ପରେ ଜଗନ୍ନାଥ ମନ୍ଦିର ପରିଚାଳନା ଓ ଏଥିରେ ସଂପୃକ୍ତ ବ୍ରାହ୍ମଣମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ମରହଟ୍ଟାମାନଙ୍କ ଓକିଲଙ୍କ ସହିତ ଇଂରେଜ ସରକାରଙ୍କ ତରଫରୁ ଲର୍ଡ଼ ୱେଲେସ୍‌ଲେ ଚୁକ୍ତି ସମ୍ପାଦିତ କରିଥିଲେ । ଚୁକ୍ତି ଅନୁସାରେ ଇଂରେଜ ସରକାରଙ୍କ ୪୪,୭୭୬ ଟଙ୍କା ଅନୁଦାନ ଓ ୯୦ ହଜାର ଟଙ୍କା ବିନିଯୋଗରେ ଜଗନ୍ନାଥ ମହାପ୍ରଭୁଙ୍କର ଦୈନନ୍ଦିନ ପୂଜାବର୍ଷସାରା କରି ଆସୁଥିଲେ । ଇଂରେଜ ସରକାର ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଅଧିକାର କଲେ । ରାଜାଙ୍କର ସର୍ତ୍ତ ପୂରଣ ନହେବାରୁ ୧୮୦୪ରେ ନାଁ ବାଳକ ରାଜାଙ୍କ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କର ପରାମର୍ଶରେ ଯେଉଁ ବିଦ୍ରୋହ କଲେ, ତାହା ହେଲା ଖୋର୍ଦ୍ଧା ରାଜବିଦ୍ରୋହ । ସେ ସମୟରେ ରାଜା ବରୁଣାଇ ପାହାଡ଼ର ପଶ୍ଚିମ ପଟେ ଥିବା ଗଡ଼ରେ ନରହି ଘାଟିଗଡ଼ରେ ରହି ଗୋପନରେ ପଳାଇ ଯାଇଥିଲେ । ପରେ ଜୟୀ ରାଜଗୁରୁ ଓ ରାଜା ଉଭୟେ ଧରା ହୋଇ କଟକ ବାରବାଟୀ ଦୁର୍ଗକୁ ଏବଂ ସେଠାରୁ ଉଭୟଙ୍କୁ ବଙ୍ଗଳାର ମେଦିନପୁର ଜେଲକୁ ପଠାଯାଇଥିଲା ।୩ ୧୮୦୪ ମସିହା ଡିସେମ୍ବର ୫ ତାରିଖରେ ଖୋର୍ଦ୍ଧା ରାଜା ଗାଦିଚ୍ୟୁତ ହେଲେ ବୋଲି ସରକାର ନିର୍ଦ୍ଦେଶନାମା ଜାରି କରିଥିଲେ । ୧୮୦୫ରେ ଜୟୀ ରାଜଗୁରୁଙ୍କୁ ମେଦିନିପୁରଠାରେ ଫାଶୀ ଦିଆଯାଇଥିଲା । ରାଜା ନିର୍ଦ୍ଦୋଷ ବୋଲି ସରକାରଙ୍କଠାରେ ଆତ୍ମସମର୍ପଣ କରି ୧୮୦୭ରେ ମୁକ୍ତ ହେଲେ ପୁରୀ ବାଲିସାହି ପୁରୁଣା ନଅରରେ କାଳାତିପାତ କଲେ । ସେହି ସମୟରେ କୁଦିଆରୀର ଚରଣ ପଟ୍ଟନାୟକ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ନିମକହାରାମ୍ ଜାଗିରୀ ପାଇଥିଲେ । ୧୮୦୪ ମସିହାରେ ଚରଣ ପଟ୍ଟନାୟକଙ୍କ ଘରେ ପାଇକମାନେ ଅଗ୍ନି ସଂଯୋଗ କରିଥିଲେ ।୪

କମିଶନର କର୍ଣ୍ଣେଲ ହାରକୋଟ୍ ଖୋର୍ଦ୍ଧାର ନିଷ୍କର ଜମି ଉପରେ କରଧାର୍ଯ୍ୟ କଲେ । ଏହି ପରିପ୍ରେକ୍ଷୀରେ ଦାଣ୍ଡିମାଳର ଦାମୋଦର ପଟ୍ଟନାୟକ ଓ କହ୍ନେଇ ଶତପଥୀ ଇଂରେଜମାନଙ୍କର ପରମ ଭକ୍ତ ଥିଲେ । କିନ୍ତୁ ବିପ୍ଳବୀ ପିଣ୍ଡିକି ସରକାରୀ ଆଦେଶ ଅମାନ୍ୟ କରି ସହଯୋଗୀମାନଙ୍କୁ ଧରି ଦାଣ୍ଡିମାଳ ଅଞ୍ଚଳରେ ସରକାରୀ ଅଫିସ୍ ଗୋଟି ଖଜଣାଖାନା ଲୁଟି ଓ ଇଂରେଜ କର୍ମଚାରୀଙ୍କୁ ହତ୍ୟାକରି ଆତଙ୍କ ସୃଷ୍ଟି କରିଥିଲେ । ତାଙ୍କର ଆଡ୍ଡାସ୍ଥଳ ଥିଲା ଗଡ଼ ଛତାକର, ଗଡ଼ କଣ୍ଟାବାଡ଼ ଓ ଗଡ଼ ମେଣ୍ଢାଶାଳ ପଶ୍ଚିମ ଖୋର୍ଦ୍ଧାର ଓଲସିଂହଗାଁର କରଣ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ ।୫

ଧନ ଲୋଭରେ ଓଲସିଂହ ସାମନ୍ତ ଇଂରେଜ ବାହିନୀକୁ ଖୋରଧାଗଡ଼ର ବାଟ ଦେଖାଇବାକୁ ସ୍ୱୀକାର ଜଣାଇଲେ ଏବଂ ନିମକହାରାମ ଜାଗିରୀପ୍ରାପ୍ତ ହୋଇ ବାଟ ବତାଇ ଦେଲେ ।୬ ଉତ୍ତର ଖୋର୍ଦ୍ଧାର ମଳିପଡ଼ାଗଡ଼ର ଧ୍ରୁବଜୟ ହରିଚନ୍ଦନ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ମିତ୍ରଦ୍ରୋହୀ ନିମକହାରାମ ଜାଗିରୀପ୍ରାପ୍ତ ହୋଇଥିଲେ । ୧୮୦୪ ମସିହା ଡିସେମ୍ବର ମାସର ମଧ୍ୟଭାଗରେ କମିଶନର କର୍ଣ୍ଣେଲ ହାରକୋଟ ସାହେବ ଖୋରଧା ଅଞ୍ଚଳର ସାମନ୍ତ ଖଣ୍ଡାୟାତମାନଙ୍କୁ ଡକାଇ ଇଂରେଜମାନଙ୍କ ଆନୁଗତ୍ୟ ସ୍ୱୀକାର କରିବା ପାଇଁ ବିଶେଷ ଅନୁରୋଧ କରିଥିଲେ ଏବଂ ଗଜପତି ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ସାହାଯ୍ୟ କଲେ କଠୋର ଦଣ୍ଡ ଦିଆଯିବ ବୋଲି ଆଦେଶନାମା ଜାରି କରିଥିଲେ ।୭ କମିଶନର କର୍ଣ୍ଣେଲ ହାରକୋର୍ଟ ୧୮୦୪ରେ ଖୋର୍ଦ୍ଧା ତଥା ଦାଣ୍ଡିମାଳର ଦଳେଇ, ଦଳବେହେରା ସରକାରଙ୍କୁ ସହଯୋଗ କରିବା ପାଇଁ ନିବେଦନ କରିଥିଲେ ଏବଂ ପ୍ରଜାମାନଙ୍କର ଆଶାଆକାଂକ୍ଷା ପୂରଣ କରିବେ ବୋଲି ଆଶ୍ୱାସନା ଶୁଣାଇ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ସେଥିରୁ ଅନେକ ମେଳିଆ ପାଇକ ସେନାପତି ରାଜି ହୋଇନଥିଲେ । ସେମାନଙ୍କ ମଧ୍ୟରୁ ବିପ୍ଳବୀ ପିଣ୍ଡିକି ଥିଲେ ଅନ୍ୟତମ । ସେ ଖୋର୍ଦ୍ଧା ପାଇକ ବିଦ୍ରୋହ ପୂର୍ବରୁ ଖୋର୍ଦ୍ଧା ରାଜବିଦ୍ରୋହର ନେତୃତ୍ୱ ନେଇ ଇଂରେଜ ସରକାର ବିରୋଧରେ ବିଦ୍ରୋହ କରିଥିଲେ । ଗଡ଼ ଛତାବର, ଗଡ଼ କଣ୍ଟାବାଡ଼, ଗଡ଼ ଚନ୍ଦକା, ଗଡ଼ ଅନ୍ଧାରୁଆ, ଗଡ଼ ମଳିପଡ଼ା, ପାଇକରାପୁର, ମଦନପୁର, ସାଁପୁର, ଗଡ଼ ଅରିସଲ, ଗଡ଼ ମେଣ୍ଢାଶାଳ ଓ ଗଡ଼ ବିଂଝଗିରି ଆଦି ସ୍ଥାନ ତାଙ୍କର ଆଡ୍ଡାସ୍ଥଳୀ ଥିଲା । ସରକାରୀ ରେକର୍ଡ଼ରେ ତାଙ୍କୁ ଡକାୟତ ସର୍ଦ୍ଦାର ଓ ଦୁର୍ଦ୍ଧାନ୍ତ ଶିକାରୀ ରୂପରେ ଚିତ୍ରଣ କରାଯାଇଛି । ଖୋର୍ଦ୍ଧା ମୂଳକରେ ଫିରିଙ୍ଗି ସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିରୋଧରେ ସେ ଅସ୍ତ୍ର

ସେହି ସମୟରେ କୁଦିଆରୀର ଚରଣ ପଟ୍ଟନାୟକ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ନିମକହାରାମ୍ ଜାଗିରୀ ପାଇଥିଲେ । ୧୮୦୪ ମସିହାରେ ଚରଣ ପଟ୍ଟନାୟକଙ୍କ ଘରେ ପାଇକମାନେ ଅଗ୍ନି ସଂଯୋଗ କରିଥିଲେ ।

ବକ୍ସି ଜଗବନ୍ଧୁଙ୍କ ପରେ ଯୋଗ୍ୟତା ଓ ସମ୍ମାନ ଅନୁସାରେ ପିଣ୍ଡିକିଙ୍କ ସ୍ଥାନ ଥିଲା ଦ୍ୱିତୀୟରେ । ସେ ଭୟଭୀତ ନ ହୋଇ କମ୍ପାନୀ ସରକାର ବିରୁଦ୍ଧରେ ବିଶାଳ ପାଇକ ବାହିନୀକୁ ଧରି ବଣ ଜଙ୍ଗଲରେ ଲୁଚିଛପି ଖଣ୍ଡଯୁଦ୍ଧ କରିଥିଲେ । ସ୍ଥାନୀୟ ବ୍ୟକ୍ତି ସାହାଯ୍ୟ କରୁଥିବାରୁ ଏମାନଙ୍କୁ ଧରିବା ଇଂରେଜ ପକ୍ଷେ କଷ୍ଟସାଧ୍ୟ ଥିଲା ।



ଉତ୍ତୋଳନ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଖୋର୍ଦ୍ଧା ମୂଳକରୁ ଇଂରେଜ ଶାସନ ଲୋପ କରିବା । ସେ ନିର୍ଭୀକ ଓ ନିଃସ୍ୱାର୍ଥପର ଥିବାରୁ ପାଇକମାନଙ୍କୁ ଗରିଲା ଯୁଦ୍ଧ ଓ ଖଣ୍ଡ ଯୁଦ୍ଧ ଶିକ୍ଷା ଦେବା ପାଇଁ ପାଇକମାନଙ୍କୁ ଏକତ୍ର କରି ସୁସଂଗଠିତ କରିବାରେ ସେ ଥିଲେ ସିଦ୍ଧହସ୍ତ । ସରକାରୀ ଖଜଣାଖାନା ଲୁଟି, ଥାନା ପୋଡ଼ି, କମ୍ପାନୀ ଫୌଜକୁ ହତ୍ୟା ଆଦି କାର୍ଯ୍ୟରେ ଲିପ୍ତ ରହି ସରକାରଙ୍କୁ ଆତଙ୍କିତ ଓ ବିବ୍ରତ କରାଇଥିଲେ । ସେ କେବଳ ନିଜ ଅଞ୍ଚଳରେ ନୁହେଁ ସମଗ୍ର ଖୋର୍ଦ୍ଧା ଓ ପିପିଲି ଅଞ୍ଚଳରେ ଆତଙ୍କ ସୃଷ୍ଟି କରି ସରକାରଙ୍କୁ ଭୟଭୀତ କରାଇଥିଲେ । ଏସବୁ କାର୍ଯ୍ୟ ପାଇଁ ତାଙ୍କୁ ବନ୍ଦୀ କରାଯାଇଥିଲେ ମଧ୍ୟ ବନ୍ଦୀଶାଳାର ରକ୍ଷୀମାନଙ୍କ ଆଖିରେ ଧୂଳି ପକାଇ ସୂକ୍ଷ୍ମ ବୁଦ୍ଧି ବଳରେ ବନ୍ଦୀଶାଳାରୁ ସେ ଖସି ଆସିଥିଲେ ।

୧୮୧୭ ମସିହାରେ ଇତିହାସ ପ୍ରସିଦ୍ଧ ପାଇକ ବିଦ୍ରୋହ ହୋଇଥିଲା । ପିଣ୍ଡିକିଙ୍କ ସହିତ ସରକାରଙ୍କର ଏଥିରେ କୌଣସି ମତାନ୍ତର ନଥିଲା । ମାତ୍ର ବିପ୍ଳବୀ ପିଣ୍ଡିକି ଥିଲେ ସ୍ୱାଧୀନଚେତା, ନିଃସ୍ୱାର୍ଥପର, ନିର୍ଭୀକ ଓ ଉପଯୁକ୍ତ ସ୍ୱାଧୀନତା ସଂଗ୍ରାମୀ । ଖୋର୍ଦ୍ଧା ତଥା ଓଡ଼ିଶାର ମୁକ୍ତି ଆନ୍ଦୋଳନରେ ସେ ଆପେ ଆପେ ଝାସ ଦେଇଥିଲେ । ବକ୍ସି ଜଗବନ୍ଧୁଙ୍କ ପରେ ଯୋଗ୍ୟତା ଓ ସମ୍ମାନ ଅନୁସାରେ ପିଣ୍ଡିକିଙ୍କ ସ୍ଥାନ ଥିଲା ଦ୍ୱିତୀୟରେ । ସେ ଭୟଭୀତ ନ ହୋଇ କମ୍ପାନୀ ସରକାର ବିରୁଦ୍ଧରେ ବିଶାଳ ପାଇକ ବାହିନୀକୁ ଧରି ବଣ ଜଙ୍ଗଲରେ ଲୁଚିଛପି ଖଣ୍ଡଯୁଦ୍ଧ କରିଥିଲେ । ସ୍ଥାନୀୟ ବ୍ୟକ୍ତି ସାହାଯ୍ୟ କରୁଥିବାରୁ ଏମାନଙ୍କୁ ଧରିବା ଇଂରେଜ ପକ୍ଷେ କଷ୍ଟସାଧ୍ୟ ଥିଲା । ୧୮୧୮ ମସିହା ସେପ୍‌ଟେମ୍ବର ୨୦ ତାରିଖରେ ସରକାର ପିଣ୍ଡିକିଙ୍କୁ ଧରିବା ପାଇଁ ଚେଷ୍ଟା କରି ବିଫଳ ହେଲେ । ତେଣୁ ସରକାର ତାଙ୍କୁ ବନ୍ଦୀ କରିବା ପାଇଁ ନୂତନ ପଦ୍ଧତି ଅବଲମ୍ବନ କଲେ । ଯଥା– କ) ପାଇକମାନଙ୍କୁ ସେମାନଙ୍କର ପ୍ରତିନିଧି (ନେତା)ମାନଙ୍କଠାରୁ ଅଲଗା କରିବା ପାଇଁ ସରକାର ଘୋଷଣା କଲେ ଯେ ଯେଉଁ ପାଇକମାନେ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କର ପ୍ରିୟ ନେତାମାନଙ୍କୁ ତ୍ୟାଗ କରି ସରକାରଙ୍କ ନିକଟରେ ଆତ୍ମସମର୍ପଣ କରିବେ, ତେବେ ସେମାନଙ୍କୁ କ୍ଷମା ଦିଆଯିବ । ଖ) ଆତ୍ମଗୋପନ କରିଥିବା ବିଦ୍ରୋହୀମାନେ ଦୁଇ ମାସ ମଧ୍ୟରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଆତ୍ମସମର୍ପଣ କଲେ ସେମାନଙ୍କୁ କ୍ଷମା ଦିଆଯିବ ।

ଚତୁରତାର ସହିତ ପିଣ୍ଡିକି ବିଭିନ୍ନ ପ୍ରକାର ଛଦ୍ମବେଶରେ ଖଣ୍ଡଗିରି, ଚନ୍ଦକା ଜଙ୍ଗଲରେ ଆତ୍ମଗୋପନ କରି ସରକାରୀ, ଖଜଣାଖାନା ଲୁଟ୍ ଓ ସରକାରୀ କର୍ମଚାରୀଙ୍କୁ ନିର୍ମମ ଭାବରେ ହତ୍ୟା କରିବା ଆରମ୍ଭ କଲେ । ସରକାର ବ୍ୟତିବ୍ୟସ୍ତ ହୋଇ ପିଣ୍ଡିକିଙ୍କୁ ବନ୍ଦୀ କରିବା ପାଇଁ ବ୍ୟବସ୍ଥା କଲେ । ଏହି ସମୟରେ ଦୁଇଜଣ ବିଦ୍ରୋହୀ ମଧୁ ମହାନ୍ତି ଓ ବିଷ୍ଣୁ ମହାନ୍ତି ବିଶ୍ୱାସଘାତକ କାର୍ଯ୍ୟ କଲେ । ପିଣ୍ଡିକି ଓ ତାଙ୍କର ସହଯୋଗୀମାନଙ୍କୁ ଧରିବା ପାଇଁ ସେ ଦୁଇଜଣ ଖୋର୍ଦ୍ଧାର ଆକ୍ଟିଙ୍ଗ୍ ମାଜିଷ୍ଟ୍ରେଟ୍ ଏମ୍.ଏଚ୍. ଟର୍ଣ୍ଣବୁଲ୍‌ଙ୍କୁ ସମ୍ବାଦ ଦେଇ ଧରାଇଦେଲେ । ପୁରସ୍କାର ପାଇବା ପାଇଁ ମଧ୍ୟ ସେମାନେ ମାଜିଷ୍ଟ୍ରେଟ୍‌ଙ୍କଠାରୁ ପ୍ରତିଶ୍ରୁତି ପାଇଥିଲେ । ମଧୁ ମହାନ୍ତି ଓ ବିଷ୍ଣୁ ମହାନ୍ତିଙ୍କ ସାହାଯ୍ୟରେ ଆତ୍ମଗୋପନ କରିଥିବା ପିଣ୍ଡିକିଙ୍କୁ ଗିରଫ କରିବା ଦାୟିତ୍ୱ ବ୍ରିଗେଡିୟର ଥୋମାସ୍ ସାହେବଙ୍କ ଉପରେ ନ୍ୟସ୍ତ କରାଗଲା । ୧୮୧୮ ମସିହା ସେପ୍‌ଟେମ୍ବର ୨୦ ତାରିଖରେ ସେମାନେ ସମସ୍ତେ ପିଣ୍ଡିକିଙ୍କୁ ଧରିବା ପାଇଁ ଚେଷ୍ଟା କଲେ । ମାତ୍ର ପିଣ୍ଡିକି ଅନ୍ୟତ୍ର ଚାଲିଯାଇଥିବାରୁ ତାଙ୍କର କେତେକ ସହଯୋଗୀ ଧରାପଡ଼ିଥିଲେ । ପିଣ୍ଡିକି ଧରାପଡ଼ିନଥିଲେ । ତେଣୁ ପିଣ୍ଡିକିଙ୍କୁ ଧରାଇ ଦେବା ପାଇଁ ୧,୦୦୦ ଟଙ୍କା ପୁରସ୍କାର ଦେବାପାଇଁ ମାଜିଷ୍ଟ୍ରେଟ୍ ଟର୍ଣ୍ଣବୁଲ୍ କମିଶନର ସାହେବଙ୍କୁ ପ୍ରସ୍ତାବ ଦେଲେ ।୧୦ କମିଶନର ସାହେବ ଆର୍. କେର୍ ପ୍ରସ୍ତାବ ଦେଲେ ପିଣ୍ଡିକି ଓ ତାଙ୍କ ସହଯୋଗୀ ଗୋପାଳ ଛୋଟରାୟ ଏବଂ ପଦ୍ମନାଭ ଛୋଟରାୟଙ୍କ ବ୍ୟତୀତ ଅନ୍ୟ ସହଯୋଗୀମାନଙ୍କୁ ସାର୍ବଜନୀନ କ୍ଷମା ଦେବା ଉଚିତ । ଆତ୍ମଗୋପନ କରିଥିବା ବିଦ୍ରୋହୀମାନେ ଯଦି ଦୁଇମାସ ଭିତରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟଙ୍କ ପାଖରେ ଆତ୍ମସମର୍ପଣ କରିବେ, ତେବେ ସେମାନଙ୍କୁ କ୍ଷମା ଦିଆଯିବ । କିନ୍ତୁ ପିଣ୍ଡିକି ଏ କ୍ଷମାର ଅନ୍ତର୍ଭୁକ୍ତ ନଥିଲେ । ସରକାରୀ ଘୋଷଣା ପରେ ପରେ ପିଣ୍ଡିକି ବ୍ୟତୀତ ଅନ୍ୟମାନେ ଧରାପଡ଼ିଥିଲେ ।

ଖୋର୍ଦ୍ଧା ଅଧୀନସ୍ଥ ଗଡ଼ମଲିପଡ଼ା ଗ୍ରାମର ଜାଗିରଦାର ଥିଲେ ପିଣ୍ଡିକିଙ୍କର ମିତ୍ର ଧ୍ରୁବଜୟ ହରିଚନ୍ଦନ, ଯାହାଙ୍କ ଗୃହକୁ ଆତ୍ମଗୋପନ ନିମିତ୍ତ ବିଶ୍ୱସ୍ତରେ ପିଣ୍ଡିକି ଯାତାୟାତ କରୁଥିଲେ । ଏ ସମୟରେ ପିଣ୍ଡିକିଙ୍କୁ ଧରିବା ପାଇଁ ସରକାରୀ କଳର ସମସ୍ତ ଚେଷ୍ଟା ସତ୍ତ୍ୱେ ତାଙ୍କୁ ଧରିବାରେ ଅକୃତକାର୍ଯ୍ୟ ହେବାରୁ ସରକାର, ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଥିଲେ । ଶେଷରେ ଖତୁଆମାନଙ୍କଠାରୁ ସରକାର ଜାଣିବାକୁ ପାଇଲେ ଯେ ଧ୍ରୁବଜୟ ହରିଚନ୍ଦନ ହେଉଛନ୍ତି ପିଣ୍ଡିକିଙ୍କ ବିଦ୍ରୋହର ଅନ୍ୟତମ ନେତା । ସରକାରୀ କର୍ମଚାରୀ ଏକଥା ଜାଣି ଜାଗିରଦାରକୁ ନିର୍ଦ୍ଦେଶ ଦେବାରୁ ଜାଗିରିଦାର ପିଣ୍ଡିକିଙ୍କୁ ଧରାଇ ନଦେଲେ ଧ୍ରୁବଜୟ ହରିଚନ୍ଦନଙ୍କ ସମସ୍ତ ଜାଗିରୀ ବାଜ୍ୟାପ୍ତି ସାଙ୍ଗକୁ ତାଙ୍କୁ କଠୋର ଦଣ୍ଡ ଦିଆଯିବ ବୋଲି ପ୍ରସ୍ତାବ ଦେଲେ । ସରକାରଙ୍କୁ ସାହାଯ୍ୟ କରି ପିଣ୍ଡିକିଙ୍କୁ ଧରାଇ ଦେଲେ ସମସ୍ତ ସରକାରୀ ସୁବିଧା ପ୍ରଦାନ ସହିତ ୧୦୦୦ ଟଙ୍କା ନଗଦ ପୁରସ୍କାର ପ୍ରଦାନ କରାଯିବ ବୋଲି ଘୋଷଣା କରାଯାଇଥିଲା ।



ଜାଗିର ଲୋଭ ଓ ଅର୍ଥ ଲୋଭରେ ବଶ ହୋଇ ମଳିପଡ଼ାର ଜାଗିରଦାର ଧ୍ରୁବଜୟ ହରିଚନ୍ଦନ ସରକାରଙ୍କୁ ଗୋପନରେ ବାର୍ତ୍ତା ଦେଲେ ଯେ, ସେ ପିଣ୍ଡିକିଙ୍କୁ ଧରାଇ ଦେବେ । ମାର୍ଗଶିର ମାସ ଗୁରୁବାର ମାଣବସା ରାତ୍ରିରେ ପିଣ୍ଡିକି ତାଙ୍କର ସହଯୋଗୀମାନଙ୍କ ସହ ମଳିପଡ଼ାରେ ଆସି ପହଞ୍ଚିବା ସଂଗେସଂଗେ ଜାଗିରଦାର ତାଙ୍କୁ ସମ୍ମାନର ସହ ପାଛୋଟି ଆଣି ଖାଇବା ପିଇବାର ସୁବନ୍ଦୋବସ୍ତ କରିଥିଲେ । ଏହା ଥିଲା ଏକ ପୂର୍ବ ସୁପରିକଳ୍ପିତ ବିଧିବଦ୍ଧ ଯୋଜନା । ପିଣ୍ଡିକିଙ୍କ ଅଗୋଚରରେ ସେ ସେହିଦିନ ଖୋର୍ଦ୍ଧାର ସରକାରୀ ସେନାଧକ୍ଷ ଓ ସୈନ୍ୟମାନଙ୍କୁ ଅଣାଇ ମଳିପଡ଼ାର ଜଙ୍ଗଲରେ ଲୁଚାଇ ରଖିଥିଲେ । ପିଣ୍ଡିକି ଜାଗିରଦାରଙ୍କ ଗୃହକୁ ଆସିବାକ୍ଷଣି ତାଙ୍କୁ ଭାଙ୍ଗ ପିଆଇ ନିଶାସକ୍ତ କରିଦେଲେ । ଫଳରେ ପିଣ୍ଡିକି ନିଶାରେ ଅଜ୍ଞାନ ହୋଇ ଶୋଇ ପଡ଼ିଲେ । ଏ ଅବସ୍ଥାରେ ସରକାରୀ ସିପାହୀ ଦଳ ଜାଗିରଦାରଙ୍କଠାରୁ ଖବର ପାଇ ସେଠାରେ ଉପନୀତ ହୋଇ ଶୋଇଥିବା ଅବସ୍ଥାରେ ପିଣ୍ଡିକିଙ୍କୁ ଧରି ନେଲେ ।୧୧ ୧୮୧୮ ମସିହା ସେପ୍ଟେମ୍ବର ମାସରେ ଖୁରୁଧା, କଟକ, କଲେକ୍ଟରିଏଟରୁ ପୃଥକ୍ ହୋଇ ଏକ ନୂତନ ସବ୍‌ଡିଭିଜନରେ ପରିଣତ ହେଲା । ଫରେଷ୍ଟର ସାହେବ ଉକ୍ତ ନୂତନ ସବ୍‌ଡିଭିଜନର ଯୁଗ୍ମ (ସେପ୍ଟେମ୍ବର ୧୮୧୮ରୁ ମଇ ୧୮୨୦) ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ରିପୋର୍ଟ ଅନୁସାରେ ହଳଦିଆଗଡ଼ର ଜମିଦାର ଓ ମଳିପଡ଼ାଗଡ଼ର ଖଣ୍ଡାୟତ ଜାଗିରଦାର ଇଂରେଜ ସରକାରଙ୍କଠାରୁ ସନନ୍ଦପ୍ରାପ୍ତ ହୋଇଥିଲେ । ଫରେଷ୍ଟର ସାହେବଙ୍କ ସୁପାରିଶରେ ଧ୍ରୁବଜୟ ହରିଚନ୍ଦନଙ୍କୁ ୧୦୦୦ ଟଙ୍କା ପୁରସ୍କାର ଦେବା ସହିତ ଖଣ୍ଡାୟତିର ରକବା ୭୪ କୋଟି ୧୦ ମାଣ ବାର୍ଷିକ ୩୭୩ ଟଙ୍କା ଖଜଣାରେ ତାଙ୍କୁ ଦିଆଯାଇଥିଲା । ଏ ସମ୍ପର୍କରେ ୧୮୨୧ ମସିହାରେ ତାଙ୍କୁ ଏକ ସନନ୍ଦ ପ୍ରଦାନ କରାଯାଇଥିଲା । ଏହା ଥିଲା ଏକ ଦ୍ୱିଭାଷିକ (ଉଭୟ ପାର୍ସି ଓ ଓଡ଼ିଆ ଭାଷାରେ ଲିଖିତ) ସନନ୍ଦ । ଏହି ଜାଗିରୀ ମିତ୍ରଦ୍ରୋହୀ ଜାଗିରୀ ନାମରେ ପରିଚିତ ସନନ୍ଦ ।

ବିପ୍ଳବୀ ସାମନ୍ତ ପିଣ୍ଡିକି ବାହୁବଳେନ୍ଦ୍ର ସମଗ୍ର ଜୀବନ ମାତୃଭୂମିର ସ୍ୱାଧୀନତା ପାଇଁ ଜଳାଞ୍ଜଳି ଦେଇ ସମଗ୍ର ଓଡ଼ିଶାକୁ ସ୍ୱାଧୀନ କରିବା ପାଇଁ ଯେଉଁ ନେତୃତ୍ୱ ନେଇଥିଲେ ସେହି ନିର୍ଭୀକ ନିଃସ୍ୱାର୍ଥପର ସ୍ୱଦେଶବତ୍ସଳ ଆଜି ଇତିହାସର ବିସ୍ମୃତ ଗର୍ଭରେ ଲୀନ ହୋଇଛନ୍ତି । ଏହି ମହାନ୍ ସ୍ୱାଧୀନତା ସଂଗ୍ରାମୀଙ୍କ ଆଦର୍ଶରେ ଆଧୁନିକ ଦିଗଭ୍ରଷ୍ଟ ଯୁବସମାଜ ଅନୁପ୍ରାଣିତ ହେଲେ ଜାତୀୟ ସଂପତ୍ତି ଉଜ୍ଜୀବିତ ହୋଇରହିବ ।

**ସହାୟକ ଗ୍ରନ୍ଥସୂଚୀ**


୧. S.C. De, Guide to Orissan Records. Vol.-III, p.-61

R. Ker, Commissioner, Cuttack to W.B. Bayley, Secretary to Government in the Judicial Department, Fort William, 14th December 1818.

୨. କହ୍ନେଇଁ ଚମ୍ପତିରାୟ, ପାଇକ ଖେଦା – ପୃ.–୧୯

୩. ଦିଗମ୍ବର ଶ୍ରୀଚନ୍ଦନ – ଖୁରୁଧା ଦର୍ପଣ (ପ୍ରଥମ ଭାଗ), ପୃ.–୧୩, ୨୩

୪. ଏଜନ, ପୃ.–୧୩–୧୪

୫. ଏଜନ (ଦ୍ୱିତୀୟ ଭାଗ), ପୃ.–୫୭

୬. ପଣ୍ଡିତ ସଦାଶିବ ରଥଶର୍ମା – ଅମରଚରିତ (୪ର୍ଥ ଭାଗ), ପୃ.–୨୦

୭. ପଣ୍ଡିତ ସୂର୍ଯ୍ୟନାରାୟର ଦାଶ– ଗତ ଶତାବ୍ଦୀର ଓଡ଼ିଶା, ପୃ.–୪୬–୪୮

୮.କ. Stirling to W.H. Melville, Joint Magistrate, Puri 20th Nov. 1818, B, R.A. Vol-I, June 1818 to April 1820, p.-67

ଖ. OSA. ACC. N-45 M.H. Tumbal to R. Ker, 30 Sept. 1818.

ଗ. R. Ker to W.B. Bayley 14th Dec. 1818. De., S.C. Guide to Orissan Records (ed) Vol.-III, p.-64

ଘ. P.K. Pattnaik, A forgotten Chapter of Orissa History.

ଙ. ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପାଇକ ବିଦ୍ରୋହ, ପୃ.–୧୦୦.

୯. OSA, ACE. No.45, Judicial/Cuttack. M.H. Turnbull, acting Magistrate to R. Ker, 13th Sept. 1818.

୧୦. OSA, Forester to R. Ker 13th Sept. 1818 Vol.-45

୧୧. ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ, ଏଜନ, ପୃ.–୧୨୩

୧୨. W.C. Taylor, complete report on the survey and settlement of Khurda Estate, p.-107, OSA.



ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା




# ଚିକାଗୋରେ ସ୍ୱାମୀ ବିବେକାନନ୍ଦଙ୍କ ବକ୍ତୃତା

**ତାରାକାନ୍ତ ମହାନ୍ତି**

ସର୍ବଧର୍ମ ସମନ୍ୱୟ ମତବାଦର ପ୍ରଚଣ୍ଡ ପ୍ରବକ୍ତା ସ୍ୱାମୀ ରାମକୃଷ୍ଣ ପରମହଂସଙ୍କ ପ୍ରିୟ ଶିଷ୍ୟ ନରେନ୍ ଯେ କି ପରବର୍ତ୍ତୀ କାଳରେ ସ୍ୱାମୀ ବିବେକାନନ୍ଦ ରୂପେ ପରିଚିତ, ବିଶ୍ୱକୁ ଏକ ଭ୍ରାତୃତ୍ୱ ସୂତ୍ରରେ ବାନ୍ଧିବା ପାଇଁ ଯେଉଁ ମହାନ୍ ଉଦ୍ୟମ ଆରମ୍ଭ କରିଥିଲେ, ତାହାର ଏକ ନମୁନା ହେଉଛି, ୧୮୯୩ ମସିହା ସେପ୍ଟେମ୍ବର ୧୧ ତାରିଖରେ ବିଶ୍ୱ ଧର୍ମ ସମ୍ମିଳନୀରେ ଯେଉଁ ଐତିହାସିକ ବକ୍ତୃତା ପ୍ରଦାନ କରିଥିଲେ ତାହାର କିୟଦଂଶ ଏଠାରେ ପ୍ରଦତ୍ତ ହେଲା– ଆମେରିକାର ଭ୍ରାତା ଓ ଭଗ୍ନୀଗଣ, ଆପଣମାନେ ଆମ୍ଭମାନଙ୍କୁ ଯେଉଁ ସୌଜନ୍ୟମୂଳକ ଓ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣରେ ଅଭ୍ୟର୍ଥନା ପ୍ରଦର୍ଶନ କରିଛନ୍ତି, ତାହା ଅବର୍ଣ୍ଣନୀୟ ଓ ମୋ’ ହୃଦୟ ପରମ ଆନନ୍ଦରେ ଉଦ୍‌ବେଳିତ । ବିଶ୍ୱର ପୁରାତନ ସନ୍ୟାସୀ କ୍ରମରେ ମୁଁ ଆପଣମାନଙ୍କୁ ଧନ୍ୟବାଦ ଦେଉଛି ଏବଂ ବିଶ୍ୱର ସବୁ ଧର୍ମର ଜନନୀଙ୍କ ନାମରେ ମଧ କୋଟି କୋଟି ହିନ୍ଦୁ ଜନତାର ସବୁ ଶ୍ରେଣୀ ଓ ଜାତି ତରଫରୁ ମୁଁ ମଧ ଧନ୍ୟବାଦ ଅର୍ପଣ କରୁଛି ।



ମୁଁ ସେହି ଧର୍ମ ପାଇଁ ଗର୍ବ କରେ, ଯାହା ବିଶ୍ୱକୁ ଉଭୟ ସହନଶୀଳତା ଓ ସାର୍ବଜନୀନ ମାନ୍ୟତା ପ୍ରଦାନ କରିଛି । ଆମେ କେବଳ ଯେ ସାର୍ବଜନୀନ ସହନଶୀଳତାରେ ବିଶ୍ୱାସ କରୁ, ତା’ନୁହେଁ ବରଂ ସମସ୍ତ ଧର୍ମକୁ ଏକ ବୋଲି ଗ୍ରହଣ କରୁ । କାରଣ ସବୁଧର୍ମର ମୌଳିକ ସତ୍ୟ, ପ୍ରେମ, ଜ୍ଞାନ ଓ ଐକ୍ୟ ଅଟେ । ମୁଁ ସେହି ରାଷ୍ଟ୍ର ପାଇଁ ଗର୍ବ କରେ, ଯାହା ବିଶ୍ୱର ନିଷ୍ପେଷିତ ଓ ନିର୍ଯ୍ୟାତିତ ସବୁଧର୍ମର ଶରଣାର୍ଥୀଙ୍କୁ ଆଶ୍ରୟ ଓ ଅଭୟ ପ୍ରଦାନ କରିଛି । ଇସ୍ରାଏଲ୍‌ବାସୀଙ୍କ ବିଶୁଦ୍ଧତାକୁ ଆମେ ଗ୍ରହଣ କରି ତାକୁ ମଧ ସମାନ ସ୍ଥାନ ଆମ ଭିତରେ ଦେଇଛୁ । ସେମାନେ ଦକ୍ଷିଣ ଭାରତରେ ଆସି ବସବାସ କରିଥିଲେ ଏବଂ ସେହି ବର୍ଷ ସେମାନଙ୍କର ପବିତ୍ର ମନ୍ଦିର ରୋମାନ୍ ଅତ୍ୟାଚାରୀଙ୍କ ଦ୍ୱାରା ଖଣ୍ଡ ବିଖଣ୍ଡିତ କରାଯାଇ ଭୂଲୁଣ୍ଠିତ କରାଯାଇଥିଲା । ମୁଁ ସେହି ଧର୍ମ ପାଇଁ ଗର୍ବ ଅନୁଭବ କରୁଛି, ଯାହାକି ମହା ଜୋରାଷ୍ଟର ଜାତିକୁ ନିଜ ଦେଶରେ ଆଶ୍ରୟ ଦେଇଛି ଏବଂ ଜୋରାଷ୍ଟର ଧର୍ମର ଅଂଶବିଶେଷକୁ ଆପଣାଇ ନେଇଛି ।

ଭ୍ରାତାଗଣ ! ମୁଁ ଏକ ଶ୍ଳୋକରୁ କେତେକ ଧାଡ଼ି ପୁନରାବୃତ୍ତି କରିବାକୁ ଚାହୁଁଛି, ଯାହାକି ମୋର ବାଲ୍ୟ କାଳରେ ଏବେ ବି ମନେ ପଡ଼େ । ଏବେ ନିୟୁତ ନିୟୁତ ଜନସାଧାରଣଙ୍କଦ୍ୱାରା ତାହା ନିରନ୍ତର ଗାନ କରାଯାଉଛି । ଯେପରି ବିଭିନ୍ନ ଝରଣା ଯେଉଁମାନଙ୍କର ଉତ୍ସ ବିଭିନ୍ନ ସ୍ଥାନରେ ରହିଛି, ସେହି ସବୁ ସମୁଦ୍ରରେ ମିଶି ଯାଆନ୍ତି । ସେହିପରି ବିଭିନ୍ନ ପ୍ରବୃତ୍ତି ଯାହା ଜଟିଳ ଓ ସଳଖ ଦେଖାଯାଆନ୍ତି ସେମାନେ ସବୁ ଭଗବାନ ! ତୁମ ସାଙ୍ଗରେ ମିଶିବା ପାଇଁ ଧାବମାନ ହୁଅନ୍ତି ।

ବର୍ତ୍ତମାନର ମହାସଭା ଯାହାକି ବିଶିଷ୍ଟ ସାଧୁସନ୍ଥଙ୍କ ସମାବେଶ ଯାହାକି ସାରା ବିଶ୍ୱକୁ ଗୀତାରେ ପ୍ରଚାରିତ ଓ ଘୋଷିତ ବାଣୀର ଏକ ସତ୍ୟ ପ୍ରତିପାଦନ କରୁଛି, ତାହା ହେଉଛି ଯେ ମୋ’ ପାଖକୁ ଯେଉଁ ଆକାରରେ, ଯେଉଁ ରୂପରେ, ଯେଉଁ ମାର୍ଗ ଦେଇ ସଂଗ୍ରାମ କରି ଆସନ୍ତି ତାହା ଶେଷରେ ମୋ’ ପାଖରେ



ପହଞ୍ଚାଇଥାଏ । ଏ ସୁନ୍ଦର ପୃଥିବୀକୁ ଜାତିଭେଦ, ଧର୍ମାନ୍ଧତା ଏବଂ ଏହାର ସାଂଘାତିକ ପରିଣତି ଏବଂ ଧର୍ମ ଉନ୍ମାଦନା ପୃଥିବୀକୁ ବହୁଦିନ ଧରି କବଳିତ କରି ରଖିଛି । ସେମାନେ ପୃଥିବୀକୁ ହିଂସାରେ ଭରି ଦେଇଛନ୍ତି ଏବଂ ସମୟ ସମୟରେ ରକ୍ତରେ ତିନ୍ତାଇ ଦେଇଥାଆନ୍ତି ଏବଂ ସମଗ୍ର ବିଶ୍ୱକୁ ଅନ୍ଧକାରାଚ୍ଛନ୍ନ କରି ରଖିଥାଆନ୍ତି । ଏହି ଭୟଙ୍କର ରାକ୍ଷସମାନେ ନଥିଲେ ମାନବ ସମାଜ ଯାହା ଆଜି ଅଛି ବହୁ ଦିନରୁ ଯଥେଷ୍ଟ ଅଗ୍ରଗାମୀ ହୋଇ ଥାଆନ୍ତା । ସେମାନଙ୍କର ସମୟ ଆସିଯାଇଛି ଏବଂ ମୁଁ ଦୃଢ଼ ନିଶ୍ଚିତ ଭାବେ ଆଶା କରିବି ଯେଉଁ ଘଣ୍ଟା ଏହି ମହାସଭାର ପ୍ରାତଃକାଳରେ ବାଜି ଉଠିଲା ଏହା ସମସ୍ତ ଧର୍ମ ଉନ୍ମାଦନାର ମରଣ ଘଣ୍ଟି ।

ଡି–୩୫, ଷ୍ଟାର ସିଟି
ପଟିଆ, ଭୁବନେଶ୍ୱର–୨୪

# ଗଣତନ୍ତ୍ରର ଆହ୍ୱାନ

**ଚନ୍ଦ୍ରମଣୀ ସେଠୀ**

ଭାରତ ଆମର ଗଣତନ୍ତ୍ର ଦେଶ କଷଣୁ, ଶୋଷଣୁ ମୁକ୍ତ
ଚଉଷଠିତମ ଗଣତନ୍ତ୍ର ଆଜି ନବ ଚେତନେ ଜାଗ୍ରତ ।

ଫିରିଙ୍ଗି ଶାସକ ହଟିଲେ ଦେଶରୁ ଆମେ ଆମର ଶାସକ,
ଆମେ ଆମ ରାଜା ଆମେ ଆମ ପ୍ରଜା ଆମେ ହିଁ ଆମର ଟେକ ।

ବିଶାଳ ଭାରତ ଶାସନ ପାଇଁକି ଗଢା ହେଲା ସମ୍ବିଧାନ,
ଉଣିଶ ପଚାଶ ଜାନୁଆରୀ ମାସ ଛବିଶି ତାରିଖ ଦିନ।

ସେଦିନ ଭାରତ ସାର୍ବଭୌମ ରାଷ୍ଟ୍ର ରୂପେ ବିଶ୍ୱେ ପରିଚିତ,
ତ୍ରିରଙ୍ଗା ପତାକା ଉଡି ଫରଫର ଦିଏ ଜାତିର ସଂକେତ

ଜାତି, ବର୍ଣ୍ଣ, ଧର୍ମ କୁଳ ନିର୍ବିଶେଷେ ଆମେ ସର୍ବେ ଭାରତୀୟ
ବିଶ୍ୱେ କୋଣେ କୋଣେ ଆମ ଯଶ ଗୁଣ ଯୁଗ ଯୁଗକୁ ଅକ୍ଷୟ ।

ସାଧାରଣତନ୍ତ୍ର ଦିବସ ଆମର ଦେଶର ପରମ ପର୍ବ,
ଏକ ଶତକୋଟି ଉର୍ଦ୍ଧ୍ୱ ନରନାରୀ ସକଳଙ୍କ ଆତ୍ମଗର୍ବ ।

'ରାଷ୍ଟ୍ରୀୟ ଏକତା' ହୃଦେ ହୃଦେ ଜନ୍ମୁ, ଆମେ ସର୍ବେ ଭାରତୀୟ
ଭାରତ ମାତାର ଆମେ ହିଁ ସନ୍ତାନ ସ୍ୱାଧୀନ ଭାରତ ଜୟ ।

ସଦ୍‌ଭାବ ବନ୍ଧନେ ଆମେ ଭାରତୀୟ ଜାତି ହେଉ ବଳିୟାନ
ପରସ୍ପରେ ଜାଗୁ ଜାତି ପ୍ରେମ ଭାବ ଭେଦାଭେଦ ହେଉ ଲୀନ

ସମ୍ବିଧାନ ଆମ ପବିତ୍ର ପୁସ୍ତକ ବିଶ୍ୱେ ଯା'ର ଖ୍ୟାତି ମାନ,
ନୀତିବାନ ହେଲେ ଦେଶର କାମରେ ଆମେ ହେବା ଭାଗ୍ୟବାନ ।

ଗଣତନ୍ତ୍ରେ ଅଛି ମହନୀୟ ଭାବ ଦିବ୍ୟଜ୍ଞାନେ କର ଠାବ
ଦେଶ 'ସ୍ୱତନ୍ତ୍ରତା' ଦେଶ 'ଅଖଣ୍ଡତା' 'ଏକତ୍ୱ' ମହାନ ଭାବ ।

ଜାତୀୟ ପତାକା ତ୍ରିରଙ୍ଗେ ଶୋଭିତ ଜାତିର ଗୌରବ ଟେକ,
ଚଉଷଠିତମ ଗଣତନ୍ତ୍ର ଆଜି କମ୍ପାଏ ସାରା ମୂଲକ ।

ନିଅରେ ଶପଥ ଏ ପତାକା ତଳେ ଗଣତନ୍ତ୍ରର ଆହ୍ୱାନ
ତୋଳିବା ଦେଶକୁ ମହନୀୟ କାନ୍ତେ ବିଶ୍ୱେ ହୋଇବ ମହାନ୍ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ







# ଯୁବ ସମାଜର ଆହ୍ୱାନ

**ମଧୁସୂଦନ ପଟ୍ଟନାୟକ**

ଯେତେବେଳେ ପିଲାଟି ଜନ୍ମ ନିଏ, ତିନି ଗୋଟି ସୂତ୍ରରୁ ସଂସ୍କାର ଗ୍ରହଣ କରିଥାଏ । ସେ ନିଜ ସହିତ ପୂର୍ବଜନ୍ମ କର୍ମସଂସ୍କାର ଫଳାଫଳ ନେଇ ଆସିଥାଏ । ଦ୍ୱିତୀୟତଃ ପିତାମାତା ଏବଂ ପାରିପାର୍ଶ୍ୱିକ ବାତାବରଣର ସଂସ୍କାର ଗ୍ରହଣ କରିଥାଏ । ଏହିସବୁ ସୂତ୍ର ମଧ୍ୟରୁ ନିଜର ସୁରକ୍ଷା, ବୁଦ୍ଧି ଏବଂ ସଂସ୍କାର ଗୁଡିକରୁ ପର୍ଯ୍ୟାପ୍ତ ପ୍ରେରଣା ପ୍ରାପ୍ତ ହୋଇଥାଏ ।

ପିତାମାତା ପିଲାର ଜୀବନ ଗଠନରେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥାନ୍ତି । କାରଣ ପିଲାମାନେ ସ୍ୱତନ୍ତ୍ରତା ପ୍ରେମୀ ହୋଇଥାନ୍ତି । ସେଥିପାଇଁ ସେମାନଙ୍କୁ ଅଧିକ ସ୍ୱତନ୍ତ୍ରତା ଦେବା ଆବଶ୍ୟକ । ନିଜର ବିକାଶ ପାଇଁ ସେ ମନରେ କଳ୍ପନା କରିଥାଏ । ସେହି ଅନୁପାତରେ ତାକୁ ନିଜର ବିକାଶ ପାଇଁ ଅବସର ମିଳିବା ବାଞ୍ଛନୀୟ । ଯଦି ସେ ଖେଳଣା ପସନ୍ଦ କରେ, ତେବେ ତାକୁ ପୂର୍ଣ୍ଣ ପ୍ରାଣରେ ଖେଳିବାକୁ ସୁବିଧା ଦିଆଯାଉ । ଯଦି ପଢ଼ିବାକୁ ଇଚ୍ଛା କରେ ତେବେ ପଢ଼ିବାକୁ ଦିଆଯାଉ । ଯଦି ଖାଇବାକୁ ଇଚ୍ଛା କରୁଅଛି, ତେବେ ବିରୋଧ କରନ୍ତୁ ନାହିଁ । ଭଲ ପୋଷାକ ପରିଧାନ କରିବାକୁ ଇଚ୍ଛା ପ୍ରକାଶ କରୁ ବା ନକରୁ, ପାଟି କରି କହି ଚୁପ୍ କରାନ୍ତୁ ନାହିଁ । ଧୂଳିଧୂସରିତ ହେବାକୁ ଇଚ୍ଛା କରୁଛି କରୁ, ବନ୍ଦ କରନ୍ତୁ ନାହିଁ ।

ସେମାନଙ୍କୁ ନିଜ ପରି ଗଢ଼ିବାକୁ ଟିକିଏ ମାତ୍ର ଚେଷ୍ଟା କରନ୍ତୁ ନାହିଁ । ଏମାନଙ୍କୁ ଚାନ୍ଦ ଦେଖାଇ ଖାଇବାକୁ ଦେଇ କେହି କେହି କହନ୍ତି– ଭଲ ମଣିଷ ହୁଅ, ଭଲ ବ୍ୟବହାର କର । ବ୍ୟବହାର, ଶିଷ୍ଟାଚାର, ସଂସ୍କୃତି କିଛି ନାହିଁ ତ ନାହିଁ । ଛୋଟ ବୟସରୁ ଏମାନଙ୍କ ଉପରେ ବହୁତ ଚାପ ଦିଆଗଲାଣି । ଯେତେବେଳେ ସେମାନେ ଉଣେଇଶ–ବିଶ ବର୍ଷର ହୋଇଯିବେ, ସେତେବେଳେ କହନ୍ତୁ ସେମାନେ କ'ଣ କରିବେ । କିପରି ନିଜକୁ ତିଆରି କରିବେ । ସମାଜରେ କିପରି ରହିବାକୁ ହେବ । ଏମାନଙ୍କୁ ଶିଷ୍ଟାଚାର ଭଦ୍ରତା ଶିଖାଇବେ । କିନ୍ତୁ ଚାରି–ପାଞ୍ଚ ବର୍ଷର ଶିଶୁ ଆଗରେ ଏମାନଙ୍କୁ ନେଇ ଆଲୋଚନା କାହିଁକି ? ଆପଣ ଏମାନଙ୍କ ଉପରେ ନିଜର ଜୀବନ ଦର୍ଶନ ଲଦି କରି ଏମାନଙ୍କ ବାକ୍‌ରୁଦ୍ଧ କରି ଦେଉଛନ୍ତି ।

ନିଜ ପାଇଁ ଯାହା କରଣୀୟ ବା ଉପଯୁକ୍ତ, ଏମାନଙ୍କ ପାଇଁ ତାହା କିପରି ଉପଯୁକ୍ତ ହେବ ? ଯଦି ଆପଣଙ୍କ ଛୁଆ ପାଞ୍ଚ ବର୍ଷର, ତେବେ ଆପଣଙ୍କୁ ନିଶ୍ଚୟ ସେତେବେଳକୁ ପଚିଶ ତିରିଶ ବର୍ଷ ହୋଇଥିବ । ଏବେ ଉଭୟଙ୍କ ଭିତରେ ବୟସଗତ ପାର୍ଥକ୍ୟ କେତେ ? ଅତି କମ୍‌ରେ କୋଡ଼ିଏ ବର୍ଷ । ଆପଣ ଏକ ସ୍ଥାନରେ ଛିଡା ହୋଇ ଗୋଟିଏ ଛୁଆ ସହିତ କଥାବାର୍ତ୍ତା ହେଉଛନ୍ତି ଯେ କି ଆପଣଙ୍କଠାରୁ ପଚିଶ ବର୍ଷ ପଛରେ । ଆପଣ ନିଜର ଜୀବନ ଗତିପଥରେ ଏତେ ଆଗରେ ଅଛନ୍ତି । ଧରନ୍ତୁ, ମୋର ବୟସ ଷାଠିଏ । ମୁଁ ଦଶ ବର୍ଷର ବାଳକକୁ କ'ଣ ଦେଖାଇବି ମୁଁ ଭାବି ପାରୁନି । ତା'ପରି ମୁଁ କିପରି ଭାବି ପାରିବି ? ପିଲାକୁ କ'ଣ ଶିଖାଇବା ପୂର୍ବରୁ ମୁଁ ତା'ପରି ନିଜକୁ ପିଲା ବୋଲି ଭାବିବି, ତା'ପରି ଚିନ୍ତା କରିବି ? ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ଯେ ପିଲାକୁ ନିଜର ଓ ତା'ର ବୟସ ମଧ୍ୟରେ ରଖିବାକୁ ହେବ । ଆପଣଙ୍କୁ ଏହାର ସଂରକ୍ଷକ ଓ ତା'ର ଆବଶ୍ୟକତା ପୂରଣ କରିବା ପରେ ରହିବା ଦରକାର । ଆପଣ ତା'ର ଶିକ୍ଷକ ହିସାବରେ ରହନ୍ତୁ କାରଣ ବୟସରେ ଆପଣ ତା'ଠାରୁ ବଡ଼ । ତାକୁ ନିଜ ନିଜ ଭିତରେ ଲଢ଼ିବାକୁ ଦିଅନ୍ତୁ । ମାରପିଟ୍ କରିବାକୁ ଦିଅନ୍ତୁ । ବକ୍‌ବକ୍ ହେବାକୁ ଦିଅନ୍ତୁ ଅଥବା ଯଦି ସେ ଲେଖାପଢ଼ା କରିବାକୁ ଚାହୁଁଛି, ତେବେ ତାକୁ ବାଧା ଦିଅନ୍ତୁ ନାହିଁ । ନିୟମାନୁସାରେ ତା'ର ତ ସ୍କୁଲକୁ ଯିବା ବେଳ । କିନ୍ତୁ ଏଥିପାଇଁ ଆପଣ ଟିକିଏ ଚିନ୍ତା କରନ୍ତୁ ନାହିଁ ।



ପିଲା ନିଜର ଭବିଷ୍ୟତ ନିଧି, କର୍ମ ସଂସ୍କାର ନେଇ ଆସିଥାଏ। ସେ କ'ଣ ହୋଇ ବାହାରିବ। ସେ ନିଜର ପ୍ରାରବ୍ଧ ତଥା ଭବିଷ୍ୟତ ନେଇ ଆସିଥାଏ। ତାର ମାନସିକ ଭାବନାତ୍ମକ ଦାର୍ଶନିକ ଏବଂ ଆଧ୍ୟାତ୍ମିକ ବିକାଶ ନେଇ ଆସିଥାଏ। ତାର ମାନସିକ ଭାବନାତ୍ମକ ଦାର୍ଶନିକ ଏବଂ ଅଧାତ୍ମିକ ବିକାଶ କିପରି ଭାବେ ହେବ, ସେସବୁ ପୂର୍ବ ନିର୍ଦ୍ଧାରିତ। ଯଦି ସେ ଦର୍ଶନତତ୍ତ୍ୱ ଚର୍ଚ୍ଚା କରିବାକୁ ଇଚ୍ଛାକରେ, ତେବେ ତାକୁ ସେପରି କରିବାକୁ ଦିଅନ୍ତୁ। କହିବାର ତାତ୍ପର୍ଯ୍ୟ ଏହି ଯେ ଯଦି ଆପଣ ଇଚ୍ଛା କରନ୍ତି ଯେ ଆପଣଙ୍କ ପିଲା ଉପରେ ଦ୍ୱନ୍ଦାତ୍ମକ ବ୍ୟକ୍ତିମାନଙ୍କର ପ୍ରଭାବ ନପଡୁ, ତେବେ ତାକୁ ଉନ୍ମୁକ୍ତ ପରିବେଶ ଦିଅନ୍ତୁ ଯେପରି ପ୍ରଭାବ ନପଡୁ। ଆଗକୁ ଯାଇ ଆପଣ ଦେଖିବେ, ଆପଣଙ୍କ ପୁତ୍ର ଆପଣଙ୍କର ସମସ୍ତ ଉତ୍ତମ ସଂସ୍କାର ଗ୍ରହଣ କରି ନେଇଛି । କିନ୍ତୁ ଆପଣଙ୍କ ବ୍ୟକ୍ତିତ୍ୱର ଦ୍ୱନ୍ଦ୍ୱ ଏବଂ ଅବାଞ୍ଛିତ ତତ୍ତ୍ୱକୁ ଗ୍ରହଣ କରିନାହିଁ । ଏବେ ସେ ଆପଣଙ୍କଠାରୁ ଏକ ଭିନ୍ନ ବ୍ୟକ୍ତିତ୍ୱର ପ୍ରଭୁ ହୋଇଛି । ତା'ର ଜୀବନ ଓ ବିଚାରଧାରା ଇତ୍ୟାଦିର ଅଭିବ୍ୟକ୍ତି ଆପଣଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅଟେ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶର ସ୍ଥିତି ଯେପରି ଏକ। ଆପଣ ନିଜ ପିଲାକୁ କେବଳ ଖୁଆଇବା ଦାୟିତ୍ୱ ନେଇଛନ୍ତି । ଆପଣ ଏହା ଉପରେ ନିଜର ଆଦର୍ଶ, ମହତ୍ତ୍ୱ , ଆକାଙ୍କ୍ଷା ଇତ୍ୟାଦିର ଚାପ ଦେଉଛନ୍ତି । ଆପଣ ସବୁଦିନ ତାଙ୍କ କଥା ଶୁଣୁଛନ୍ତି, ସର୍ବଦା ଦେଖୁଛନ୍ତି । କିନ୍ତୁ ଆପଣ ଜାଣି ନାହାନ୍ତି, କାହିଁ କି ତାକୁ ଜନ୍ମ ଦିଆଇଲେ। ଆପଣଙ୍କୁ ତା'ର ଉତ୍ପତ୍ତି ପ୍ରୟୋଜନର କାରଣ ଜଣାନାହିଁ। ଯାହାକୁ ଆପଣ ସ୍ନେହ ବ୍ୟାପ୍ୟାର କହନ୍ତି, ତାହା ତ ପ୍ରକୃତ ସ୍ନେହ ନୁହେଁ । ଏହା ଆପଣଙ୍କର ସୁଖ। ମୁଁ କହିବି ଯେ ମାତାପିତା ଉଭୟଙ୍କ ସୁଖ।

ଯଦି ଆପଣଙ୍କର ପୁତ୍ର ଚର୍ଚ୍ଚ ଯିବାକୁ ମନା କରିଦିଏ, ତେବେ ଆପଣଙ୍କର ତାଳୁରୁ ତଳିପା ପର୍ଯ୍ୟନ୍ତ କମ୍ପନ ଜାତ ହୁଏ। ଆପଣ କହନ୍ତି, ହେ ଭଗବାନ ମୁଁ ସାରା ଜୀବନ ବାଇବେଲ୍ ଉପରେ ଗଭୀର ଧ୍ୟାନ ଓ ନିଷ୍ଠା ରଖିଲି, ଚର୍ଚ୍ଚକୁ ଯାଇ ପ୍ରାର୍ଥନା କଲି। ଦିନେ ହେଲେ ଏଥିରୁ ବାଦ ଯାଇନାହିଁ। କିନ୍ତୁ ଆଜି ମୋର ପୁତ୍ର ଏପରି ଅପବିତ୍ର ବିଧର୍ମୀ । ବୁଦ୍ଧିହୀନ କଥା କହୁଛି ସେ ମୋର ପୁତ୍ର ନୁହେଁ କାରଣ ମୋର କୌଣସି ଗୁଣ ଓ ସ୍ୱଭାବ ଏହାଠାରେ ଦେଖୁନି। କାରଣ ଆପଣ ଖ୍ରୀଷ୍ଟିୟାନ କିମ୍ବା ହିନ୍ଦୁ ଅଟନ୍ତି, ତାକୁ ଆପଣ ଯାହା ଇଚ୍ଛା ତାହା କରିପାରନ୍ତି। ଆପଣ ଯୋଗାଭ୍ୟାସ କରନ୍ତି, ଆପଣ ଇଚ୍ଛା କରନ୍ତି ସେ ବି କରୁ। ଆପଣ ଏକ ବିଶେଷ ଢ଼ଙ୍ଗରେ ପୋଷାକ ପିନ୍ଧନ୍ତି ସେ ବି ପିନ୍ଧୁ । ଆପଣ ଆଶ୍ରମ ଯାଆନ୍ତି ସେ ବି ଯାଉ। ଯାହା ଆପଣଙ୍କ ପସନ୍ଦ ନୁହେଁ, ସେ ନକରୁ । ତାକୁ ତା'କଥା କରିବାକୁ ଦିଅନ୍ତୁ। ଯଦି ଆପଣ ତାର ମାତାପିତା ଅଟନ୍ତି, ସେ ତ ଆପଣଙ୍କର ପୁତ୍ର। ଏଥିପାଇଁ ଏଥିରେ କିଏ ବଡ଼ସାନ, କିଏ ଶ୍ରେଷ୍ଠ, କିଏ ଅଧିକ ମହତ୍ତ୍ୱପୂର୍ଣ୍ଣ, ଆପଣ ନା ସେ ତାକୁ ଏକଥା କହି ପାରିବେ ନାହିଁ ଯେ ଆପଣ ସବୁକିଛି। ଏଥିପାଇଁ ତାକୁ ନେଇ ଆକୁଳ ବ୍ୟାକୁଳ ଅଟନ୍ତି।

ଆଜି ସାରା ବିଶ୍ୱ ଆଗରେ ଏହା ଏକ ଜଟିଳ ସମସ୍ୟା। ପୁତ୍ରକୁ ପ୍ରକୃତିର ନିୟମାନୁସାରେ ଭାବିବାକୁ ଦିଅନ୍ତୁ। ଯାହା କରିବାକୁ ଚାହୁଁଛି, କରିବାକୁ ଦିଅନ୍ତୁ। ଯେପରି ଖାଇବ, ଅନୁଭବ କରିବ, ବେଶଭୂଷା, ଧର୍ମ, ବିଶ୍ୱାସ ସବୁ କ୍ଷେତ୍ରରେ ତାକୁ ମୁକ୍ତି କରି ଛାଡି ଦିଅନ୍ତୁ। ସେ ହିନ୍ଦୁ, ମୁସଲମାନ, ଇହୁଦୀ, ଇସାଇ, ଆସ୍ତିକ ବା ନାସ୍ତିକ ଯାହା ଇଚ୍ଛା କରୁଛି କରୁ। ବାଧା ଦିଅନ୍ତୁ ନାହିଁ। ତାକୁ ସମ୍ପୂର୍ଣ୍ଣ ସୁରକ୍ଷା ଓ ସ୍ୱତନ୍ତ୍ରତା ପ୍ରଦାନ କରନ୍ତୁ। ତାକୁ ନିଜର ଜୀବନ ନିଜେ ସମ୍ଭାଳିବାକୁ ଦିଅନ୍ତୁ, ତେବେ ଆପଣ ଏକ ନୂତନ ସଂସାରରେ କାଳଯାପନ କରିପାରିବେ।

ଆଜି ସମାଜରେ ଲୋକମାନଙ୍କ ମଧ୍ୟରେ ଅରାଜକତା, ବିଭ୍ରମ, ଅନିର୍ଣ୍ଣୟ ଓ ଯଥେଚ୍ଛାଚାରିତା ଅସମ୍ଭବ ଭାବରେ ବୃଦ୍ଧି ପାଇବାରେ ଲାଗିଛି, ପିଲାମାନେ ଗ୍ରହଣ କରି ନପାରନ୍ତି। ସଡ଼କ ମଝିରେ କ୍ରିକେଟ, ଫୁଟବଲ ଖେଳିବେ। ଯିବା ଆସିବା କରିବେ। ଅସୁବିଧା ବଢ଼ିବ। ଭାରତରେ ଏମିତି ଏମିତି ହେଉଛି। କିନ୍ତୁ ଆଶା ଓ ବିଶ୍ୱାସ ତିନି ଚାରି ପୁରୁଷ ପିଢ଼ି ପରେ ସବୁ କିଛି ଶାନ୍ତ ହୋଇଯିବ। ନୂତନ ବିକାଶ ହେବ। ନୂତନ ବ୍ୟବସ୍ଥା ହେବ। ବିଶ୍ୱ ବ୍ୟବସ୍ଥା ପ୍ରଚଳିତ ହେବ। ଯାହାକି ଆଜି ଆମକୁ ଦିବାସ୍ୱପ୍ନ ଓ କାଳ୍ପନିକ ଜଣାପଡୁଛି। ଏହି ବ୍ୟବସ୍ଥା ଶାସନତାନ୍ତ୍ରିକ ହେବ ନାହିଁ। କୌଣସି ସରକାର ପାଇଁ ଏହା ବାସ୍ତବ ନୁହେଁ। ସମ୍ଭବ ନୁହେଁ। ସମାଜ, କାନୁନ୍ ଓ ଧର୍ମ କୌଣସିଟି ହେଲେ ମଧ ଆଣି ପାରିବେ ନାହିଁ । ଆମେ ନିଜେ ନିଜେ ଅନ୍ତଃ–ପ୍ରେରଣାରୁ ଏହି ବ୍ୟବସ୍ଥାକୁ ଆଣି ପାରିବା। ଏଥିରେ ରହିବା ଓ ପୃଥିବୀକୁ ସ୍ୱର୍ଗ ବୋଲି ମନେ କରିବା। ଇଂରାଜୀରେ କହିବା ଏହା ଏକ ପୃଥିବୀ। ଉଆନ୍– ଉଆରଲ୍ଡନେସ୍ (One Worldness)।

କୈବଲ୍ୟ, ଦଉତୋଟା, ପୁରୀ



# ସ୍ୱରାଜ ଆନ୍ଦୋଳନରେ ଶ୍ରୀ ଅରବିନ୍ଦ

**ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତସ୍)**

ଶ୍ରୀ ଅରବିନ୍ଦ ଜଣେ ମହାମାନବ ଥିଲେ। ପବିତ୍ର ଭାରତ ଭୂମିର ବଙ୍ଗ ପ୍ରଦେଶର କଲିକତାଠାରେ ୧୮୭୨ ମସିହାର ପବିତ୍ର ତିଥି ଅଗଷ୍ଟ ୧୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ। ସଂସାରରେ ଜନ୍ମ ନେବା ଓ କିଛିଦିନ ପରେ ଲୀଳାଖେଳାର ସମାପନା କରି ମୃତ୍ୟୁବରଣ କରିବା ଏହାତ ସଦାକାଳ ପାଇଁ ଏକ ନିରାଟ ସତ୍ୟ କଥା। ଏଥିରେ ନୂତନତା ବା ସ୍ୱାତନ୍ତ୍ର ନାହିଁ କହିଲେ ଚଳେ। କିନ୍ତୁ ଯେଉଁ ମହାପୁରୁଷମାନେ ସେମାନଙ୍କ କର୍ମସାଧନା ବଳରେ ଏହି ପୃଥିବୀରେ ଜ୍ଞାନ ଅନ୍ୱେଷଣ କରି ନିଜେ ବଞ୍ଚିବା ସଂଗେ ସଂଗେ ଅନ୍ୟମାନଙ୍କ ବଞ୍ଚିବାର ଜୀବନଧାରାକୁ ସହଜ ସୁନ୍ଦର ଗାରିମାମୟ କରି ଦେଇଥାନ୍ତି। ସେମାନେ ମରି ଥିଲେ ମଧ୍ୟ ଅମର ଓ ପ୍ରାତଃ ସ୍ମରଣୀୟ। ମହାପୁରୁଷ ଅରବିନ୍ଦଙ୍କ ଜୀବନ ଚର୍ଯ୍ୟା ଥିଲା ସେଭଳି । ଅରବିନ୍ଦଙ୍କ ପିତା ଥିଲେ ଜଣେ ବିଲାତ ଫେରନ୍ତା ସିଭିଲ ସର୍ଜନ ଓ ମାତା ଥିଲେ ଜଣେ ଭାରତୀୟ ଦର୍ଶନକୁ ଭଲ ପାଉଥିବା ନାରୀ। ତାଙ୍କର ନାମ ଥିଲା ସ୍ୱର୍ଣ୍ଣମୟୀ ଦେବୀ। ପିତୃ ପରିଚାଳିତ ପରିବାରରେ ପିତା କୃଷ୍ଣଧନ ଘୋଷଙ୍କ ଇଚ୍ଛାରେ ଅରବିନ୍ଦ ଭାଇମାନଙ୍କ ଭଳି ଦାର୍ଜିଲିଂଠାରେ ମିଶ୍ନାରୀ ସ୍କୁଲରେ ୫ ବର୍ଷ ଯାଏଁ ଶିକ୍ଷା ସମାପ୍ତ କରି ବିଲାତରେ ସ୍କୁଲ ଓ କଲେଜ ଶିକ୍ଷା ଗ୍ରହଣ କରିଥିଲେ। ନିଜ ପିତାଙ୍କର ଜଣେ ଇଂରେଜୀ ମାଜିଷ୍ଟ୍ରେଟ ବନ୍ଧୁ ଥିଲେ । ଫଳରେ ବନ୍ଧୁଙ୍କ ବନ୍ଧୁ ଘରେ ରଖି ପିଲାମାନଙ୍କ ଶିକ୍ଷା ବ୍ୟବସ୍ଥା କରିଥିଲେ। ଅରବିନ୍ଦ ମାଞ୍ଚେଷ୍ଟରର ଏକ ସ୍କୁଲରେ ପାଞ୍ଚ ବର୍ଷ ଅଧ୍ୟୟନ ପରେ ପଢ଼ିଲେ ଲଣ୍ଡନର ସେଣ୍ଟପଲ୍ସ ସ୍କୁଲରେ ।

ଅରବିନ୍ଦଙ୍କ ପାଠ ପଢ଼ା ଜୀବନର ବିଶେଷତ୍ୱ ହେଲା ସେ ଶ୍ରେଣୀରେ ପ୍ରତ୍ୟେକ ବିଷୟରେ ସମସ୍ତଙ୍କଠାରୁ ପ୍ରଥମ ହେଉଥିଲେ ଓ ପଢ଼ା ଶେଷରେ ବୃତ୍ତି ପାଇଥିଲେ । ସ୍କୁଲ ପଢ଼ା ପରେ କେଂବ୍ରିଜର ଏକ କଲେଜରେ ପାଠ ପଢ଼ା ଆରମ୍ଭ କଲେ ନିଜ ଇରେଂଜୀ ସଂସ୍କୃତି ପ୍ରିୟ ପିତା କୃଷ୍ଣଧନଙ୍କ ଅଭିଳାଷ ପୂରଣ କରିବା ପାଇଁ ମାତ୍ର ଅଠରବର୍ଷ ବୟସରେ ସେ ସିଭିଲ୍ ସର୍ଭିସ ପରୀକ୍ଷା ଦେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ଆଇ.ସି.ଏସ୍ ପରୀକ୍ଷାରେ ସଫଳତା ହାସଲ କରି ସେ ଭାରତକୁ ଫେରିଲେ ଓ ମାଜିଷ୍ଟ୍ରେଟ ଚାକିରି ପାଇଁ ଆବେଦନ କରି ଘୋଡ଼ା ଚଢ଼ା ପରୀକ୍ଷା ଦେଲେ । ବଡ଼ ଦୁଃଖ କି ସୌଭାଗ୍ୟର କଥା କେଜାଣି ଶ୍ରୀ ଅରବିନ୍ଦ ଘୋଡ଼ା ଚଢ଼ାରେ ଜାଣି ଜାଣି ଅକୃତକାର୍ଯ୍ୟ ହୋଇ ଭାରତର ପ୍ରଶାସନ ସେବାର ନିଯୁକ୍ତିକୁ ମଧ୍ୟ ହରାଇଦେଲେ । ପଢ଼ିଲାବେଳେ ପିତାଙ୍କଠାରୁ ଅର୍ଥ ପାଇ ଉଚ୍ଚଶିକ୍ଷାର ଖର୍ଚ୍ଚ ଚଳାଇ ନେଉଥିଲେ ମଧ୍ୟ ମାଜିଷ୍ଟ୍ରେଟ ଚାକିରି ହରାଇବା ପରେ ଅର୍ଥର ଅଭାବ ଅନଟନ ନେଇ ଚଳିବାକୁ ହେଲା । ଶ୍ରୀ ଅରବିନ୍ଦଙ୍କୁ ଏଭଳି ସ୍ଥିତିରେ ବେଳେବେଳେ ଉପବାସରେ ସମୟ କଟାଇବାକୁ ପଡ଼ୁଥିଲା । ୧୮୯୩ରେ ଭାରତକୁ ଫେରିବା ବେଳକୁ ତାଙ୍କରି ବୟସ ହୋଇଥିଲା ଏକୋଇଶି । ବରୋଦାର ରାଜାଙ୍କ ଅନୁଗ୍ରହରୁ ଅରବିନ୍ଦ ବରୋଦାରେ ଏକ ଚାକିରି ପାଇଲେ କିନ୍ତୁ ଭାରତ ଆସିବା ବାଟରେ ହିଁ ପିତା କୃଷ୍ଣଧନଙ୍କର ମୃତ୍ୟୁ ହୋଇଥିଲା । ଆର୍ଥିକ ଅନଟନ, ପିତୃ ବିୟୋଗାଦି ପରେ ଶ୍ରୀ ଅରବିନ୍ଦ ଜଣେ ଶାନ୍ତ ସରଳ ଜୀବନ ଯାପନ କରିବାକୁ ଲାଗିଲେ । ବିଲାତ ପଢ଼ୁଆ ଯୁବକ ଭାବରେ ନିଜକୁ କୋଟ୍ କାମିଜ୍‌ରେ ସାହେବି ଢ଼ଙ୍ଗରେ ନିଜକୁ ନସଜାଇ ତଦାନୀନ୍ତନ ଖଣ୍ଡିଏ ଧୋତି ପଂଜାବୀ ହେଲା ତାଙ୍କରି ଶ୍ରଦ୍ଧା ଓ ଆଗ୍ରହର ପୋଷାକ ପରିଚ୍ଛଦ । ଏମିତିକି ଅନେକ ସମୟରେ ଧୋତିଟିଏ ପିନ୍ଧି ଖାଲି ଦେହରେ ଚାଦରଟିଏ ଗୁଡ଼େଇ ହୋଇ ସେ ବୁଲିବାକୁ ପସନ୍ଦ କରୁଥିଲେ । ପିଲାଟିବେଳୁ ଇଂରେଜୀ ସହ ଲାଟିନ୍ ଓ ଗ୍ରୀକ୍ ଭାଷାରେ ଶ୍ରୀ ଅରବିନ୍ଦ ପାରଦର୍ଶିତା ହାସଲ କରିଦେଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସମସ୍ତ ୟୁରୋପୀୟ



ଭାଷାକୁ ଆୟତ୍ତ କରିପାରିଥିଲେ । ଏପରିକି ତାଙ୍କ ଦ୍ୱାରା ରଚିତ ଇଂରେଜ କବିତା ରଚନାରେ ସ୍ୱର୍ଣ୍ଣ ପଦକ ହାସଲ କରି ଇଂରେଜ ସାହିତ୍ୟ କ୍ଷେତ୍ରରେ ଜଣେ ଭାରତୀୟ ଭାବେ ପାରଦର୍ଶିତା ଅର୍ଜନ କରିଥିଲେ । ପିଲାଟି ବେଳରୁ ଇଂରେଜ ଭାଷା ଶିକ୍ଷାରେ ପାରଦର୍ଶିତା ହାସଲ କରିବା ସହ ଲାଟିନ୍ ,ଗ୍ରୀକ୍ ଭାଷା ଓ ଅନ୍ୟାନ୍ୟ ୟୁରୋପୀୟ ଭାଷା ଜାଣିଥିଲେ ମଧ୍ୟ ଭାରତକୁ ଫେରିବା ପରେ ତାଙ୍କର ଅନୁଭବ ହେଲା ଯେ ସେ ନିଜ ମାତୃଭାଷା ବଂଗଳା ଜାଣିପାରି ନାହାଁନ୍ତି । ତେଣୁ ସେ ବଂଗଳା ଅଭ୍ୟାସ କଲେ । ସଂସ୍କୃତ ହେଉଛି ସମସ୍ତ ଭାରତୀୟ ଭାଷାର ମାତା । ସଂସ୍କୃତରେ ରଚିତ ବହୁ କାବ୍ୟକବିତା ବେଦ ଉପନିଷଦ ଧର୍ମଶାସ୍ତ୍ରଗୁଡ଼ିକରୁ ଜ୍ଞାନ ଆହରଣର ଆକର୍ଷଣ ତାଙ୍କୁ ସଂସ୍କୃତ ଭାଷା ଶିକ୍ଷା କରିବାକୁ ବାଧ୍ୟ କଲା ଓ ମାତ୍ର ଅଳ୍ପଦିନ ମଧ୍ୟରେ ଅରବିନ୍ଦ ବଂଗଳା ଓ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ହାସଲ କଲେ । ଏ ଥିଲା ତାଙ୍କ ମାତୃଭାଷା ଉପରେ ଅନନ୍ୟ ଶ୍ରଦ୍ଧା ଓ ଆକର୍ଷଣର ଫଳ ।

୧୮୯୩ ମସିହା ଫେବୃଆରୀ ୮ ତାରିଖରେ ସେ ବରୋଦାର ଷ୍ଟେଟ୍ ସର୍ଭିସରେ ମାସିକ ୨୦୦ଟଙ୍କା ଦରମାରେ ଯୋଗଦେଇ ସେଟ୍‌ଲ୍‌ମେଣ୍ଟ, ଷ୍ଟାପ ଓ ରାଜସ୍ୱ ବିଭାଗରେ କାମ କଲେ । ଶ୍ରୀ ଅରବିନ୍ଦଙ୍କ ଅଗାଧଜ୍ଞାନ ଓ ପାଣ୍ଡିତ୍ୟର ସନ୍ଦର୍ଶନ କରି ବରୋଦାର ରାଜା ସେମାଜୀରାଓ ଗାଏକୱାଡ଼ ତାଙ୍କୁ ନିଜର ବ୍ୟକ୍ତିଗତ ସେକ୍ରେଟାରୀ ଭାବରେ ଅବସ୍ଥାପିତ କରିଥିଲେ । ତଥାପି ଅରବିନ୍ଦଙ୍କ ଜ୍ଞାନର ଯଥାର୍ଥ ଉପଯୋଗ କରାଯାଇ ପାରୁନଥିବା ଜାଣି ମହାରାଜା ୧୯୦୦ ମସିହାରେ ବରୋଦା କଲେଜର ଇଂଲିଶ୍ ପ୍ରଫେସର ଭାବେ ନିଯୁକ୍ତି ହେଲେ । ଏହାପରେ ଅରବିନ୍ଦ କଲିକତାର ଭୂପାଳଚନ୍ଦ୍ର ବସୁଙ୍କ କନ୍ୟା ମୃଣାଳିନୀଙ୍କ ସହ ବିବାହ ହେଲା । କଲେଜରେ ଶ୍ରୀ ଅରବିନ୍ଦ ଇଂରେଜ ଭାଷା ସହ ପିଲାମାନଙ୍କୁ ଫରାସୀ ଭାଷା ମଧ୍ୟ ପଢ଼ାଉଥିଲେ । ସେ ଜଣେ ନିଷ୍ଠାପର ଶିକ୍ଷକ ଥିଲେ । କୌଣସି ରାଜକୀୟ ଅବା ବ୍ୟକ୍ତିଗତ କର୍ମରେ ବ୍ୟସ୍ତ ରହିବାକୁ ପଡ଼ିଲେ ସେ ଆଗତୁରା ଅଧିକା କ୍ଲାସ ନେଇ ପିଲାଙ୍କ ପାଠ୍ୟକ୍ରମ ସାରି ଦେଉଥିଲେ । ଏହି କଲେଜରେ ଭାରତୀୟ ବିଦ୍ୟାଭବନର ପ୍ରତିଷ୍ଠାତା କେ.ଏମ୍. ମୁନ୍‌ସୀ, ଅରବିନ୍ଦଙ୍କ ଛାତ୍ର ଥିଲେ ଓ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ମାନବ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ମହାମାନବ ଶ୍ରୀ ଅରବିନ୍ଦ ଥିଲେ ଅତ୍ୟନ୍ତ ଜ୍ଞାନ ପିପାସୁ । ତାଙ୍କ ପାଖରେ ସମୟ ହାର ମାନି ନେଉଥିଲା । ଶ୍ରୀ ଅରବିନ୍ଦ ସମୟର ପ୍ରତ୍ୟେକ ମୁହୂର୍ତ୍ତକୁ ଠିକ୍ ଭାବରେ ବ୍ୟବହାର କରୁଥିଲେ । ଯେକୌଣସି ସମୟରେ କିଛି ବଳକା ସମୟ ପାଇଲେ ସେ ବ୍ୟାଗ୍‌ରେ ରଖିଥିବା ବହି ପାଠ କରୁଥିଲେ ଓ ଆମ ଅଗାଧ ସଂସ୍କୃତି ଓ ସନାତନ ଧର୍ମ ଧାରଣାର ବେଦାଦି ଧର୍ମ ଶାସ୍ତ୍ରଗୁଡିକରୁ ଜ୍ଞାନ ଆହରଣ କରିବାକୁ ଭୁଲି ନଥିଲେ । ଅରବିନ୍ଦଙ୍କ କାର୍ଯ୍ୟ କରିବାର ଶୈଳୀ ଥିଲା ଭିନ୍ନ । ସେ ଅଯଥା ବାକ୍ୟାଳପ ନକରି କର୍ମକରି ସମୟ ଉପଯୋଗ କରିବାକୁ ଶ୍ରେୟ ଦେଉଥିଲେ । ସେ ଥିଲେ ଜଣେ ଧୂରୀଣ ପାଠକ । ତାଙ୍କ ଦରମାର ଅର୍ଦ୍ଧାଧିକ ଅର୍ଥ ସେ ବହି କିଣିବାରେ ଉପଯୋଗ କରୁଥିଲେ ଓ ସେସମୟରେ କିରୋସିନି ଡ଼ିବିରି ଲଗାଇ ମଧ୍ୟ ରାତି ଦୁଇଘଣ୍ଟା ଯାଏ ବହି ପଢ଼ିବାରେ ନିଜକୁ ନିୟୋଜିତ ରଖୁଥିଲେ । ଏହି ସମୟରୁ ସେ ତାଙ୍କରି ମହା ଆଧ୍ୟାତ୍ମିକ କାବ୍ୟ 'ସାବିତ୍ରୀ' ଲେଖିବା ଆରମ୍ଭ କରିଥିଲେ । ବଙ୍ଗଳା ଶିକ୍ଷା କରିବା ପାଇଁ ଦୀନେନ୍ଦ୍ର କୁମାର ରାୟଙ୍କୁ ନିଜ ସାଙ୍ଗ ଭାବରେ ଗ୍ରହଣ କରି ତାଙ୍କଠାରୁ ବଙ୍ଗଳା ଶିଖିଥିଲେ ଓ ପ୍ରତିବଦଳରେ ଦୀନେନ୍ଦ୍ରଙ୍କୁ ଶିଖାଇ ଥିଲେ ନିଜେ ଜାଣିଥିବା ଫରାସୀ ଓ ଜର୍ମାନୀ ଭାଷା ।

ଶ୍ରୀ ଅରବିନ୍ଦ ଥିଲେ ଜଣେ ସ୍ୱାଧୀନ ଚେତା ସ୍ୱଦେଶୀ ଭକ୍ତ । ଭାରତ ଥିଲା ଇଂରେଜଙ୍କ ଅଧୀନରେ । ସ୍ୱାଧୀନତା ଆଉ ଆସିଲା କୁଆଡୁ । ନିଜ ପିତା କୃଷ୍ଣଧନ ସିନା ଚାହୁଁଥିଲେ ପୁଅ ଅରବିନ୍ଦ ଇଂରେଜ ବିଦ୍ୟା ଅଧ୍ୟୟନ କରି ହାକିମ୍ ହୋଇ ଅନ୍ୟମାନଙ୍କଠାରୁ ନିଆରା ସାହେବ ଭାବେ ଜୀବନ ବିତାଇବାକୁ, କିନ୍ତୁ ସେ ଜାଣି ନଥିଲେ ଶ୍ରୀ ଅରବିନ୍ଦ ତାଙ୍କ ମାତାଙ୍କ ଭଳି ସ୍ୱଦେଶୀ ଧର୍ମରେ ଅନୁପ୍ରାଣିତ ହୋଇଛନ୍ତି । ଏଭଳି ଏକ ସମୟରେ ମରାଠାର ଜଣେ ଲେଖକ ତାଙ୍କ ନାମ ଦେଓସ୍କର । ସେ ବଙ୍ଗାଳୀରେ ଏକ ବହି ଲେଖିଥିଲେ । ଯେଉଁଥିରେ ସେ 'ସ୍ୱରାଜ' ଆଉ 'ସ୍ୱଦେଶୀ' ଶବ୍ଦ ଦୁଇଟିର ବ୍ୟବହାର କରିଥିଲେ । ବଙ୍ଗଳା କାହିଁକି ସାରା ଭାରତବର୍ଷରେ ଏହି ଦୁଇଟି ଶବ୍ଦ ତୀର ଭଳି ଖେଳିଯାଇଥିଲା ଓ ସରକାର ଭାରତବାସୀଙ୍କ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମ ରଡ଼ରେ ଏହି ବହିଟିକୁ ନିଷିଧ କରିଦେଲେ । ଶ୍ରୀ ଅରବିନ୍ଦଙ୍କୁ ସ୍ୱରାଜ ଓ ସ୍ୱଦେଶୀ ଦୁଇ ଶବ୍ଦ ବହୁଳ ଭାବରେ ପ୍ରଭାବିତ କରିଥିଲା । ସେ 'ସ୍ୱରାଜ'ର ଅର୍ଥ ମାତୃଭୂମିର ବନ୍ଦନା ଜ୍ଞାନ କରି ତାଙ୍କ ରଚିତ 'ବନ୍ଦେ ମାତରମ୍' ବହିରେ ଉଲ୍ଲେଖ ରଖିଲେ । ସେତେବେଳର ପରିସ୍ଥିତିରେ 'ସ୍ୱରାଜ' ଦେଶ ମୁକ୍ତି ଆନ୍ଦୋଳନର ଏକ ନିଆଁ ଝୁଲ ଭଳି ଗାଁରୁ ଗାଁ, ପ୍ରଦେଶରୁ ଦେଶକୁ ବ୍ୟାପୀବାରେ ଲାଗିଲା । ମହାପରାକ୍ରମଶାଳୀ ବ୍ରିଟିଶ ସରକାରଙ୍କ ହାତରୁ ଭାରତର ମୁକ୍ତି ଅସମ୍ଭବ ମନେ ହେଉଥିଲେ ବି ଅରବିନ୍ଦ ଜନଜାଗରଣ ସୃଷ୍ଟି ପାଇଁ 'ଗୋପନ ବିପ୍ଳବ'ର ସଂଗଠନ ସୃଷ୍ଟି କରିବାରେ ଲାଗି ପଡିଲେ । ପୁନାରୁ ପ୍ରକାଶ ପାଉଥିବା 'ଇନ୍ଦୁପ୍ରକାଶ' ନାମକ ପତ୍ରିକାରେ 'ସ୍ୱରାଜ' ସଂପର୍କରେ ଧାରାବାହିକ ଲେଖା ପ୍ରକାଶ କଲେ । ଲେଖା





ପ୍ରକାଶନରେ ଇଂରେଜ ସରକାର ପତ୍ରିକାକୁ ବେଆଇନ୍ ଘୋଷଣା ଭୟରେ ସଂପାଦକ ୧୮୯୪ ଫେବୃଆରୀରୁ ଶ୍ରୀ ଅରବିନ୍ଦଙ୍କ ଲେଖା ଛାପିବା ବନ୍ଦ କରିଦେଲେ। ଅରବିନ୍ଦ ସାରାଦେଶ ଭ୍ରମଣ କରି 'ସ୍ୱରାଜ'ର ସମ୍ବାଦ ଲୋକଙ୍କ ମନକୁ କିଭଳି ପ୍ରଭାବ ପକାଉଛି ଅନୁଧ୍ୟାନ କରି ଶେଷରେ ଯତୀନ୍ଦ୍ର ନାଥ ବାନାର୍ଜୀଙ୍କ ଏକ ସଂଗଠନ 'ବରୋଦା ଆର୍ମି'ରେ ଯୋଗଦେଲେ। ଯତୀନ୍ଦ୍ର ନାଥଙ୍କ ପରବର୍ତ୍ତୀ ପରିଚୟ ଥିଲା ନିରାଲମ୍ବ ସ୍ୱାମୀ। ସଂଗଠନର ଉଦ୍ଦେଶ୍ୟ ଥିଲା ଇଂରେଜ ସରକାରଙ୍କୁ ନିଜ ମାତୃଭୂମିରୁ ବଳପୂର୍ବକ ତଡ଼ିବା। କିନ୍ତୁ ଏହା ସଂଭବ ନଥିଲା। ସେ ଯାହାହେଉ, ତାଙ୍କ ଲକ୍ଷ୍ୟ ତାକୁ ଆଗରେ ରଖି ଚାଲିବାକୁ ପଡ଼ିବ ଆଗକୁ ଆଗକୁ...। ସ୍ୱାମୀ ନିରାଲମ୍ବ ଏହି ଗୋପନ ବିପ୍ଳବର ଅଗ୍ନିସ୍ଫୁଲିଙ୍ଗକୁ ଜାଗରିତ କରିବା ପାଇଁ ବଙ୍ଗଳାକୁ ଆସି ଭାରତର ମୁକ୍ତି ପାଇଁ ଏକ ଯୁବ ସମାଜ ଗଠନ କଲେ। ଅରବିନ୍ଦ ଓ ତାଙ୍କ ଭାଇ ବାରିନ୍ ଏହି ଯୁବ ସମାଜର ସକ୍ରିୟ ସଭ୍ୟ ଭାବରେ ଯୋଗ ଦେଲେ । ଏହି ସଂଗଠନର ସଦସ୍ୟମାନଙ୍କୁ ଏକ କ୍ୱଳମାନ ଶପଥ ନେବାକୁ ହେଉଥିଲା। ଗୋଟିଏ ହାତରେ ତରବାରୀ ଓ ଅନ୍ୟ ହାତରେ ଧର୍ମଗ୍ରନ୍ଥ ଭଗବତ୍‌ଗୀତାକୁ ଧରି ଯେ ଜୀବନ ଥିବା ଯାଏ ଭାରତର ସ୍ୱାଧୀନତା ପାଇଁ ବିପ୍ଳବ ଚାଲୁ ରଖିବୁ ଓ କୌଣସି ପରିସ୍ଥିତି ସଂଗଠନର କ୍ଷତି ହେଲାଭଳି କାର୍ଯ୍ୟ କରିବୁ ନାହିଁ। ୧୯୦୨ରେ ଅରବିନ୍ଦ ବଙ୍ଗଳାକୁ ଫେରିଆସି ଗୁପ୍ତ ବିପ୍ଳବର ଜାଗରଣରେ ଲାଗି ପଡିଲେ। ସେହି ବର୍ଷ ଅହମଦାବାଦରେ କଂଗ୍ରେସ ଅଧିବେଶନରେ ଅରବିନ୍ଦ ଯୋଗ ଦେଲେ। କଂଗ୍ରେସର ଉଚ୍ଚାଧିକାରୀ ବାଳଗଙ୍ଗାଧର ତିଳକ ଅରବିନ୍ଦଙ୍କୁ ମଞ୍ଚ ଉପରକୁ ଡାକିନେଇ ସନ୍ତ୍ରାସବାଦ ଭଳି ଗୁପ୍ତ ବିପ୍ଳବ ନକରିବା ପାଇଁ ପରାମର୍ଶ ଦେଇଥିଲେ ମଧ୍ୟ ଯୁବ ଅରବିନ୍ଦ ଏହି ପରାମର୍ଶକୁ ସ୍ୱୀକାର କରି ନଥିଲେ। ୧୯୦୪ରେ ବମ୍ବେ କଂଗ୍ରେସ ଅଧିବେଶନରେ ପ୍ରସ୍ତାବ ଥିଲା ଭାରତ ସଂଯୁକ୍ତ ରାଜ୍ୟ ଗଠନ କରାଯାଉ କିନ୍ତୁ ଶ୍ରୀ ଅରବିନ୍ଦ ଦାବି ରଖିଲେ ସଂପୂର୍ଣ୍ଣ ସ୍ୱରାଜ। ୧୯୦୫ରେ ପୁଣି ବନାରସରେ କଂଗ୍ରେସ ଅଧିବେସନ ଗୋପାଳକୃଷ୍ଣ ଗୋଖଲେଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା ଓ ଶ୍ରୀ ଅରବିନ୍ଦ ଏଥିରେ ମଧ୍ୟ ଯୋଗଦେଇ ଗୁପ୍ତ ବିପ୍ଳବ ପାଇଁ ଶକ୍ତି ସଂଚୟରେ ଲାଗି ପଡିଲେ। ଜନସାଧାରଣଙ୍କ ବିରୋଧ ସତ୍ତ୍ୱେ ବ୍ରିଟିଶ୍ ସରକାର ତାଙ୍କ ସୁବିଧା ପାଇଁ ବଙ୍ଗଳାକୁ ଦୁଇ ଭାଗ କରିଦେଲେ। ଲୋକେ ଅଧିକ ଅସନ୍ତୁଷ୍ଟ ହୋଇ 'ବନ୍ଦେ ମାତରମ୍' ଧ୍ୱନିରେ ଏକତ୍ରିତ ହୋଇ ଆନ୍ଦୋଳନ ପାଇଁ ଆଗକୁ ଆସିଲେ। ବଙ୍କିମ୍ ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଲିଖିତ 'ଆନନ୍ଦମଠ' ଉପନ୍ୟାସର ଏକ ସଂଗୀତ ଥିଲା ବନ୍ଦେ ମାତରମ୍, ଯାହାକି ସମଗ୍ର ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନକୁ ଉଜ୍ଜୀବିତ କରି ରଖିଥିଲା। ୧୯୦୬ ଏପ୍ରିଲ ୧୪ ତାରିଖରେ ବିପିନଚନ୍ଦ୍ର ପାଲ, ବଙ୍କିମ ଚନ୍ଦ୍ର ଚାଟାର୍ଜୀ ଓ ଶ୍ରୀ ଅରବିନ୍ଦ ଆନ୍ଦୋଳନର ନେତୃତ୍ୱ ନେଇ ଲାଠିମାଡ଼ ଖାଇଲେ। ପରେ ୧୯୦୬ରେ 'ଯୁଗାନ୍ତର'ନାମକ ଏକ ପତ୍ରିକା କଲିକତାରୁ ପ୍ରକାଶିତ ହେଲା ଓ ଜାତୀୟ ଚେତନା ଓ ବିପ୍ଳବ ସଂପର୍କୀୟ ଲେଖା ସବୁ ଏଥିରେ ରହିଥିଲା। ବ୍ରିଟିଶ୍ ସରକାର ଏହାକୁ ଅସିଦ୍ଧ ଘୋଷଣା କରି ମକଦ୍ଦମା ଦାୟର କଲେ ଓ 'ଯୁଗାନ୍ତର' ତରଫରୁ ସର୍ବପ୍ରଥମେ ବ୍ରିଟିଶ୍ ସରକାରଙ୍କୁ ଅସ୍ୱୀକାର କରି ମକଦ୍ଦମା ଲଢ଼ିଲେ। ୧୯୦୬ ମସିହାରେ ଜାତୀୟ ଶିକ୍ଷା ପରିଷଦ ତରଫରୁ କଲିକତାରେ ପ୍ରତିଷ୍ଠା ହେଲା ଜାତୀୟ କଲେଜ ଓ ଅରବିନ୍ଦ ମାତ୍ର ୧୫୦ ଟଙ୍କା ଦରମାରେ କଲେଜର ଅଧ୍ୟକ୍ଷ ଦାୟିତ୍ୱରେ ରହିଲେ। ଆନ୍ଦୋଳନ ଚାଲିଥିଲା। ନିଜର ଚଳିବା ପାଇଁ କିଛିତ ଅର୍ଥର ଆବଶ୍ୟକତା ରହିଛି। ଅଧ୍ୟକ୍ଷ ଦାୟିତ୍ୱ ନେଇ ସେ ଅଭାବ କିଛିଟା କମିଲା। ଅଗଷ୍ଟ ମାସ ବିପ୍ଳବର ମାସ, ୧୯୦୬ ଅଗଷ୍ଟ ୬ ତାରିଖରେ ବିପିନ ବିହାରୀ ପାଲଙ୍କ ମାଲିକାନାରେ ଓ ଅରବିନ୍ଦଙ୍କ ସମ୍ପାଦନାରେ 'ବନ୍ଦେ ମାତରମ୍' ପତ୍ରିକା ପ୍ରକାଶିତ ହେଲା। ସରକାର ଏହାକୁ ନିଷିଦ୍ଧ କରି ଅରବିନ୍ଦଙ୍କୁ ଜେଲ୍ ପଠାଇଦେଲେ। ସେହି ବର୍ଷ କଂଗ୍ରେସ ଅଧିବେଶନର ସଭା ହେଲା କଲିକତାରେ ଦାଦାଭାଇ ନାରୋଜୀଙ୍କ ଅଧ୍ୟକ୍ଷତାରେ। ଏହି ଅଧିବେଶନରେ ସ୍ୱରାଜ ଦାବିର ଏକ ପ୍ରସ୍ତାବ ରଖାଗଲା। କିନ୍ତୁ ୧୯୦୭ ଡିସେମ୍ବର ସୁରାଟ୍ କଂଗ୍ରେସ ସଭାରେ ଉଦାର ଓ ଚରମବାଦୀଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଦେଲା। ଏହାର ସୁବିଧା ନେଇ ମାଜିଷ୍ଟ୍ରେଟ କିସ୍ ଫୋର୍ଡ ଅରବିନ୍ଦଙ୍କ ଗୁପ୍ତ ବିପ୍ଳବକୁ ଦବାଇବାର ଦୃଢ଼ ଚେଷ୍ଟା କରି କର୍ମୀମାନଙ୍କୁ ଶିକାର ତାଲିକାରେ ରଖିଲେ। ବ୍ରିଟିଶ୍ ସରକାରଙ୍କ ପକ୍ଷରୁ 'ବନ୍ଦେ ମାତରମ୍' ଗୁପ୍ତ ଯୁବ ବିପ୍ଳବ ଦବାଇବା ପାଇଁ କିସ୍ ଫୋର୍ଡ ଯେଉଭଳି ବିପ୍ଳବୀମାନଙ୍କୁ ଗିରଫ କରି ବନ୍ଦୀ କରୁଥିଲେ, ସେଥିପାଇଁ ବିପ୍ଳବୀମାନଙ୍କ ଏକ ଗୁପ୍ତ ବୈଠକରେ କିସ୍ ଫୋର୍ଡଙ୍କୁ ପ୍ରାଣଦଣ୍ଡ ଦିଆଯିବା ପାଇଁ ନିଷ୍ପତ୍ତି ହେଲା ଏବଂ ଏଥିପାଇଁ ବିପ୍ଳବୀ ବାରିନ୍ ଘୋଷଙ୍କ ନିର୍ଦ୍ଦେଶରେ ଖୁଦିରାମ ଘୋଷ ଓ ପ୍ରଫୁଲ୍ଲ ଚାକିଙ୍କୁ ନିଯୁକ୍ତ କରାଗଲା। ମୁଜାଫର ପୁରରେ କିସ୍‌ଫୋର୍ଡ କ୍ଲବକୁ ଯାଇଥିଲାବେଳେ ଦିହେଁ ତାଙ୍କ ଫେରିବା ଗାଡ଼ିକୁ ବୋମା ମାଡ଼ କଲେ କିନ୍ତୁ ସେହି ଗାଡ଼ିରେ କିସ୍ ଫୋର୍ଡ ନଥିଲେ। ଦୈବ ଯୋଗରେ ଜୀବନ ବଞ୍ଚିଗଲା ସିନା 'ଖୁଦିରାମ ଓ ପ୍ରଫୁଲ୍ଲ ଚାକି'ଙ୍କୁ ପୁଲିସ ଧରିନେଲା। ବିପ୍ଳବୀମାନଙ୍କୁ ଧରି ସେମାନଙ୍କୁ ଦଣ୍ଡିତ କରିବା ପାଇଁ ଜୋରସୋରରେ ତଦନ୍ତ ଓ ତନାଘନା ଆରମ୍ଭ କରିଦିଆଗଲା। ୧୯୦୮ ମଇ ପହିଲା ଦିନ ଅରବିନ୍ଦଙ୍କୁ ଗ୍ରେଷ୍ଟ୍ରିଟ୍‌ରୁ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ କେଗ୍ରାନଙ୍କ ଦ୍ୱାରା





ସକାଳୁ ସକାଳୁ ଗିରଫ କରି ଜେରା କରାଗଲା ଓ ୧୯୦୮ ମେ ୫ ତାରିଖରେ ଆଲିପୁର ଜେଲକୁ ପଠାଇ ଦିଆଗଲା । ବିଚାରାଧୀନ ବନ୍ଦୀ ଭାବରେ ଦେଶଦ୍ରୋହ ଅପରାଧରେ ମକଦ୍ଦମା ଚାଲିଲା । କଲିକତାର ବିଖ୍ୟାତ ଯୁବ ବାରିଷ୍ଟର ଚିତ୍ତରଂଜନ ଅରବିନ୍ଦଙ୍କ କେସ୍ ମାଗଣା ଲଢ଼ି ବର୍ଷକ ପରେ ଶ୍ରୀ ଅରବିନ୍ଦଙ୍କୁ ମକଦ୍ଦମାରୁ ଖଲାସ କରାଇଲେ । ଏହି ଦୁର୍ଦ୍ଦିନରେ ଚିତ୍ତରଂଜନ ବିପ୍ଳବୀମାନଙ୍କ ତରଫରୁ ବିନା ଅର୍ଥରେ କେସ୍ ଲଢ଼ି ବିଜୟ ହାସଲ କରିଥିବାରୁ ସେ 'ଦେଶବନ୍ଧୁ' ଭାବରେ ପରିଚିତ ହେଲେ ।

ଆଲିପୁର ଜେଲ୍‌ର ଏକ ୯ ଫୁଟ୍ ଲମ୍ବା ଓ ୫ ଫୁଟ୍ ଓସାରର ଏକ ନିବୁଜ କୋଠରୀ ଭିତରେ ଶ୍ରୀ ଅରବିନ୍ଦଙ୍କ ଭଳି ଜଣେ ରାଷ୍ଟ୍ରଭକ୍ତଙ୍କୁ କଟାଇବାକୁ ହେଲା । ଜେଲ୍ କୋଠରୀରେ ଝରକାଟିଏ ବି ନଥିଲା । ଗୋଟିଏ କୋଣରେ ଝାଡ଼ା ଯିବାକୁ ପଡୁଥିଲା ବେଳେ ସେଇ କୋଠରୀ ମଧ୍ୟରେ ହିଁ ସମସ୍ତ ସମୟ କଟାଇବାକୁ ପଡୁଥିଲା । ବର୍ଷା ହେଲେ ଦୁଆର ଫାଙ୍କରେ ପାଣିଆସି କୋଠରୀଟି ଭରି ହୋଇ ଯାଉଥିଲା ଓ ଅରବିନ୍ଦ ସେତେବେଳେ କୌଣସି ମତେ ଠିଆ ହୋଇ ସାରା ରାତ୍ରି ଉଜାଗରରେ ସମୟ କଟାଇବାକୁ ହେଉଥିଲା । ସ୍ୱରାଜ ଓ ମାତୃଭୂମିର ବନ୍ଦନା କରି କରି ଏକମାତ୍ର 'ଭଗବତଗୀତା'କୁ ଭରସା କରି ମହାପୁରୁଷ ଅରବିନ୍ଦ ଜେଲ୍‌ରେ ତପସ୍ୟା ଅଭ୍ୟାସ କରିବାକୁ ଲାଗିଲେ ଓ ଶେଷରେ ଜେଲ୍‌ରୁ ମୁକୁଳିବା ବେଳେ ଜଣେ ମହାଯୋଗୀ–ତପସ୍ୱୀ ଆଚରଣରେ ଦିକ୍ଷିତ ହୋଇ ମାତୃଭୂମିର ସେବାରେ ଅଧିକା ପ୍ରଯତ୍ନ ହେଲେ । ଜେଲ୍‌ରୁ ଖଲାସ ହେବାପରେ ଅରବିନ୍ଦଙ୍କ ମଧ୍ୟରେ ବିଶେଷ ଭାବରେ ଆଧାତ୍ମିକ ପରିବର୍ତ୍ତନ ଆସିଥିଲା ଓ ସେ ବିଭିନ୍ନ ପତ୍ରପତ୍ରିକାରେ ଜାତୀୟତାବାଦ୍ ଉପରେ ଲେଖାମାନ ଲେଖିବାରେ ଲାଗିଲେ । ବ୍ରିଟିଶ୍ ସରକାରଙ୍କ ବିରେନ୍ ଘୋଷ ଓ ଅରବିନ୍ଦଙ୍କ ଭଳି ନେତାମାନଙ୍କୁ ଭୟ କରି ସେମାନଙ୍କ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ନଜର ରଖିଥିଲେ । କେଇ ମାସପରେ ଶ୍ରୀ ଅରବିନ୍ଦ ସିଷ୍ଟର ନିବେଦିତାଙ୍କଠାରୁ ଜାଣିବାକୁ ପାଇଲେ ଯେ, ସରକାର ପୁଣି ତାଙ୍କୁ ଗିରଫ କରି ଜେଲ୍‌କୁ ପଠାଇବାର ଯୋଜନାରେ ଅଛନ୍ତି । ସମଗ୍ର ଭାରତରେ ବ୍ରିଟିଶ ସରକାରଙ୍କ ଶ୍ୱେନଦୃଷ୍ଟି ଛାଡି ଦେଉନାହିଁ । ସେ ଭାବିଲେ ବ୍ରିଟିଶ ଶାସନାଞ୍ଚଳ ବାହାରେ ରହି ହୁଏତ ମାତୃ ଭୂମିର ସ୍ୱତନ୍ତ୍ରତା ପାଇଁ କିଛି କରିହେବ । ତେଣୁ ଅରବିନ୍ଦ ଫରାସୀ ଶାସିତ ଚନ୍ଦନ ନଗର ଅଞ୍ଚଳକୁ ଅତି ଗୋପନରେ ନୌକାରେ ଆସି ମତିଲାଲ୍ ରାୟଙ୍କ ଆଶ୍ରୟରେ କିଛିଦିନ ରହିଲା ପରେ ୧୯୧୧ ଏପ୍ରିଲ ପହିଲାରେ ଦକ୍ଷିଣ ଭାରତର ଫରାସୀ ଶାସିତ ପଣ୍ଡିଚେରୀ ଅଧିକା ନିରାପଦ ମନେ କରି ବଙ୍ଗଳା ଛାଡି ତିନିଦିନର ଷ୍ଟିମର ଯାତ୍ରାରେ ରହି ଏପ୍ରିଲ ୪ ତାରିଖରେ ପଣ୍ଡିଚେରୀରେ ପହଞ୍ଚିଲେ । କ୍ରମଶଃ ଶ୍ରୀ ଅରବିନ୍ଦ ଭଗବତଗୀତାର ମାର୍ଗ ଦର୍ଶନରେ ଅନୁପ୍ରାଣିତ ହୋଇ ଗୋଟିଏ କୋଠରୀ ମଧ୍ୟରେ ରହି ଯୋଗସାଧନାରେ ସର୍ବଦା ଧ୍ୟାନସ୍ଥ ରହିଲେ ।

୧୯୨୬ ନଭେମ୍ବର ୨୪ରେ ସେ ବୁଦ୍ଧଙ୍କ ଭଳି ସିଦ୍ଧିପ୍ରାପ୍ତ ହେଲେ । ଶ୍ରୀ ଅରବିନ୍ଦଙ୍କ ଜେଲ୍ ଜୀବନ ଅତିବାହିତ କାଳରେ ବ୍ରିଟିଶ ସରକାର ତାଙ୍କୁ କେବଳ ଖଣ୍ଡିଏ ଭାଗବତ ଗୀତା ବହି ପଢ଼ିବା ପାଇଁ ଦେଇଥିଲେ । ଆଜି ଶ୍ରୀ ଅରବିନ୍ଦଙ୍କ ସେହି ଗୀତାଧ୍ୟୟନ, ଯୋଗାସନ ଓ ସାଧନା ତାଙ୍କୁ ହୁଏତ ସ୍ୱରାଜ ବିପ୍ଳବ ଦିଗରୁ ଘୂରାଇ ଆଣି ଏହି ଜଗତରେ 'ଆଧାତ୍ମିକ ବିପ୍ଳବ' ତଥା 'ଅତିମାନସ' ଶକ୍ତିର ଜାଗରଣ ଅଣାଇବାରେ ସକ୍ଷମ କରିଦେଇଛି । ପଣ୍ଡିଚେରୀର ଅରବିନ୍ଦଙ୍କ କୁଟିର ଖଣ୍ଡିକ ଆଶ୍ରମରେ ପରିଣତ ହୋଇଯାଇଛି । ସେଠାରେ ହଜାର ହଜାର ଆଶ୍ରମବାସୀ ଧ୍ୟାନ ମାର୍ଗରେ ପରିଚାଳିତ ହୋଇ ଶାନ୍ତ ସୁନ୍ଦର ଜୀବନ ଅତିବାହିତ କରୁଛନ୍ତି । ଜଣେ ସଂଭ୍ରାନ୍ତ ଫରାସୀ ମହିଳା ମେରୀ ରିଚାର୍ଡ ତାଙ୍କ ଦାର୍ଶନିକ ସ୍ୱାମୀ ପଲ ରିଚାର୍ଡଙ୍କ ସହ ଆସି ଶ୍ରୀ ଅରବିନ୍ଦଙ୍କ ଧ୍ୟାନ ସାଧନାରେ ଅନୁପ୍ରାଣିତ ହୋଇ ଆଶ୍ରମରେ ରହିବା ଆରମ୍ଭ କଲେ । ମେରୀ ରିଚାର୍ଡ ଆଶ୍ରମବାସୀଙ୍କ ପାଇଁ ହେଲେ 'ଶ୍ରୀମା' । ଫରାସୀ ଶାସନର ଅବସାନ ପରେ ପଣ୍ଡିଚେରୀ ଶ୍ରୀ ଅରବିନ୍ଦ ଆଶ୍ରମ ଓ ଶ୍ରୀମାଙ୍କ ମାତୃ ମନ୍ଦିର ପାଇଁ ବିଶ୍ୱ ବିଖ୍ୟାତ ହୋଇଛି । ୧୯୫୦ ନଭେମ୍ବର ୨୪ରେ ଭକ୍ତମାନଙ୍କୁ ଶେଷ ଦର୍ଶନ ଦେଇ ମହାଯୋଗୀ ସମାଧିସ୍ଥ ହୋଇ ପଡିଲେ କିନ୍ତୁ ସେହି ବର୍ଷ ଡିସେମ୍ବର ୫ ତାରିଖରେ ସେହି ମହାଯୋଗୀ, ଦେଶଭକ୍ତ ତପସ୍ୱୀଙ୍କ ମହାପ୍ରୟାଣ ହୋଇଥିଲା ।

---

ଅଧ୍ୟକ୍ଷ (ଅବସରପ୍ରାପ୍ତ), ସଂସ୍କୃତି ସଦନ,
ବୟାଳୀ (ମନ୍ତ୍ରିଡି), ଗଞ୍ଜାମ







# ଓଡ଼ିଶାର ଯୁଗପୁରୁଷ

**ଛନ୍ଦା ମିଶ୍ର**

ଭାରତ । ଭା–ଅର୍ଥ ଜ୍ଞାନ ବା ଆଲୋକ । ଜ୍ଞାନରେ ରତ ଏ ଭାରତବର୍ଷ । ମନୁଷ୍ୟ ସଭ୍ୟତାର ପ୍ରାରମ୍ଭରୁ ହିଁ ତୁଳସୀ ଦୁଇପତ୍ରରୁ ବାସିଲା ପରି ନିଜ ଜ୍ଞାନର ଆଲୋକରେ ସମଗ୍ର ବିଶ୍ୱକୁ ଆଲୋକିତ କରିଚାଲିଛି । ଏ ପବିତ୍ର ମାଟିର ବୀର ସନ୍ତାନଗଣ ନିଜ ଜ୍ଞାନ, ଗାରିମା ଓ ଦେଶପ୍ରେମ ପାଇଁ ଚୀର ବନ୍ଦନୀୟ ହୋଇ ରହିଛନ୍ତି । ଏହି ଭାରତବର୍ଷରେ ମା' ଓ ମାତୃଭୂମିକୁ ସ୍ୱର୍ଗଠାରୁ ବଡ଼ ବିବେଚିତ କରାଯାଏ । କେତେ ମହାନ ଏ ଦେଶ, ଯାହାର ସନ୍ତାନ, ସମଗ୍ର ବସୁଧାବାସୀଙ୍କୁ ନିଜ ବନ୍ଧୁ ପରିଜନ ବୋଲି ମନେକରେ । 'ବସୁଧୈବ କୁଟୁମ୍ବକମ୍' । କୁହାଯାଏ ସ୍ୱର୍ଗର ଦେବତାମାନେ ମଧ୍ୟ ଏଠି ମନୁଷ୍ୟ ରୂପ ଧରି ଜନ୍ମ ଗ୍ରହଣ କରିବା ପାଇଁ ଲାଳାୟିତ ରହନ୍ତି । ପ୍ରକୃତରେ ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଏହି ବିଶାଳ ଭୂଖଣ୍ଡକୁ ପ୍ରକୃତି ଅତ୍ୟନ୍ତ ଅକୃପଣ ରୂପେ ନିଜ ଆଶୀର୍ବାଦ ଦେଇ ଧନ୍ୟ କରିଛି ।

ଘଞ୍ଚ ବନାନୀ, ନଦନଦୀ, ସୁଉଚ୍ଚ ପର୍ବତ ଶ୍ରେଣୀ ତଥା ଏହାର ପରିବେଶ, ମନୁଷ୍ୟ ଓ ପଶୁପକ୍ଷୀଙ୍କ ପାଇଁ ବରଦାନ ସଦୃଶ ଅଟେ । ଏଠି ବିଭିନ୍ନ ଜାତି, ଧର୍ମ, ବିଭିନ୍ନ ଭାଷା ତଥା ଭିନ୍ନ ପରମ୍ପରାର ଲୋକେ ଏକତ୍ର ହୋଇ ଗୋଟିଏ ପରିବାରର ସଦସ୍ୟ ଭାବେ ଆଚରଣ କରନ୍ତି, ଏହାହିଁ ଭାରତବର୍ଷର ବିଶେଷତ୍ୱ । ବିଦେଶୀ ଆସିଛନ୍ତି ଓ ଯାଇଛନ୍ତି ବହୁତ ଚେଷ୍ଟା କରିଛନ୍ତି ଭାଇଚାରାର ଏ ଛନଛନିଆ ଡ଼ାଳଗୁଡ଼ିକୁ ଖଣ୍ଡ ଖଣ୍ଡ କରି କାଟିଦେବା ପାଇଁ କିନ୍ତୁ ସଫଳ ହୋଇ ପାରି ନାହାଁନ୍ତି । ଏହାର ଏକମାତ୍ର କାରଣ ହେଉଛି ଏଠି ବ୍ୟକ୍ତି ଓଡ଼ିଆ ହେଉ ଅବା ହେଉ ବଙ୍ଗାଳି, ହିନ୍ଦୁ ହେଉ କିମ୍ବା ମୁସଲମାନ ପ୍ରତ୍ୟେକଙ୍କର ପରିଚୟ ଗୋଟିଏ 'ମୁଁ ଭାରତୀୟ' । ଏହା କହି ସେ ଗର୍ବବୋଧ କରେ । ତେବେ ଆଜି ଯେଉଁ ସ୍ୱାଧୀନ ଭାରତରେ ଆମେ ଚଳପ୍ରଚଳ ହେଉଛେ, ତାକୁ ହାସଲ କରିବାକୁ ଦେଶପ୍ରେମୀମାନଙ୍କୁ ସ୍ୱଇଚ୍ଛାରେ ସ୍ୱାଧୀନତାର ଯଜ୍ଞାଗ୍ନିରେ ଝାସ ଦେବାକୁ ହୋଇଥିଲା । ଦେଶର ଏହି ସ୍ୱାଧୀନତା ସଂଗ୍ରାମ ପାଇଁ ଓଡ଼ିଶାର ଅବଦାନ ଅତୁଳନୀୟ । ଉତ୍କୃଷ୍ଟ କଳାର ଦେଶ ଉତ୍କଳ ନିଜର କଳା ଭାସ୍କର୍ଯ୍ୟ ଓ ବୀରତ୍ୱ ପାଇଁ ବିଶ୍ୱ ଦରବାରରେ ନିଜର ଟେକ ରଖି ପାରିଥିଲା । ଏକୁ ଆରେକ ବଳି ବୀର ସନ୍ତାନମାନଙ୍କୁ ଜନ୍ମ ଦେଇ ମାତୃତ୍ୱର ଗର୍ବରେ ଗରୀୟାନ ହୋଇଥିଲା ।

ଉତ୍କଳ ମାତାର ଯେଉଁ କେତେକ ବରପୁତ୍ର ଏହି ସଂଗ୍ରାମରେ ନିଜର ସର୍ବସ୍ୱ ବାଜି ଲଗାଇ ଦେଇଥିଲେ ତନ୍ମଧ୍ୟରୁ ବକ୍ସି ଜଗବନ୍ଧୁ ଅନ୍ୟତମ । ଖ୍ରୀଷ୍ଟାବ୍ଦ ୧୮୦୪ରେ ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରି ଇଂରେଜ ସରକାର ଶାସନକୁ ଅକ୍ତିଆର କରିନେଲେ । ସାଧାରଣ ଜନତାଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ ହୋଇଗଲା । ଏହି ଅନ୍ୟାୟ ଓ ଅତ୍ୟାଚାରକୁ ନିରବରେ ସହ୍ୟ କରି ନପାରି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ପାଇକ ଜାତି ଲଢ଼େଇ କରିବା ପାଇଁ ଦୃଢ଼ ସଂକଳ୍ପ ନେଲେ । ହଠାତ୍ ପାଇକ ବିଦ୍ରୋହ ହେବାରୁ ଇଂରେଜ କର୍ତ୍ତୃପକ୍ଷ ବିବ୍ରତ ହୋଇ ପଡ଼ିଲେ । ପାଇକମାନେ ବାଣପୁର ଓ ଖୋର୍ଦ୍ଧାରେ ଥିବା ସମସ୍ତ ସରକାରୀ ଦପ୍ତର ଭାଙ୍ଗି ଖଜଣାଖାନା ଲୁଟ୍ କରିନେଲେ । ଗଙ୍ଗପଡ଼ା, ବାଲକାଟି, ପିପିଲି ଇତ୍ୟାଦି ସ୍ଥାନମାନଙ୍କରେ ଇଂରେଜ ଓ ପାଇକମାନଙ୍କ ମଧ୍ୟରେ ବିଦ୍ରୋହ ହୋଇଥିଲା । ସେଠାରୁ ସେମାନେ ପୁରୀ ଅଭିମୁଖେ ଯାତ୍ରା କରିଥିଲେ ମଧ୍ୟ ଆଉ ଇଂରେଜ ସେମାନଙ୍କୁ ପ୍ରତିରୋଧ କରିପାରି ନଥିଲେ । ବକ୍ସି ଜଗବନ୍ଧୁ ନିଜ ଅନୁଚରମାନଙ୍କ ସହ ଘଞ୍ଚ ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରି ରହିଲେ । ତାଙ୍କ ପରିବାର ଜନଙ୍କୁ ଇଂରେଜମାନେ ବନ୍ଦୀ କରି ରଖିବା ସତ୍ତ୍ୱେ ସେ ଆତ୍ମ ସମର୍ପଣ



କଲେ ନାହିଁ । ହେଲେ ଇଂରେଜମାନଙ୍କ ତୀକ୍ଷ୍ଣ ଦୃଷ୍ଟିରୁ ବର୍ତ୍ତି ତାଙ୍କୁ କେହି ସାହାଯ୍ୟ ଯୋଗାଇ ପାରିଲେ ନାହିଁ । ଦିନକୁ ଦିନ ଅନୁଚରମାନଙ୍କ ଦୁର୍ଦ୍ଦଶା ବଢ଼ିବାରେ ଲାଗିଲା । ଏହା ଦେଖି ବକ୍ସି ଜଗବନ୍ଧୁ ସ୍ୱଇଚ୍ଛାରେ ନିଜ ଅନୁଚରମାନଙ୍କ ସହିତ ଆତ୍ମସମର୍ପଣ କଲେ । ତାଙ୍କୁ ଇଂରେଜ ସରକାର କଟକସ୍ଥିତ ବକ୍ସିବଜାରରେ ଗୃହବନ୍ଦୀ କରି ରଖିଲେ । ୧୮୨୯ ମସିହା ଜାନୁଆରୀ ୨୪ ତାରିଖରେ ତାଙ୍କ ମହାନ ଜୀବନର ଅବସାନ ଘଟିଲା ଓ ତାଙ୍କ ସହିତ ପାଇକ ବିଦ୍ରୋହର ତେଜୀଆନ ଅଗ୍ନିଶିଖା ନିର୍ବାପିତ ହେଲା ।

ଠିକ୍ ସେହି ସମୟରେ ଏହି ନିର୍ବାପିତ ଅଗ୍ନିଶିଖାକୁ ୧୮୨୭ ମସିହାରେ ପଶ୍ଚିମ ଓଡ଼ିଶାରେ ବୀର ସୁରେନ୍ଦ୍ର ସାଏ ପ୍ରଜ୍ୱଳିତ କରିଥିଲେ । ସମ୍ବଲପୁର ଭୂଖଣ୍ଡରୁ ବ୍ରିଟିଶ୍ ଶାସନ ଲୋପ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଏହି ଭାରତମାତାର ସୁଯୋଗ୍ୟ ଦାୟାଦ ୧୮୦୯ ମସିହା ଜାନୁଆରୀ ୨୩ ତାରିଖରେ ସମ୍ବଲପୁରର ଚୌହାନ ରାଜ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ୧୮୨୭ ମସିହାରେ ସମ୍ବଲପୁରର ରାଜା, ମହାରାଜା ସାଏ, ଅପୁତ୍ରିକ ହୋଇ ମୃତ୍ୟୁ ବରଣ କଲା ପରେ, ରାଜଗାଦି ପାଇଁ ଉପଯୁକ୍ତ ଉତ୍ତରାଧିକାରୀ ଥାଉ ଥାଉ ଇଂରେଜ ସରକାର ଜାଣିଶୁଣି ନିଜ ହାତମୁଠାରେ ଶାସନ କଳକୁ ରଖିବା ପାଇଁ ନିରୀହା ରାଣୀ ମୋହନ କୁମାରୀଙ୍କୁ ଶାସନ କାର୍ଯ୍ୟର ଗୁରୁଦାୟିତ୍ୱ ଲଦିଦେଲେ । ଯେ କି ଏ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ, ଫଳରେ ସମ୍ବଲପୁରରେ ବିଦ୍ରୋହର ବହ୍ନି ଜଳିବାକୁ ଲାଗିଲା । ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ତାଙ୍କ ଅନୁଚରମାନେ ଇଂରେଜ ସରକାରଙ୍କ ବିପକ୍ଷରେ ଯୁଦ୍ଧ କରିବାକୁ ଆରମ୍ଭ କଲେ । ଇଂରେଜମାନେ ବାଧ ହୋଇ ରାଣୀଙ୍କୁ ଗାଦିଚ୍ୟୁତ କରାଇ ଅଯୋଗ୍ୟ ନାରାୟଣ ସିଂହଙ୍କୁ ରାଜଗାଦି ପ୍ରଦାନ କଲେ । ଫଳରେ ବିଦ୍ରୋହ ପୁଣି ମୁଣ୍ଡ ଟେକିଲା । ୧୮୪୦ ମସିହାରେ ସୁରେନ୍ଦ୍ର ସାଏ ବନ୍ଦୀ ହୋଇ ଆଜୀବନ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହୋଇ ହଜାରୀବାଗ୍ ଜେଲ୍‌ରେ ରହିଲେ ।

୧୮୫୭ ମସିହାରେ ଭାରତର ସିପାହୀମାନେ ଇଂରେଜ ବିରୁଦ୍ଧରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । ଏହି ସିପାହୀମାନେ ବଳ ପ୍ରୟୋଗ ପୂର୍ବକ, ହଜାରୀବାଗ୍ ଜେଲ୍‌ରେ ପଶି ସୁରେନ୍ଦ୍ର ସାଏଙ୍କ ସମେତ୍ ୩୨ଜଣ ବନ୍ଦୀଙ୍କୁ ମୁକ୍ତ କରି ଦେଇଥିଲେ । ମୁକ୍ତି ପାଇ ସୁରେନ୍ଦ୍ର ସଙ୍ଗେ ସଙ୍ଗେ ସମ୍ବଲପୁର ଆସି ବିଦ୍ରୋହୀମାନଙ୍କୁ ଏକତ୍ରିତ କରି ପୁନର୍ବାର ନିଜର ସଂଗ୍ରାମ ପ୍ରାରମ୍ଭ କଲେ । ଦେବ୍ରୀଗଡ଼ ହେଲା ତାଙ୍କ ସଂଗ୍ରାମର କେନ୍ଦ୍ରସ୍ଥଳ । ଅତ୍ୟନ୍ତ କୌଶଳତା ପୂର୍ବକ ସେ ପ୍ରଥମେ ସମ୍ବଲପୁର ଅଞ୍ଚଳରେ ଥିବା ଇଂରେଜମାନଙ୍କ ସମସ୍ତ ବାହ୍ୟ ଯୋଗାଯୋଗ ବିଚ୍ଛିନ୍ନ କରିଦେଲେ । ବଡ଼ ବଡ଼ ପଥର ଖଣ୍ଡ ରଖି ରାସ୍ତା ଅବରୋଧ କରିବା ସହ ପାହାଡ଼ ଉପରେ ଥିବା ଶିଆଳୀ ଲତାରେ ବଡ଼ ବଡ଼ ପଥର ଖଣ୍ଡ ବାନ୍ଧି ରଖି ଆବଶ୍ୟକ ସ୍ଥଳେ ଲତାକୁ କାଟି ଦେଉଥିଲେ । ଏହି ପଥରମାନ ପଡ଼ି ଇଂରେଜମାନେ ଆଘାତ ପ୍ରାପ୍ତ ହେଉଥିଲେ । ଅନ୍ୟପକ୍ଷରେ ଇଂରେଜମାନଙ୍କ ଗୁଳିଗୋଳା, ଘଞ୍ଚ ଜଙ୍ଗଲରେ ଥିବା ଗଛମାନଙ୍କରେ ବାଜି ଲକ୍ଷ୍ୟଭ୍ରଷ୍ଟ ହେଉଥିଲା । ଇଂରେଜମାନଙ୍କ ଆଧୁନିକ ଅସ୍ତ୍ରଶସ୍ତ୍ର ସହିତ ମୁହାଁମୁହିଁ ଯୁଦ୍ଧ ବିଶେଷ ସଫଳତା ପାଇବ ନାହିଁ ଜାଣି, ସୁରେନ୍ଦ୍ର ଏହି ଗରିଲା ଯୁଦ୍ଧକୁ ଆପଣେଇ ନେଇ ଥିଲେ । ୧୮୬୧ ମସିହାରେ ମେଜର ଇମ୍ପେ, ସମ୍ବଲପୁରର ଡ଼େପୁଟୀ କମିଶନର ରୂପେ ନିଯୁକ୍ତି ପାଇ ପ୍ରଥମେ ସୁରେନ୍ଦ୍ରଙ୍କ ବିରୁଦ୍ଧରେ ଯୁଦ୍ଧ ବନ୍ଦ ଘୋଷଣା କଲେ । ଆତ୍ମ ସମର୍ପଣ କରୁଥିବା ବିଦ୍ରୋହୀମାନଙ୍କୁ କ୍ଷମା ଦେଇ ସେମାନଙ୍କ ବାଜ୍ୟାପ୍ତ ସମ୍ପତ୍ତି ଫେରାଇ ଦେଉଥିଲେ । ୧୮୬୨ ମସିହା ମେ ମାସ ୧୬ ତାରିଖ ଦିନ ରାତିରେ ଘୋର ଜଙ୍ଗଲ ମଧ୍ୟରେ ଇମ୍ପେ ସାହେବ୍‌ଙ୍କ ସହ ସୁରେନ୍ଦ୍ରଙ୍କର ସାକ୍ଷାତ୍ ହେଲା ଓ ସେ ଆତ୍ମସମର୍ପଣ କରିଥିଲେ । ମାତ୍ର ୧୮୬୩ ମସିହାରେ ଇମ୍ପେଙ୍କ ମୃତ୍ୟୁ ପରେ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଗଲା । ୧୮୬୪ ମସିହା ଜାନୁୟାରୀ ୨୩ ତାରିଖ ରାତ୍ରିରେ ସୁରେନ୍ଦ୍ର ପରିବାର ବର୍ଗଙ୍କ ସହିତ ଶୋଇଥିବା ସମୟରେ ସେମାନଙ୍କୁ ବନ୍ଦୀ କରି ସେହି ରାତ୍ରିରେ ରାୟପୁର ନିଆଗଲା । ପରେ ଆଜୀବନ ଦେଶାନ୍ତର ଦଣ୍ଡରେ ଦଣ୍ଡିତ କରି ୧୮୬୬ ମସିହାରେ ଅସୀରଗଡ଼ ଦୁର୍ଗକୁ ପଠାଇ ଦିଆଗଲା । ସେହି ଦୁର୍ଗରେ ୧୮୮୪ ମସିହା ଫେବୃଆରୀ ମାସ ୨୮ ତାରିଖରେ ବୀର ସୁରେନ୍ଦ୍ର ସାଏଙ୍କ ଜୀବନଦୀପ ଲିଭିଯାଇଥିଲା। ଫଳରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ବହ୍ନି ଧୀରେ ଧୀରେ ଲିଭିବାକୁ ବସିଲା। ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜନ୍ମ ଗ୍ରହଣ କଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ବରିଷ୍ଠ ଆଇନଜୀବୀ ଜାନକୀନାଥ ବୋଷଙ୍କ କୋଳମଣ୍ଡନ କରି ୧୮୯୭ ମସିହା ଜାନୁୟାରୀ ୨୩ ତାରିଖରେ କଟକ ସ୍ଥିତ ଓଡ଼ିଆ ବଜାରରେ। ବିଜ୍ଞତା ତଥା ସାହସିକତାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ସୁଭାଷ। ନିଜ ନୀତି, ଆତ୍ମବିଶ୍ୱାସ ଓ ଆଦର୍ଶରେ ଦୃଢ଼ ରହି ସେ ଆଇ.ସି.ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇ ମଧ୍ୟ ଇଂରେଜ ସରକାରଙ୍କ ଅଧୀନରେ ରହି କାର୍ଯ୍ୟ କରିବାକୁ ନାପସନ୍ଦ କରିଥିଲେ। ଦୁଃଖି ଦରିଦ୍ରଙ୍କ ସେବା କରି ସେ ପାଉଥିଲେ ଖୁବ୍ ଆତ୍ମସନ୍ତୋଷ ।





ପରାଧୀନ ଭାରତର ମୁକ୍ତି ନିମନ୍ତେ, ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସେ ଝାସ ଦେଲେ ସ୍ୱାଧୀନତା ସଂଗ୍ରାମରେ। ୧୯୨୪ ମସିହାରେ ସୁଭାଷ, କଲିକତା କର୍ପୋରେସନର ଏକ୍‌ଜିକ୍ୟୁଟିଭ ଭାବେ ନିର୍ବାଚିତ ହେଲେ। ସେହି ସମୟରେ ବ୍ରିଟିଶ୍ ସରକାର ଏକ ଅର୍ଡିନାନ୍‌ସ ଜାରି କରିଥିଲେ। ଏହି ଅର୍ଡିନାନ୍‌ସ ଅନୁଯାୟୀ ସରକାର ଯାହାକୁ ଚାହିଁବେ ଓ ଯେତେଦିନ ଚାହିଁବେ ଜେଲ୍‌ରେ ରଖିପାରିବେ। ଏହି ବ୍ୟବସ୍ଥା ବଳରେ ସୁଭାଷଙ୍କୁ ଗିରଫ୍ କରାଗଲା ଓ ମାଣ୍ଡାଲେ ଜେଲ୍‌କୁ ପଠାଇ ଦିଆଗଲା। ୧୯୨୭ରେ ସେଠାରୁ ମୁକ୍ତ ହୋଇ କଲିକତାର ମେୟର ଭାବେ ପୁଣି ନିର୍ବାଚିତ ହେଲେ। ସବୁବେଳେ କାରାଗାର ମଧ୍ୟରେ ରହି ସେ ଅସୁସ୍ଥ ହୋଇ ପଡୁଥିଲେ। ତେଣୁ ଚିକିତ୍ସା ପାଇଁ ସରକାରଙ୍କ ତରଫରୁ ତାଙ୍କୁ ଭିଏନା ପଠାଗଲା। ବିଦେଶରେ ଥିବା ସମୟରେ ହିଁ ୧୯୩୮ମସିହାରେ ଅନୁଷ୍ଠିତ ୫୧ତମ ଜାତୀୟ କଂଗ୍ରେସ ଅଧିବେଶନରେ ସେ ସଭାପତି ରୂପେ ମନୋନୀତ ହେଲେ। ତେବେ କେତେକ ପ୍ରମୁଖ ନେତାଙ୍କ ସହ ମତପାର୍ଥକ୍ୟ ଯୋଗୁଁ ସେ ସଭାପତି ପଦରୁ ଇସ୍ତଫା ଦେଲେ।

୧୯୪୦ ମସିହା ଜୁଲାଇ ମାସରେ ଇଂରେଜମାନେ ଏକ ମିଥ୍ୟା ଅଭିଯୋଗରେ ସୁଭାଷଙ୍କୁ ଗିରଫ କଲେ। ତେଣୁ ୨୯ ନଭେମ୍ବରରେ ସେ ଆମରଣ ଅନଶନ କଲେ। ଏଥିରେ ବ୍ୟତିବ୍ୟସ୍ତ ଇଂରେଜ ସରକାର ତାଙ୍କୁ ଜେଲ୍‌ରୁ ଖଲାସ କରି ଗୃହବନ୍ଦୀ ଭାବେ ରଖି ଜଗି ରହିଲେ।୧୯୪୧ ମସିହା ଜାନୁଆରୀ ୧୭ ତାରିଖରେ ସେ ବେଶ ବଦଳାଇ ମସ୍କୋ ଚାଲି ଯାଇଥିଲେ। ଏହାପରେ ବର୍ଲିନ୍‌ରେ ସେ ଆଜାଦ୍‌ହିନ୍ଦ ଫୌଜ ଗଠନ କଲେ। ୧୯୪୩ ମସିହା ଜୁଲାଇ ୫ ତାରିଖରେ ସିଙ୍ଗାପୁର ଟାଉନ୍ ହଲଠାରେ ଆଜାଦ୍‌ହିନ୍ଦ ଫୌଜର ଏକ ବିରାଟ ପ୍ୟାରେଡ୍ ଅନୁଷ୍ଠିତ ହେଲା। ସେଠାରେ ସୁଭାଷ ସ୍ଥାପନ କଲେ ଅସ୍ଥାୟୀ ଆଜାଦ୍‌ହିନ୍ଦ ସରକାର। ୧୯୪୪ ମସିହା ସୁଭାଷଙ୍କ ଆଜାଦ୍‌ହିନ୍ଦ ଫୌଜ ଭାରତ ମାଟିରେ ପଦାର୍ପଣ କଲା। ୧୫.୦୮.୧୯୪୫ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନର ଆତ୍ମସମର୍ପଣ ଓ ବର୍ମାରେ ପ୍ରକୃତିର ତାଣ୍ଡବଲୀଳା, ଆଜାଦହିନ୍ଦ ଫୌଜକୁ ବିପର୍ଯ୍ୟୟମୁଖୀ କରିଦେଇଥିଲା । ଅଗଷ୍ଟ ୨୦ର ତାରିଖ ଦିନ ସୁଭାଷ ସିଙ୍ଗାପୁରରୁ ଟୋକିଓ ଯାଉଥିଲା ବେଳେ ବିମାନଟି ଦୁର୍ଘଟଣାଗ୍ରସ୍ତ ହୋଇଥିଲା । ମାତ୍ର ଆଜିବି ସୁଭାଷଙ୍କ ମୃତ୍ୟୁ ସନ୍ଦେହ ଘେରରେ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ବୀର ସୁରେନ୍ଦ୍ର ସାଏ ଓ ବକ୍ସି ଜଗବନ୍ଧୁ ଏ ତିନିହେଁ ଥିଲେ ବିଦ୍ରୋହର କର୍ଣ୍ଣଧାର। ସମାଜ ସଂସ୍କାରକ ଓ ଦୟାର ଅବତାର ଏବଂ ଜଣେ ଜଣେ ବିପ୍ଳବୀ ଯୁଗପୁରୁଷ। ଓଡ଼ିଆ ଜାତିର ଇତିହାସରେ ଏହି ଜାତୀୟ ବୀରମାନଙ୍କ ଧୈର୍ଯ୍ୟ, ସାହସ, ଦୃଢ଼ ନେତୃତ୍ୱ ଓ ମନୋବଳ ତଥା ଶୃଙ୍ଖଳା, ନୈତିକତା ଓ ମହତ୍ ଆଦର୍ଶ ଯୁଗେ ଯୁଗେ ଓଡ଼ିଆ ଜାତି ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିବ।

୩ଆର୍/ଭିଆଇ, ବିଜେବି ନଗର
ଭୁବନେଶ୍ୱର









# ପ୍ରକୃତିର ଉପାସକ ଭୂୟାଁ ଜନଜାତି

**ଜୟଶଙ୍କର ନାୟକ**

ଆମ ରାଜ୍ୟରେ ସାଧାରଣତଃ ୬୨ ପ୍ରକାର ଆଦିବାସୀ ବସବାସ କରନ୍ତି । ସେଥିମଧ୍ୟରୁ ଭୂୟାଁ ଆଦିବାସୀ ଅନ୍ୟତମ । ଏହି ଭୂୟାଁ ଆଦିବାସୀମାନେ ହେଉଛନ୍ତି ପ୍ରକୃତିର ଉପାସକ । ସେଥିପାଇଁ ସେମାନେ ନିଜର ଜନ୍ମଭୂମି ଓ ପ୍ରକୃତିକୁ ମା'ପରି ମନେ କରନ୍ତି । ଆନନ୍ଦର ସମୟ ହେଉ ବା ଦୁଃଖର ମୁହୂର୍ତ୍ତ ସବୁ ସମୟରେ ପ୍ରକୃତିଠାରୁ ପ୍ରେରଣା ନେଇ ଚିତ୍ର ଆଙ୍କନ୍ତି, ନାଚନ୍ତି, ଗୀତ ଗାଆନ୍ତି ତଥା ଆତ୍ମବିଭୋର ହୋଇ ସଙ୍ଗୀତର ତାଳେ ତାଳେ ନାଚି ଉଠନ୍ତି । ଭୂୟାଁ ଆଦିବାସୀମାନେ ସାଧାରଣ ଲେଖକ ବା କବିଟିଏ ପରି ପ୍ରକୃତିର କାବ୍ୟକୁ ବିଶ୍ଳେଷଣ କରି ଜାଣେ ନାହିଁ । ପ୍ରକୃତି ବିଷୟରେ ପୃଷ୍ଠା ପୃଷ୍ଠା ଲେଖି ନିଜର ଅହଂକୁ ତୁଷ୍ଟ କରିପାରେ ନାହିଁ । ଭୂୟାଁ ଆଦିବାସୀ ଜାଣେ ପ୍ରକୃତିକୁ ଭଲ ପାଇବା, ତା'ଭାଷାକୁ ବୁଝିବା । ନିଜର ଆବଶ୍ୟକତା ମେଣ୍ଟାଇବା, ତା' ଉପରେ ନିର୍ଭର କରିବା ଏବଂ ତା'ଠାରୁ ପ୍ରେରଣା ପାଇ ନିଜର ସଂସ୍କୃତିକୁ ସମୃଦ୍ଧ କରିବା । ଭୂୟାଁ ଆଦିବାସୀମାନେ ପ୍ରକୃତି ଦ୍ୱାରା ପ୍ରେରିତ ହୋଇ ନୃତ୍ୟ ଚିତ୍ରକଳା ସଙ୍ଗୀତର ସଂରଚନା କରିଥାନ୍ତି ।

ଆଦିମ ମଣିଷ ସୃଜନଶୀଳତାର ପରିପ୍ରକାଶ କରୁଥିଲା ପଥରରେ । ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଅଣ ଆଦିବାସୀମାନେ ଗୋଷ୍ଠୀଗତ ଅନ୍ୟ ସଭ୍ୟତାକୁ ଅନୁକରଣ କଲା ଏବଂ ବିଭିନ୍ନ ତଥ୍ୟ ଆହରଣ କରି ନିଜ ରୁଚିରେ ପରିବର୍ତ୍ତନ ଆଣିଲା । ଏହି ସବୁ ସମ୍ଭବ ହେଲା ଆଧୁନିକ ଯୋଗାଯୋଗ ବ୍ୟବସ୍ଥା ଦ୍ୱାରା । କିନ୍ତୁ ଭୂୟାଁ ଆଦିବାସୀ କ୍ଷେତ୍ରରେ ଯୋଗାଯୋଗ ବ୍ୟବସ୍ଥାର ଅଭାବ ସେମାନଙ୍କୁ ଅନ୍ୟ ସଂସ୍କୃତି ସହିତ ତଥ୍ୟ ଆଦାନ ପ୍ରଦାନରେ ବାଧା ସୃଷ୍ଟି କଲା । ତେଣୁ ଜଙ୍ଗଲ ଘେରା ପରିବେଶ ମଧ୍ୟରେ ଚିତ୍ରକଳା, ସଙ୍ଗୀତ, ନୃତ୍ୟ ଓ ବେଶ ପୋଷାକ ପ୍ରାକୃତିକ ରୂପରେ ସୁରକ୍ଷିତ ରହି ପାରିଲା । ପ୍ରକୃତି ଓ ଭୂୟାଁ ଆଦିବାସୀ ପରସ୍ପରର ପରିପୂରକ । ଜଣେ ଆଉ ଜଣଙ୍କ ବ୍ୟତୀତ ସତ୍ତା ହରାଇ ବସେ । ଆଦିବାସୀ ରାତ୍ରି ସମୟରେ ବିନା ଲଣ୍ଠନ, ଟର୍ଚ୍ଚ, ଦୀପ, ଆଲୁଅରେ ଜଙ୍ଗଲ ଭିତରେ ମାଇଲ ମାଇଲ ରାସ୍ତା ଅତିକ୍ରମ କରିପାରନ୍ତି । ସାଧାରଣ ଲୋକଙ୍କୁ ପାହାଡ଼ ଚଢ଼ିବା ପାଇଁ ଅନେକ ଯନ୍ତ୍ରପାତି ତଥା ମାସ ମାସ ପ୍ରଶିକ୍ଷଣର ଆବଶ୍ୟକତା ପଡ଼େ । କିନ୍ତୁ ଭୂୟାଁ ଆଦିବାସୀ ଗୋଷ୍ଠୀର ଛୋଟ ପିଲାଟିଏ ମଧ୍ୟ ଅତି କମ୍ ସମୟରେ ପାହାଡ଼ ଶିଖରରେ ପହଞ୍ଚି ପାରେ । ସେମାନେ ପରମ୍ପରାକ୍ରମେ ଜଙ୍ଗଲ ଭିତରେ ଅନେକ ଔଷଧ ଗଛ ଚିହ୍ନି ପାରନ୍ତି । ସବୁ ପ୍ରକାର ରୋଗ ପାଇଁ ସେମାନେ ଚେରମୂଳ ଦ୍ୱାରା ଚିକିତ୍ସା ପଦ୍ଧତି ଜାଣନ୍ତି ।

ଏମାନେ ଆଦିବାସୀ ସଂପ୍ରଦାୟ ହେଲେ ମଧ୍ୟ ହିନ୍ଦୁମାନଙ୍କ ଭଳି ବିଭିନ୍ନ ପର୍ବପର୍ବାଣି ପାଳନ କରନ୍ତି । ଏମାନଙ୍କ ଭାଷା ସ୍ୱତନ୍ତ୍ର ନୁହେଁ । ଭୂୟାଁମାନେ ଓଡ଼ିଆ ଭାଷାରେ କଥାବାର୍ତ୍ତା କରନ୍ତି । ଉଚ୍ଚାରଣ ଦୋଷରୁ ଓଡ଼ିଆ ଭାଷା କହିବା ସମୟରେ ତାହା ଓଡ଼ିଆ ଭାଷାର ଅନ୍ତର୍ଗତ ବୋଲି ଜଣାପଡ଼େ ନାହିଁ । ଭୂୟାଁମାନେ ଗ୍ରାମଦେବୀ ନିକଟରେ ପୂର୍ବରୁ କୁକୁଡ଼ା, ଛେଳି ବଳି ଦେଉଥିଲେ । ଏମାନେ ମୁଖ୍ୟତଃ ପ୍ରକୃତି ଉପାସକ ଥିବାରୁ ପୃଥିବୀକୁ ମାତା ରୂପେ ଆରାଧନା କରନ୍ତି । ପରେ ଶସ୍ୟ ଦେବତାଙ୍କ ଉପାସନା କରନ୍ତି । ବଡ଼ ବଡ଼ ଶାଳଗଛ ତଳେ ପଥରଖଣ୍ଡ କିମ୍ବା କାଠଖଣ୍ଡ ରଖି ସେଥିରେ ସିନ୍ଦୂର ଲେପି ସେମାନଙ୍କୁ ଦେବତା ରୂପେ ପୂଜା କରନ୍ତି । ସେମାନଙ୍କର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା ଦୁର୍ଗା । ଏମାନେ ବଣଦେବୀ ଠାକୁରାଣୀ ତଥା ଧର୍ମ ଦେବତା, ସୂର୍ଯ୍ୟ ଦେବତା ଓ ଧରଣୀ ମାତାଙ୍କୁ ପୂଜା କରନ୍ତି । ପରେ ଏମାନେ ଶକ୍ତି ଉପାସକ ତଥା ଶାକ୍ତ ଥିଲେ । ଆଦି ଯୁଗରେ ଏମାନେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ ଏବଂ ପରେ ଶକ୍ତି ଉପାସକ ହେଲେ । ଭୂୟାଁମାନେ ଗ୍ରାମ ନିକଟସ୍ଥ ପାହାଡ଼କୁ ସାଧାରଣତଃ ପୂଜା କରିଥାନ୍ତି । କୁକୁଡ଼ା ଓ





ଅରୁଆ ଚାଉଳ ପ୍ରଭୃତି ଦେଇ ପୂଜା କରିଥାନ୍ତି। ପ୍ରଥମେ ପୃଥିବୀମାତା, ଧର୍ମଦେବତା, ସୂର୍ଯ୍ୟଦେବତା ଓ ଧରତ୍ରୀ ମାତାଙ୍କୁ ପୂଜା କରନ୍ତି। ଶସ୍ୟ ଦେବତା, ଗ୍ରାମ ଦେବତା, ଜଳଦେବତା, ଅରଣ୍ୟ ଦେବତା, ବାୟୁ ଦେବତା, ବୃଷ୍ଟି ଦେବତା ଓ ପାରିଧି ଦେବତା ପ୍ରଭୃତିକୁ ପୂଜା କରନ୍ତି। ସଭ୍ୟତାର ବିକାଶ ସହିତ ଭୂୟାଁମାନଙ୍କ ଆଚାର ବ୍ୟବହାରରେ ବହୁ ପରିବର୍ତ୍ତନ ଘଟିଛି। ସମୟର ଗତିଚକ୍ର ପରିବର୍ତ୍ତନ ସହିତ ଭୂୟାଁ ଆଦିବାସୀମାନେ ସଭ୍ୟ ସମାଜର ଅଂଶବିଶେଷ ହୋଇ ପଡ଼ିଲେଣି। ମାତୃଭୂମିର ରକ୍ଷା ପାଇଁ ଏମାନେ ପ୍ରାଣପାତ କରିବାକୁ ମଧ୍ୟ ପଛାନ୍ତି ନାହିଁ। ଅନ୍ୟାୟ ବିରୋଧରେ ସଂଗ୍ରାମ ପାଇଁ ଏମାନେ ସଦା ତତ୍ପର ହୋଇ ବାହାରନ୍ତି।

ଭୂୟାଁମାନେ ଆଦିବାସୀ ଶ୍ରେଣୀଭୁକ୍ତ ହେଲେ ମଧ୍ୟ ଚାଷ ହେଉଛି ଏମାନଙ୍କର ମୁଖ୍ୟ କାର୍ଯ୍ୟ । ଧାନ, ଗହମ, ବାଜରା, ମକା, କାକୁଡ଼ି ଇତ୍ୟାଦି ଚାଷ କରିବା ସଙ୍ଗେ ସଙ୍ଗେ ଜଙ୍ଗଲ ଜାତ ଦ୍ରବ୍ୟ ପୋଡୁଚାଷ ମଧ୍ୟ କରିଥାନ୍ତି । ଅରଣ୍ୟଜାତ ଫଳମୂଳ ସଂଗ୍ରହ କରି ନିଜର ଆହାର ରୂପେ ବ୍ୟବହାର କରନ୍ତି। ପ୍ରାୟ ପ୍ରତି କୋଡ଼ିଏ ବର୍ଷରେ ଚାଷ ଉଦ୍ଦେଶ୍ୟରେ ଭୂୟାଁମାନେ ନିଜର ବସତି ପରିବର୍ତ୍ତନ କରୁଥିଲେ ଏବଂ ଏମାନେ ଯାଯାବର କୃଷକ ଥିଲେ। ଏବେ ଅବଶ୍ୟ ଭୂୟାଁମାନେ ସ୍ଥାୟୀଭାବେ ଗୋଟିଏ ସ୍ଥାନରେ ରହିବାକୁ ପସନ୍ଦ କରୁଛନ୍ତି। ଭୂୟାଁମାନେ ପୂର୍ବରୁ ଭ୍ରମଣଶୀଳ ଜାତି ଥିଲେ। ତେଣୁ ଆତ୍ମ ରକ୍ଷା ପାଇଁ ସେମାନେ ମୁଖ୍ୟ ଧନୁ, ତୀର ଓ ଟାଙ୍ଗିଆ ବ୍ୟବହାର କରୁଥିଲେ।

ଭାରତର ବିଭିନ୍ନ ପ୍ରାନ୍ତରେ ଥିବା ଭୂୟାଁ ଆଦିବାସୀମାନଙ୍କର ଶକ୍ତି ଉପାସନା ବହୁ ପ୍ରାଚୀନ । ପ୍ରକୃତିର ଉପାସନା ପାଇଁ ଆରମ୍ଭ ହୋଇଥିବା ଏହି ରୀତି ପରବର୍ତ୍ତୀ କାଳରେ ଶକ୍ତି ଉପାସନାରେ ପରିଣତ ହୋଇଥିଲା। ପ୍ରକୃତିର ଆରାଧନା ନିମନ୍ତେ ଭୂୟାଁ ଆଦିବାସୀମାନେ ବୃକ୍ଷ, ପାହାଡ଼ ଓ ପଶୁଙ୍କୁ ମଧ୍ୟ ଉପାସନା କରିଥାନ୍ତି। ଇତିହାସର ଅନୁଶୀଳନରୁ ଜଣାପଡ଼େ, ଦେବୀ ଉପାସକ ଶାକ୍ତଗଣ ଦେବୀଙ୍କର ନାନାବିଧ ମୂର୍ତ୍ତି ନିର୍ମାଣ କରି ପୂଜାର୍ଚ୍ଚନା କରୁଥିଲେ। ମୂର୍ତ୍ତି ପୂଜାର ପ୍ରଥା ନ ଥିଲେ ମଧ୍ୟ ଶିଳାକୁ ଶକ୍ତିର ରୂପ ଭାବେ ଉପାସନା କରାଯାଇଥାଏ। ଭାରତର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବୃକ୍ଷକୁ ଶକ୍ତି ରୂପେ ଉପାସନା କରାଯାଏ। ଏଥିନିମନ୍ତେ ସାହାଡ଼ା ଗଛକୁ ମଧ୍ୟ ବଛାଯାଏ। ଏହି ପ୍ରଥା ମଧ୍ୟଯୁଗରୁ ଆରମ୍ଭ ହୋଇଥିବାର ଅନୁମାନ କରାଯାଏ। ଗୟା ଜିଲ୍ଲାର ନାଗାର୍ଜୁନ ପର୍ବତ ଗୁହାରେ ଥିବା ଶିଳାଲେଖରୁ ଏହା ଜଣାପଡ଼େ। ଶକ୍ତି ବା ମାତୃକା ପୂଜକ ଗୋଷ୍ଠୀର ସୁସ୍ପଷ୍ଟ ଉଲ୍ଲେଖ ବରାହ ମିହିରଙ୍କର ବୃହତ୍ ସଂହିତା ଗ୍ରନ୍ଥରୁ ମିଳିଥାଏ। ପ୍ରକୃତି କୋଳରେ ତାର କୌଣସି ଅଭାବ ରହେ ନାହିଁ। ଗୋଟିଏ କୁଡ଼ିଆ ଘର, କିଛି ବାସନକୁସନ, କିଛି ଲୁଗାପଟା ତାଙ୍କ ସଂପତ୍ତି। ସୀମିତ ସମ୍ବଳ ମଧ୍ୟରେ ସେମାନେ ଜୀବିକା ନିର୍ବାହ କରିଥାନ୍ତି । କାରଣ ଜୀବିକା, ମନୋରଞ୍ଜନ, ବିଶ୍ୱାସ ସର୍ବୋପରି ବଞ୍ଚିବାର ଉତ୍ସାହ ସେ ପାଏ ପ୍ରକୃତିରୁ। ତେଣୁ ପ୍ରକୃତି ହିଁ ଭୂୟାଁ ଆଦିବାସୀ (ଜନଜାତି)ର ସବୁକିଛି। ତେଣୁ ଭୂୟାଁ ଆଦିବାସୀମାନଙ୍କର ବୈଚିତ୍ର୍ୟମୟ ଜୀବନଯାପନ ଅନୁଧ୍ୟାନ କରିବା ଯେପରି ଆନନ୍ଦ ଦାୟକ, ସେହିପରି ମହତ୍ୱପୂର୍ଣ୍ଣ, ଏଥିରେ କୌଣସି ସନ୍ଦେହ ନାହିଁ ।

ଏଚ.ଆଇ.ଜି– ୯୧, ଫେଜ୍ –୧
କାନନ ବିହାର, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର–୩୧







# ସ୍ୱାଭିମାନୀ ଓଡ଼ିଆ ଓ କଟକ ବେତାର କେନ୍ଦ୍ର

ଡକ୍ଟର କିଶୋର ମହାନ୍ତି

ଭାରତୀୟ ଆକାଶବାଣୀର ବିକାଶ କ୍ଷେତ୍ରରେ ଯେଉଁ କେତୋଟି ବେତାର କେନ୍ଦ୍ର ଏଯାବତ୍ ନିଜସ୍ୱ ଶୈଳୀରେ ବିଭିନ୍ନ ଶ୍ରେଣୀର ଶ୍ରୋତାମାନଙ୍କର ମନୋରଂଜନ ନିମନ୍ତେ କାର୍ଯ୍ୟକ୍ରମ ପ୍ରଚାର କରି ବେଶ୍ ସୁନାମ ତଥା ଶ୍ରଦ୍ଧାଲାଭ କରିଛନ୍ତି, ସେଥି ମଧ୍ୟରୁ ଆକାଶବାଣୀ, କଟକର ସ୍ଥାନ ବହୁ ଉଚ୍ଚରେ । ଆକାଶବାଣୀର ବିକାଶ ଧାରାରେ ସାମିଲ ହେବା ପାଇଁ ଆକାଶବାଣୀ କଟକକୁ ବେଶ୍ କିଛି ସମୟ ଅତିବାହିତ କରିବାକୁ ପଡିଥିଲେ ହେଁ ଆକାଶବାଣୀର ଭିତ୍ତିଭୂମି ସମଗ୍ର ଭାରତରେ ପ୍ରାୟତଃ ୧୯୨୪ ମସିହା ମେ ମାସ ୧୬ ତାରିଖରେ କେତେଜଣ ସୌଖୀନ୍ ଉତ୍ସାହୀ ବ୍ୟକ୍ତିଙ୍କ ଦ୍ୱାରା ମାଡ୍ରାସ୍‌ରେ ପ୍ରତିଷ୍ଠା ହୁଏ ମାଡ୍ରାସ ପ୍ରେସିଡେନ୍ସି ବେତାର କ୍ଲବ ନାମରେ । ତତ୍‌ପରେ ୧୯୨୭ ମସିହା ଜୁଲାଇ ମାସ ୨୩ ତାରିଖରେ ଭାରତୀୟ ପ୍ରଚାର ସଂସ୍ଥା ଦ୍ୱାରା ପ୍ରଥମ ବେତାର କେନ୍ଦ୍ର ଉଦ୍‌ଘାଟିତ ହୁଏ ତଦାନୀନ୍ତନ ବଡଲାଟ୍ ଲର୍ଡ ଇରଉଇନଙ୍କ ଦ୍ୱାରା । ବମ୍ବେଠାରେ ପ୍ରତିଷ୍ଠିତ ଏହି ବେତାର କେନ୍ଦ୍ର ପ୍ରତିଷ୍ଠା ପୂର୍ବରୁ ଏହିପରି ଛୋଟ ଛୋଟ ଅନୁଷ୍ଠାନ ମାଧ୍ୟମରେ କୌଣସି ନା କୌଣସି ସ୍ଥାନରେ ବେତାର ପ୍ରଚାର କାର୍ଯ୍ୟକ୍ରମ ପ୍ରଚାର ହେଉଥିଲା । କିନ୍ତୁ ସେସବୁ ତିଷ୍ଠି ପାରି ନଥିଲା । ଏହାପରେ ୧୯୨୭ ରୁ ୧୯୩୯ ମଧ୍ୟରେ ବମ୍ବେ ଓ କଲିକତାରେ ବେତାର କେନ୍ଦ୍ର ପ୍ରତିଷ୍ଠା ହେବା ଫଳରେ ବେତାର ଶ୍ରୋତାମାନଙ୍କର ପ୍ରିୟ ଭାଜନ ହେବାରେ ଲାଗିଲା । କଲିକତାରେ ୧୯୨୭ ମସିହା ଅଗଷ୍ଟ ମାସ ୨୬ ତାରିଖରେ ବେତାର କେନ୍ଦ୍ର ପ୍ରତିଷ୍ଠା ହେଲା । ଏସବୁ କେନ୍ଦ୍ର ନୂତନ ଭାବରେ ପ୍ରତିଷ୍ଠା ହେଲା ସତ୍ୟ, ହେଲେ ଏହାର ଅର୍ଥ ବ୍ୟବସ୍ଥା ତଥା ପରିଚାଳନା କ୍ଷେତ୍ରରେ କେତେକ ଅବ୍ୟବସ୍ଥା ପରିଲକ୍ଷିତ ହେଲା, ଯଦ୍ୱାରା ୧୯୩୫ ମସିହା ମାର୍ଚ୍ଚ ମାସରେ ଅର୍ଥ ସଦସ୍ୟ ସାର୍ ଜେମ୍‌ସ ଜୀଗ୍ ଭାରତୀୟ ବେତାର ସଂସ୍ଥାର ଉନ୍ନତି କଳ୍ପେ ୨୦ ଲକ୍ଷ ଟଙ୍କା ଅନୁମୋଦନ କଲେ । ୧୯୩୫ ମସିହାରେ ଲିଓନେଲ୍ ଫିଲ୍‌ଡେନ୍ ବିଲାତରୁ ଆସି ଭାରତୀୟ ପ୍ରଚାର ସଂସ୍ଥାର ନୂଆ ପରିଚାଳକ ଭାବେ ଯୋଗ ଦେଲେ । ବମ୍ବେ ଓ କଲିକତାରେ ପୂର୍ବରୁ ବେତାର କେନ୍ଦ୍ର ପ୍ରତିଷ୍ଠା ଲାଭ କରିଥିଲେ ହେଁ ୧୯୩୬ ମସିହା ଜାନୁୟାରୀ ପହିଲାରୁ ଦିଲ୍ଲୀ ବେତାର କେନ୍ଦ୍ର କାର୍ଯ୍ୟକାରୀ ହେଲା । ଏହି କେନ୍ଦ୍ରର ସୁପରିଚାଳନା ନିମନ୍ତେ ସରକାରଙ୍କ ଆମନ୍ତ୍ରଣକ୍ରମେ ବିଲାତ ବେତାର ସଂସ୍ଥାର ଗବେଷଣା ଓ ଅନୁସଂଧାନ ବିଭାଗର ତତ୍ତ୍ୱାବଧାରକ ଏଚ୍‌ଏଲ୍ କିର୍କେ ଭାରତକୁ ଆସି ବେତାର ସଂସ୍ଥାର ବିକାଶ ନିମନ୍ତେ ଆପ୍ରାଣ ଉଦ୍ୟମ କଲେ । କିର୍କେ ସାହେବ ଭାରତ ଆସିବା ପରେ ଲକ୍ଷ୍ନୌ, ଏହ୍ଲାବାଦ, ବନାରସ, କଲିକତା, ନାଗପୁର, ହାଇଦ୍ରାବାଦ, ବେଜୱାଡା, ଏଲୋରା, ରାଜମହେନ୍ଦ୍ରୀ, ମାଡ୍ରାସ, ମଦୁରା, ତ୍ରିଚିନ୍ନାପଲ୍ଲୀ, ବାଙ୍ଗାଲୋର, ବମ୍ବେ, ବରୋଦା, ଅହମ୍ମଦାବାଦ, ପେଶୱାର ଓ ଲାହୋର ଆଦି ଅଞ୍ଚଳ ପରିଦର୍ଶନ କରି ବିଶିଷ୍ଟ ବ୍ୟକ୍ତିଙ୍କ ସହ ମିଶି ୧୯୩୬ ମସିହାରେ ଏକ ବିବରଣୀ ପ୍ରଦାନ କଲେ ଭାରତ ସରକାରଙ୍କୁ । ଅଧିକ ଆର୍ଥିକ ସାହାଯ୍ୟ ଦେବାପାଇଁ ପରାମର୍ଶ ମଧ୍ୟ ଦେଇଥିଲେ । ଏହାପରେ ଭାରତୀୟ ପ୍ରଚାର ସଂସ୍ଥାର ବିକାଶ କଳ୍ପେ ବିଲାତ ପ୍ରଚାର ସଂସ୍ଥାର ମୁଖ୍ୟ ଯନ୍ତ୍ରୀ ସି. ଡବ୍ଲ୍ୟୁ ଗୋଏଡର ସେହି ବର୍ଷ ଅଗଷ୍ଟ ୧୪ ତାରିଖ ଦିନ ବିଲାତରୁ ବାହାରି ଭାରତରେ ପହଞ୍ଚିବା ପରେ କିର୍କେ ସାହେବଙ୍କ ମତାମତକୁ ପରୀକ୍ଷା ନିରୀକ୍ଷା କରି ସେଥିରେ ନିଜର ମତାମତ ଦେଇ ବେତାର ସଂସ୍ଥାକୁ ଅଧିକ ସକ୍ରିୟ କରିବା ପାଇଁ ଅଧିକ ଧ୍ୟାନ ଦେବା ଉଚିତ ବୋଲି ଦୃଢ଼ ଦାବି ଜଣାଇଲେ । ଭାରତୀୟ ଆକାଶବାଣୀର ବିକାଶ କ୍ଷେତ୍ରରେ ସର୍ବଦା ଇଂରେଜମାନଙ୍କର ଅବଦାନକୁ ଅସ୍ୱୀକାର କରିହେବ ନାହିଁ । କିର୍କେ ସାହେବ, ଫିଲଡେନ୍ ତଥା ସି.ଡବ୍ଲ୍ୟୁ ଗୋଏଡରଙ୍କ ଭୂମିକା ଏ ଦିଗରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ।





ଭାରତୀୟ ଆକାଶବାଣୀର ବିକାଶ କ୍ଷେତ୍ରରେ ଅନେକ ଉତ୍‌ଥାନ ପତନ ତଥା ପରିବର୍ତ୍ତନ ମଧ୍ୟରେ ଗତି କରି ଆସିଥିବା ବେତାର କେନ୍ଦ୍ରଗୁଡ଼ିକ ସକ୍ରିୟ ହୋଇ ଉଠିଥିଲେ ଏବଂ ନିଜର ଭାଷା ଓ ସଂସ୍କୃତିର ପରିପ୍ରଚାର ନିମନ୍ତେ ବେତାର ଯେ ଏକ ଲୋକପ୍ରିୟ ଗଣମାଧ୍ୟମ, ଏହା ଭାରତୀୟମାନେ ଆସ୍ତେ ଆସ୍ତେ ବୁଝିବାକୁ ଲାଗିଲେ । ଓଡ଼ିଶାର ଅଗଣିତ ଓଡ଼ିଆ ଭାଇଭଉଣୀଙ୍କର ଭାଷା ଓଡ଼ିଆର ବିକାଶ କ୍ଷେତ୍ରରେ ଅଣ୍ଟା ଭିଡ଼ିଥିବା ବହୁ ଗଣମାନ୍ୟ ବୁଦ୍ଧିଜୀବୀ, ସାହିତ୍ୟିକ ତଥା ସଂସ୍କୃତି ପ୍ରେମୀ ମଧ୍ୟ ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିର ବିକାଶ କିପରି ଘଟିବ ଓ ତାହା ବେତାର ମାଧ୍ୟମରେ କିପରି ପ୍ରଚାରିତ ହେବ, ସେଥିପାଇଁ ଆପ୍ରାଣ ଉଦ୍ୟମ ଜାରି ରଖିଲେ । ୧୯୪୩ ମସିହା ଜାନୁୟାରୀ ପହିଲାରୁ କଲିକତା ବେତାର କେନ୍ଦ୍ର ମାଧ୍ୟମରେ କେବଳ ୫ ମିନିଟ୍ ପାଇଁ ଓଡ଼ିଆ ସଂଗୀତ ପ୍ରଚାର କରିବାର ବ୍ୟବସ୍ଥା କରାଗଲା । ତାହାର ସମୟ ସୀମା ବଢ଼ି ବଢ଼ି ପାଞ୍ଚ ମିନିଟ୍‌ରୁ ପନ୍ଦର ମିନିଟ୍ ହେଲା । ପୁନରାୟ ୧୯୪୫ ମସିହା ଜାନୁଆରୀ ପହିଲା ଦିନ ଏଇ କାର୍ଯ୍ୟକ୍ରମ ସମୟସୀମା ବର୍ଦ୍ଧିତ ହୋଇ ୩୦ ମିନିଟ୍‌ର ବିଭିନ୍ନ କାର୍ଯ୍ୟକ୍ରମ ପ୍ରଚାର କରାଗଲା । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ସଂଗୀତ, ଆଲୋଚନା, କ୍ଷୁଦ୍ର ନାଟିକା, ରୂପକ ସାକ୍ଷାତକାର ଇତ୍ୟାଦି ସ୍ଥାନ ପାଇଥିଲା । କଲିକତା କେନ୍ଦ୍ରର ବେତାର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିବା ତଥା ବେତାର କାର୍ଯ୍ୟକ୍ରମକୁ ପରିଚାଳନା କରୁଥିବା ବ୍ୟକ୍ତିମାନେ ହେଲେ ଡାକ୍ତର ସୁବୋଧ ଦାସ, ତାଙ୍କ ସହଧର୍ମିଣି କୃଷ୍ଣ କାମିନୀ ଦେବୀ, ଯତୀନ ଦାସ, କାଶୀନାଥ ମିଶ୍ର, ସୁରେନ୍ ମହାନ୍ତି, ନୟନ କିଶୋର ମହାନ୍ତି ଅନ୍ୟତମ । ଏହି ଓଡ଼ିଆ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ, ବୁଦ୍ଧିଜୀବୀ, ସମାଜସେବୀ ଓ ସଂଗୀତଜ୍ଞଗଣ । ସେମାନେ ହେଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଲକ୍ଷ୍ମୀ ନାରାୟଣ ସାହୁ, ବୈକୁଣ୍ଠ ନାଥ ପଟ୍ଟନାୟକ, ଡକ୍ଟର ମାୟାଧର ମାନସିଂ, ସୁରେନ୍ଦ୍ର ମହାନ୍ତି, କାଳୀଚରଣ ପଟ୍ଟନାୟକ, ଉଦୟ ନାଥ ଷଡ଼ଙ୍ଗୀ, ରାଧାମୋହନ ଗଡ଼ନାୟକ, ଡାକ୍ତର ସୁରେନ୍ଦ୍ର କୁମାର ବେଉରିଆ, ନବ କୁମାର ଦାସ, ଅନନ୍ତ ପଟ୍ଟନାୟକ, ସତ୍ୟନାରାୟଣ ରାଜଗୁରୁ, ବସନ୍ତ କୁମାର ବେଉରିଆ, ରାଧାନାଥ ରଥ, ନନ୍ଦିନୀ ପାଣିଗ୍ରାହୀ, ସାରଳା ଦେବୀ, ସୀତାଦେବୀ ଖାଡ଼ଙ୍ଗା । ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ କଳୀଚରଣ ପଟ୍ଟନାୟକ, ନିମାଇଁ ଚରଣ ହରିଚନ୍ଦନ, ସିଂହାରୀ ଶ୍ୟାମ ସୁନ୍ଦର କର, ଲୋକନାଥ ରଥ, ଉପେନ୍ଦ୍ର କୁମାର ତ୍ରିପାଠୀ, ରାଧାକୃଷ୍ଣ ଭଂଜ, ସୁକୁମାର ସାହୁ, ଶ୍ୟାମ ସୁନ୍ଦର ଧୀର, କୁମାରୀ ବୀଣାପାଣି ମହାପାତ୍ର, କୁମାରୀ ସଂଯୁକ୍ତା ମହାନ୍ତି, କୁମାରୀ ଶେଫାଳୀ ରାଉତ, ବିଷ୍ଣୁପ୍ରିୟା ଦେବୀ, ସୁମତୀ ଦେବୀ, କଲ୍ୟାଣୀ ଘୋଷ, ମାଧୁରୀ ପଣ୍ଡା ଇତ୍ୟାଦି ।

ସେହିପରି ନାଟକ କ୍ଷେତ୍ରରେ କଲିକତାଠାରେ ଅବସ୍ଥାପିତ ହୋଇଥିବା ଓଡ଼ିଆ ଶିଳ୍ପୀମାନେ ତଥା ନାଟ୍ୟକାରମାନେ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ । କଲିକତା କେନ୍ଦ୍ରରୁ ଓଡ଼ିଆରେ ଯେଉଁ ନାଟକ ଏବଂ ଆଲୋଚନା ପ୍ରଚାରିତ ହେଉଥିଲା, ତାହାର ଗୁଣାତ୍ମକ ମୂଲ୍ୟ ଏତେ ବେଶୀ ଥିଲା ଯେ, ତାହା ଅନେକ ସମୟରେ ବଙ୍ଗବାସୀ ବିଦ୍ୱାନ କଳାକାର ଓ ବେତାର କର୍ମଚାରୀଙ୍କୁ ବିସ୍ମିତ କରି ଦେଉଥିଲେ । କାଳୀଚରଣ ପଟ୍ଟନାୟକଙ୍କ ରଚିତ 'ଭାତ' ନାଟକ ନାଟକୀୟ ସାଫଲ୍ୟ ଅର୍ଜନ କରି ସମଗ୍ର ବଙ୍ଗଳାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସଂଗୀତ ଶିଳ୍ପୀ ଉପେନ୍ଦ୍ର ତ୍ରିପାଠୀଙ୍କର ଏକତାରା ବିଶିଷ୍ଟ ଗୋପୀଯନ୍ତ୍ର ବାଦନ ପ୍ରଣାଳୀ ବହୁ ଶ୍ରୋତାଙ୍କୁ ଚମତ୍କୃତ କରିଦେଇଥିଲା ।

ଓଡ଼ିଆ ଭାଷା ଓ ସଂସ୍କୃତିର ବହୁଳ ପ୍ରଚାର କ୍ଷେତ୍ରରେ କଲିକତାରୁ ପ୍ରଚାରିତ ହେଉଥିବା 'ଓଡ଼ିଆ କାର୍ଯ୍ୟକ୍ରମ' ଓଡ଼ିଶାବାସୀଙ୍କର ଶ୍ରବଣ ତୃଷ୍ଣାକୁ ଚରିତାର୍ଥ କରିବାରେ ଅଧିକ ସମର୍ଥ ହୋଇ ପାରି ନଥିଲା । ଓଡ଼ିଶାରେ ଏକ ବେତାର କେନ୍ଦ୍ର ପ୍ରତିଷ୍ଠା ପାଇଁ ସମଗ୍ର ଓଡ଼ିଶାରେ ପ୍ରବଳ ଜନମତ ସୃଷ୍ଟି ହେବାରେ ଲାଗିଲା । ୧୯୪୬ ମସିହାର ପ୍ରାରମ୍ଭରୁ ଓଡ଼ିଶାରେ ବେତାର କେନ୍ଦ୍ର ପାଇଁ ବିଭିନ୍ନ ମହଲରେ ଆଲୋଚନାର ପରିସର ସୃଷ୍ଟି ହୋଇ ସାରିଥିଲା । ସେସମୟର ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ଲକ୍ଷ୍ମୀ ନାରାୟଣ ସାହୁ, ଭୁବନାନନ୍ଦ କର, ଉମା ଚରଣ ପଟ୍ଟନାୟକ, ଆର୍ତ୍ତବଲ୍ଲଭ ମହାନ୍ତି, କାଳୀଚରଣ ପଟ୍ଟନାୟକ ଇତ୍ୟାଦି ବହୁ ବିଦ୍ୱାନ ବ୍ୟକ୍ତିଗଣ । ବହୁ ଆଲୋଚନା ଓ ପର୍ଯ୍ୟାଲୋଚନା ପରେ ୧୯୪୬ ମସିହାରେ ଓଡ଼ିଶାରେ ବେତାର କେନ୍ଦ୍ର ପ୍ରତିଷ୍ଠା ପାଇଁ ସିଦ୍ଧାନ୍ତ ଗ୍ରହଣ କରାଗଲା । ଓଡ଼ିଆ ଶ୍ରୋତାମାନଙ୍କ ମଧ୍ୟରେ ଉପୁଜିଥିବା ଅନେକ ଆଶା ଓ ଆଶଙ୍କାକୁ ଆଡ଼େଇ ଦେଇ ପ୍ରତୀକ୍ଷାର ଅନ୍ତ କରି ଭାସି ଆସିଲା ସୁମଧୁର କଣ୍ଠରେ ଆକାଶବାଣୀ କଟକ ୧୯୪୮ ମସିହା ଜାନୁୟାରୀ ମାସ ୨୮ ତାରିଖ ସନ୍ଧ୍ୟାରେ । ସେଦିନର ଦୁଇ ଶିଶୁ ସୁଲଭ କଣ୍ଠ ସମୟ ସହ ତାଳଦେଇ ଅନେକ ଓଡ଼ିଆଙ୍କର ଆଶା ଆକାଂକ୍ଷାକୁ ଚରିତାର୍ଥ କରି ଶୁଣାଇ ଆସିଥିଲା ବନ୍ଦେ ମାତରମ୍ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ କଣ୍ଠରେ ଛାନ୍ଦ ଶ୍ରୀରାଧା ବାତୁଳୀ । ବନ୍ଦେ ଉତ୍କଳଜନନୀ ସମବେତ କଣ୍ଠ ସଂଗୀତ ଗଗନପବନ ମୁଖରିତ କରିଥିଲା ସେଦିନ । ହାସ୍ୟରସାତ୍ମକ ନାଟିକା ପୁରୋହିତଙ୍କ ମାନ୍ୟ, ଶିଶୁ କବିତା 'ମେଘ ବରଷିଲା' ।



ଦିଲ୍ଲୀରୁ ପ୍ରଚାରିତ ଓଡ଼ିଆରେ ସମ୍ବାଦ ପାଠ କରିଥିଲେ ସେଦିନ ମନୋରଂଜନ ଦାସ । ସେଇଦିନଠାରୁ ଗୁରୁଣ୍ଡି ଗୁରୁଣ୍ଡି ଚାଲି ଶିଖିଥିବା ଶିଶୁ ଆକାଶବାଣୀ କଟକ ଆଜି ୬୬ ବର୍ଷ ବୟସରେ ପଦାର୍ପଣ କରିବାକୁ ଯାଉଛି । ଗୋଟିଏ ଜାତିର ଜୀବନରେ ୬୬ ବର୍ଷ କିଛି କମ୍ ନୁହେଁ । ଏହି ୬୬ ବର୍ଷ ଭିତରେ ଆକାଶବାଣୀ କଟକ ଭାଷା ଓ ସଂସ୍କୃତିର ସୁରକ୍ଷା ତଥା ପରିବୃଦ୍ଧି ଓ ପରିପ୍ରଚାର ପାଇଁ ଓଡ଼ିଆ ଶ୍ରୋତାମାନଙ୍କ ପାଖରେ ଅନେକ ସଂକଳ୍ପ କରିଛି, ପ୍ରତିଶ୍ରୁତି ମଧ୍ୟ ଦେଇଛି । ଅଗଣିତ ଶ୍ରୋତାଙ୍କର ଶ୍ରବଣ ତୃଷ୍ଣା ମେଣ୍ଟାଇବା କ୍ଷେତ୍ରରେ ଘାତ ପ୍ରତିଘାତ ଭିତରେ ନିଜର ଜୀବନ ସାରଣୀ ଖୋଜି ଆଗକୁ ଆଗ ମାଡ଼ି ଚାଲିଛି । ବୁଢ଼ା ହୋଇ ଯାଇନି, ରୁଗ୍ଣ ହୋଇଯାଇ ନାହିଁ ତାର ଅଂଗ ଅବୟବ । ଶ୍ରୋତାମାନଙ୍କର ଅମୂଲ୍ୟ ପ୍ରୋତ୍ସାହନ ହିଁ ତାକୁ କରି ଦେଇଛି ସବୁଜ, ସବଳ । ଅନେକ ନୂତନ କାର୍ଯ୍ୟକ୍ରମମାନ ସାଉଁଟି ଆଣି ପରିବେଷଣ କରୁଛି ନୂତନ ରଂଗରେ, ନୂତନ ଢ଼ଙ୍ଗରେ । ନାଟକ, ସଂଗୀତ, ଲୋକଗୀତ, ଲୋକସଂଗୀତ ହେଉଛି ତାର ମହାନ ରତ୍ନ । ଆଲୋଚନା କଥିକା ମାଧ୍ୟମରେ ସୂଚନା ଜ୍ଞାନ ବିତରଣ ତଥା ସମ୍ବାଦ ପରିବେଷଣ କ୍ଷେତ୍ରରେ ସେ ସଜାଗ ପ୍ରହରୀ ସାଜିଛି । ଦୈବୀ ଦୁର୍ବିପାକ ବନ୍ୟା ବାତ୍ୟାରେ ସେ ଅଣ୍ଟା ଭିଡ଼ିଛି । ଅନ୍ୟମାନଙ୍କୁ ବାରମ୍ବାର ସଜାଗ କରାଇଛି ସତର୍କ କରାଯାଇଛି । କ୍ରମଶଃ ବେତାର କେନ୍ଦ୍ରରୁ ବହୁ ଗୁଣିଜ୍ଞାନୀ, ସାହିତ୍ୟିକ, ସଂଗୀତଜ୍ଞ, କୁଶଳୀ କଳାକାର ଅବସର ନେଲେଣି । କେହି କେହି ରହିଲେଣି ଅନେକ ଦୂରରେ କେବେ ଫେରି ପାରିବେନି । ହେଲେ ସେମାନଙ୍କ ସଂଯୋଜିତ, ପ୍ରାଯୋଜିତ, ପରିକଳ୍ପିତ ଅସୁମାରୀ ମନଛୁଆଁ କାର୍ଯ୍ୟକ୍ରମ ଯାହା ଶ୍ରୋତାମାନଙ୍କ ମନକୁ ଛୁଇଁ ଯାଉଥିଲା ଦିନେ, ତାହା ଏବେ ବି ପ୍ରଚାରିତ ହେଉଛି । କହି ଦେଉଛି ଅତୀତର କଥା । ଶିଳ୍ପ, କୃଷି, କ୍ରୀଡ଼ା, ଶିକ୍ଷା, ଶିଶୁ ଓ ନାରୀର ବିକାଶ ନିମନ୍ତେ ଆମ ଆକାଶବାଣୀ ବେଶ୍ ତତ୍ପର । ଆକାଶବାଣୀର ବିଶେଷ କାର୍ଯ୍ୟକ୍ରମ ହେଉଛି ପୁରୀ ଧାମରୁ ସିଧା ସଳଖ ଭାବେ ପ୍ରଚାର କରାଯାଉଥିବା 'ରଥଯାତ୍ରା'ର ଧାରାବିବରଣୀ । ଏହି ଧାରାବିବରଣୀ ଶ୍ରୋତାମାନଙ୍କ ମନରେ ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଧାର୍ମିକ ଭାବନା ଜାଗ୍ରତ କରିବା କ୍ଷେତ୍ରରେ ସକ୍ଷମ ହୋଇପାରିଛି ।

ଦିନ ଚାଲିଯାଉଛି, ହେଲେ ଚିହ୍ନ ରହିଯାଉଛି ଯୁଗ ଯୁଗ ପାଇଁ । କାଳେ କାଳେ ଉତ୍କଳବାସୀ ନିଜ ଅତୀତର ଗୌରବ ଐତିହ୍ୟ ପାଇଁ ଚିର ଗର୍ବିତ । ସ୍ୱାଭିମାନୀ ଓଡ଼ିଆ ନିଜ ହାତରେ ମାଟି ପକାଇ ଏଡେଟିଏରୁ ଏଡୁଟିଏ କରିଥିବା ଆକାଶବାଣୀ, କଟକ ପାଇଁ କ'ଣ ଗର୍ବିତ ହେବ ନାହିଁ ?

ଇ-୫୦, ସେକ୍ଟର-୭,
ସିଡିଏ, କଟକ-୧୪

# ଆର୍ଥିକ ସହାୟତା ପ୍ରଦାନ

କଟକସ୍ଥିତ ଆଚାର୍ଯ୍ୟ ହରିହର ଆଞ୍ଚଳିକ କର୍କଟ ଗବେଷଣା କେନ୍ଦ୍ରରେ ଚିକିତ୍ସିତ ହେଉଥିବା ଅସହାୟ ଶିଶୁ ଜୀବନ ପ୍ରଧାନର ଚିକିତ୍ସା ନିମନ୍ତେ ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗର ମା' ନାରାୟଣୀ କର୍ମଚାରୀ ପାଣ୍ଠିର ସଭ୍ୟମାନେ ଟ.୧୦,୦୦୦/- (ଦଶ ହଜାର ଟଙ୍କା)ନଗଦ ରାଶି ରୋଗୀର ପିତା ପଞ୍ଚୁ ପ୍ରଧାନଙ୍କୁ ପ୍ରଦାନ କରିଛନ୍ତି । କର୍ମଚାରୀ ପାଣ୍ଠିର ସଭାପତି ଗିରିଜା କୁମାର ନାୟକ ଓ ସମ୍ପାଦକ ଅଭୟ କୁମାର ପତ୍ରୀ ତା ୦୮.୦୧.୨୦୧୪ରିଖରେ ଚିକିତ୍ସାଳୟକୁ ଯାଇ ଏହି ଅର୍ଥ ସହାୟତା ପ୍ରଦାନ କରିବା ସହିତ ଶିଶୁର ଆଶୁ ଆରୋଗ୍ୟ କାମନା କରିଛନ୍ତି ।





# ଓଡ଼ିଆ ଭାଷା ସମସ୍ୟା ଓ ତା'ର ସମାଧାନ

**ଶ୍ରୀକାନ୍ତ କୁମାର ବାରିକ**

ଭାଷା ହେଉଛି ଗୋଟିଏ ଜାତିର ମେରୁଦଣ୍ଡ । ଭାଷା କେବଳ ଗୋଟିଏ ବ୍ୟକ୍ତି ପାଇଁ ନୁହେଁ, ଜାତି ପାଇଁ ଉଦ୍ଦିଷ୍ଟ । ଭାଷା ଜାତି ବା ସମାଜର ବ୍ୟକ୍ତିବର୍ଗଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ ଏବଂ ତାହା ସେହି ଜାତି ବା ସମାଜର ଭାଷା ଭାବରେ ବିବେଚିତ ହୋଇଥାଏ । ସମାଜର ପ୍ରବାହ ଧାରା ଭାଷାକୁ ବଞ୍ଚାଇ ରଖେ ଓ ବିକଶିତ କରିଥାଏ । ଆମ ଓଡ଼ିଆ ଭାଷା ଓଡ଼ିଆ ଜାତି (ପ୍ରାଚୀନ ଉଡ୍ର) କେଉଁ ଆବହମାନ କାଳରୁ ସୃଷ୍ଟି ହୋଇଛି ଓ ଓଡ଼ିଆ ଜାତିର ବିକାଶ ଧାରାରେ ଉତ୍ତରୋତ୍ତର ବିକାଶଲାଭ କରିଛି । ଏହି ଦୃଷ୍ଟିକୋଣରୁ ଓଡ଼ିଆ ଭାଷା ହେଉଛି ଓଡ଼ିଆ ଜାତିର ପରିଚୟ । ଓଡ଼ିଶାର ପ୍ରାଦେଶିକ ସ୍ୱୀକୃତିପ୍ରାପ୍ତ ଭାଷା । କିନ୍ତୁ ବର୍ତ୍ତମାନ ଏ ଜାତି ପାଇଁ ସବୁଠାରୁ ଦୁଃଖର କଥା ହେଲା ଏହିଭଳି ଏକ ସମୃଦ୍ଧ ଭାଷା ଏକ ଭୟଙ୍କର ମୃତ୍ୟୁ ସଂକଟର ଆଶଙ୍କା ଦେଇ ଗତି କରୁଛି । ଏ ସଂପର୍କରେ ଅନେକ ଆଲୋଚନା ପ୍ରତିଆଲୋଚନା, ବାଦବିସମ୍ବାଦ, ତର୍କ ବିତର୍କ ଆରମ୍ଭ ହୋଇଗଲାଣି । ଭାଷା ବିଜ୍ଞାନୀଙ୍କ ମତରେ, ଓଡ଼ିଆ ଭାଷା ବର୍ତ୍ତମାନ ପରିସ୍ଥିତିରେ ବିପନ୍ନ । ଏମିତି କେତେ କଥା । କିନ୍ତୁ ଆମର ବହୁ ଲେଖକ ଓ ସାହିତ୍ୟିକଙ୍କ ମତରେ 'ଓଡ଼ିଅ ଭାଷା' କେବେ ହେଁ ଲୋପ ପାଇବ ନାହିଁ । ଯଦି ଏହି ଭାଷାରେ ବିଶାଳ ସାହିତ୍ୟ ଭଣ୍ଡାର ଥିବାରୁ ଭାଷାଟି ଲୋପ ପାଇ ପାରିବ ନାହିଁ । ଆମେ ଖାଲି ଏମିତି କହି ନାହିଁରେ ତେଲ ଦେଇ ନିଶ୍ଚିନ୍ତ ହୋଇଯିବା, ତାହାହେଲେ ନିକଟ ଭବିଷ୍ୟତରେ ଆମ ଓଡ଼ିଆ ଭାଷା ନିଶ୍ଚିତ ଭାବେ ଗୁରୁତର ସଂକଟର ସମ୍ମୁଖୀନ ହୋଇଯିବ ।

ଯଦିଓ ଷଷ୍ଠରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଲିଖିତ ଚର୍ଯ୍ୟାଗୀତିକାଗୁଡ଼ିକରେ ଓଡ଼ିଆ ଭାଷାର କିଛି ପ୍ରମାଣ ମିଳେ । କିନ୍ତୁ ସାରଳା ଦାସଙ୍କର ମହାଭାରତ ହିଁ ଓଡ଼ିଆ ଭାଷାସ୍ଥିତିର ପ୍ରଥମ ପ୍ରାମାଣିକ ତଥ୍ୟ । ଗ୍ରନ୍ଥଟି ରଚନା ହେବା ବେଳକୁ ଓଡ଼ିଆ ନିଶ୍ଚୟ ଏକ କଥିତ ଭାଷା ଥିଲା ଏବଂ ମହାକବି ସାରଳାଦାସ ଏହି କଥିତ ଭାଷାରେ ମହାଭାରତ ଭଳି ମହାନ ଗ୍ରନ୍ଥ ରଚନା କରି ଏ ଜାତିର ମୂଳଭିତ୍ତି ପକାଇ ଗଲେ । ଏହି ଗ୍ରନ୍ଥଟି ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ (୧୪୩୦-୪୦) ରଚିତ ହେଲା । ଏହା ପରଠାରୁ ଓଡ଼ିଆ ଭାଷାର କ୍ରମ ବୃଦ୍ଧି ଘଟିଛି, ଘଟୁଛି । ସାରଳା ଦାସଙ୍କ ପରେ ପରେ ଆସିଲେ ପଞ୍ଚସଖା ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଶିଶୁ ଅନନ୍ତ ଓ ଯଶୋବନ୍ତ ଦାସ । ଓଡ଼ିଆ ସାହିତ୍ୟର କଳେବର ବୃଦ୍ଧି କରିବା ସହିତ ଏହାକୁ ବୁଦ୍ଧିମନ୍ତ ମଧ୍ୟ କଲେ । ସୂର୍ଯ୍ୟବଂଶୀ ଗଜପତି ରାଜାମାନେ ଶାସନ କାର୍ଯ୍ୟରେ ଓଡ଼ିଆ ଭାଷାକୁ ବ୍ୟବହାର କରୁଥିବା ପ୍ରମାଣ ମିଳିଥାଏ । ଗଙ୍ଗାଠାରୁ କୃଷ୍ଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ଏ ସାମ୍ରାଜ୍ୟରେ ତତ୍କାଳୀନ ସମୟରେ ସେମାନେ ତେଲୁଗୁ ଭାଷାର ବ୍ୟବହାର କରିଥିବା ସମ୍ଭବ, କାରଣ ସେସମୟରେ ସୂର୍ଯ୍ୟବଂଶୀ ସାମ୍ରାଜ୍ୟରେ ବହୁ ସଂଖ୍ୟାରେ ତେଲୁଗୁ ଥିଲେ । ସେ ଯାହା ହେଉ, ଏହି ସମୟରେ ଓଡ଼ିଆ ଭାଷାର କ୍ରମ ବିକାଶ ଘଟିଥିଲା । କିନ୍ତୁ ୧୫୬୮ ମସିହା ପରଠାରୁ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓଡ଼ିଶାର ପ୍ରଶାସନିକ ଭାଷାର ମର୍ଯ୍ୟାଦା ହରାଇ ବସିଲା । ଏହି ସମୟରେ କୌଣସି ଭାଷା ପ୍ରତିଷ୍ଠାନ ନଥିଲା, ଭାଷାର ପ୍ରଗତି ଚିନ୍ତା କରିବା ପାଇଁ । ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜ ଆଦି ଶାସକମାନେ କ୍ରମାନ୍ୱୟରେ ଓଡ଼ିଶାକୁ ଦଖଲ କଲେ । ସେମାନେ ନିଜ ଭାଷାରେ ଦଲିଲ ପତ୍ର ଲେଖିଥିଲେ । ଏହିକାଳ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, କବି ସୂର୍ଯ୍ୟ ବଳଦେବ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର, ଯଦୁମଣି ଏବଂ ପରବର୍ତ୍ତୀ କାଳରେ ଫକୀର ମୋହନ, ରାଧାନାଥ, ମଧୁସୂଦନ ଓ ଗଙ୍ଗାଧରଙ୍କ ପରି ପ୍ରଥିତଯଶା ସାହିତ୍ୟିକ ଜନ୍ମ ନେଇଥିଲେ । କିନ୍ତୁ ଏଠାରେ ପ୍ରଶ୍ନ ଉଠେ ଏହିଭଳି ଏକ ଦୁର୍ଦ୍ଦିନ ସମୟରେ ବିନା ସରକାରୀ ପ୍ରୋତ୍ସାହନରେ ଏହି ଓଡ଼ିଆ ଭାଷା



କେମିତି ବଞ୍ଚିଲା ଓ ସମୃଦ୍ଧି ଲାଭ କଲା ? ସତ୍ ଲେଖକ ଓ ସାହିତ୍ୟିକ ବନ୍ଧୁମାନେ ବିଚାର କରିବା ଉଚିତ୍ ଯେ କେବଳ ଭଲ ସାହିତ୍ୟ ରଚନା କରିଦେଲେ ଭାଷା ବଞ୍ଚେ ନାହିଁ। ସଂସ୍କୃତ ଭାଷାରେ କେତେ ଯେ ମହାନ୍ ଗ୍ରନ୍ଥ ରଚିତ ହୋଇଛି। ଅଦ୍ୟାବଧି ମଧ୍ୟ ରଚନା କରାଯାଉଛି। କିନ୍ତୁ ଏହା ଏକ ମୃତ ଭାଷା। ଗ୍ରୀକ୍, ଲାଟିନ୍ ଆଦି ଭାଷାରେ କେତେ ଯେ ସାହିତ୍ୟ, ଦର୍ଶନ, ପୁରାଣ ଆଦି ରଚିତ ହୋଇଛି, କିନ୍ତୁ ଏହି ଭାଷା ଦ୍ୱୟ ମଧ୍ୟ ମୃତ। କାରଣ ଏଗୁଡିକ କଥିତ ଭାଷା ନୁହନ୍ତି। ତେଣୁ ଗୁଡାଏ ବହି ଲେଖିଦେଲେ କିମ୍ୱା ଗୁଡାଏ ପତ୍ରିକା ବାହାର କରିଦେଲେ ଭାଷା ବଞ୍ଚେ ନାହିଁ। ଭାଷା ବଞ୍ଚେ ଲୋକଙ୍କ ମୁହଁରେ।

ଏହିଭଳି ଆହୁରି କେତୋଟି ଦିଗକୁ ଏଠାରେ ଆଲୋଚନା କରାଯାଇପାରେ। ସାଂପ୍ରତିକ କାଳରେ ଭାରତୀୟ ପ୍ରାନ୍ତୀୟ ଭାଷାମାନଙ୍କ ସମ୍ପର୍କରେ ନାନାଦି ତର୍କ, ଆଲୋଚନା, ବିମର୍ଶ ପ୍ରାୟ ସବୁବେଳେ ହେଉଛି। କାରଣ ଏହି ଭାଷାଗୁଡିକରେ ଇଂରାଜୀ ଭାଷା କାୟା ବିସ୍ତାର କରିବାକୁ ବସିଛି। ବଙ୍ଗଳା, ହିନ୍ଦୀ, କନ୍ନଡ଼, ତାମିଲ୍ ଆଦି କେତୋଟି ହାତଗଣତି ଭାଷାକୁ ଛାଡ଼ିଦେଲେ ଅନ୍ୟ ଭାଷାର ଅବସ୍ଥା ଦିନକୁ ଦିନ ଶୋଚନୀୟ ହୋଇ ପଡୁଛି। ଏସବୁର ମୂଳ କାରଣ ହେଉଛି ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କ ପ୍ରଚେଷ୍ଟା ଓ ଯଥେଚ୍ଛାଚାର ଅଭିବୃଦ୍ଧି। ଦଶବର୍ଷ ପୂର୍ବରୁ ଏପରି ସ୍କୁଲ କାଁ ଭାଁ କେବଳ ସହରରେ ଗଢ଼ି ଉଠୁଥିଲା। ଏବେ କିନ୍ତୁ ଗ୍ରାମାଞ୍ଚଳ ଓ ଗ୍ରାମ୍ୟ ସହରରେ ଇଂରାଜୀ ମାଧ୍ୟମିକ ସ୍କୁଲମାନଙ୍କରେ ବହୁ ସଂଖ୍ୟାରେ ବିକାଶ ଘଟୁଛି। ପିଲାମାନଙ୍କ ବାପାମାଆ କିମ୍ୱା ଅଭିଭାବକମାନଙ୍କ ମନରେ ଗୋଟିଏ ଭୁଲ ଧାରଣା ବସା ବାନ୍ଧିଛି ଯେ ଇଂରାଜୀ ପାଠରୁ ପଢ଼ାଟି ଆରମ୍ଭ କଲେ ପିଲାଟିର ଭବିଷ୍ୟତ ଉଜ୍ଜ୍ୱଳ ହେବ। ସେ ଚାକିରି ପାଇବ। ବୈଷୟିକ ଅନୁଷ୍ଠାନମାନଙ୍କରେ ପାଠ ପଢ଼ି ବଡ଼ ବଡ଼ କମ୍ପାନୀମାନଙ୍କରେ ଚାକିରି କରି ଅଧିକ ଦରମା ପାଇବ। ଇଂରାଜୀରୁ ପାଠ ପଢ଼ା ଆରମ୍ଭ ନକଲେ ସେ ସ୍ମାର୍ଟ ହୋଇ ପାରିବ ନାହିଁ। ଏହା ସାଧାରଣ ଲୋକଙ୍କର ଏକ ଭ୍ରମ ଧାରଣା ଓ ଧୀରେ ଧୀରେ ଏହି ଭ୍ରମ ଧାରଣା ସମସ୍ତଙ୍କ ମସ୍ତିଷ୍କକୁ ଦିଗଭ୍ରଷ୍ଟ କରିଦେଉଛି।

ଭାଷା ସଂପର୍କରେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ମନ୍ତବ୍ୟ ଥିଲା ବିସ୍ଫୋରକ। ସେ କହିଥିଲେ ଗୋଟିଏ ବିଦେଶୀ ଭାଷା ଶିକ୍ଷା ଲାଗି ଏପରି ବାଧ୍ୟବାଧକତା ଭାରତ ଛଡ଼ା ଆଉ କେଉଁ ଦେଶରେ ଦେଖାଯାଏ ନାହିଁ। କୋଡ଼ିଏ ପଚିଶ ବର୍ଷ ଧରି ଇଂରାଜୀ ଭାଷା ମାଧ୍ୟମରେ ଆମେ ଯାହା ଶିକ୍ଷା କରିପାରୁ, ମାତୃଭାଷା ମାଧ୍ୟମରେ ଆମେ ତାହା ସହଜରେ ସାତ ଆଠ ବର୍ଷ ମଧ୍ୟରେ ଶିକ୍ଷାଲାଭ କରିପାରିବୁ (British rule in India Ramgopal, Page-229)। ଇଂରାଜୀ ଭାଷା ଭାରତୀୟ ସ୍କୁଲ ତଥା ଓଡ଼ିଶାର ସ୍କୁଲ କଲେଜମାନଙ୍କରେ ଶିକ୍ଷା ଦିଆଯାଉଥିବାରୁ ଛାତ୍ରଛାତ୍ରୀମାନଙ୍କର ବହୁ ଶକ୍ତି ଓ ସମୟ ନଷ୍ଟ ହେଉଛି। ଛାତ୍ରଛାତ୍ରୀମାନଙ୍କର ଚିନ୍ତାର ବିକାଶ ଓ ଭାବର ସଂପ୍ରସାରଣ ପକ୍ଷେ ଅସୁବିଧା ଦେଖାଦେଉଛି। ଯାହାଫଳରେ ପିଲାମାନେ ଭାବଠାରୁ ଦୂରେଇ ଯାଉଛନ୍ତି। ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଗଲେ ଏହିଭଳି ଅସୁବିଧା ଦେଖାଦିଅନ୍ତା ନାହିଁ। ମନସ୍ତତ୍ତ୍ୱବିତ୍‌ମାନେ କହିଥାନ୍ତି ପିଲାଟିଏ ଯଦି ଆରମ୍ଭରୁ ଦଶବର୍ଷ ପର୍ଯ୍ୟନ୍ତ କେବଳ ମାତୃଭାଷା ମାଧ୍ୟମରେ ଅଧ୍ୟୟନ କରିବ ତା'ପରେ ଅନ୍ୟ ଯେକୌଣସି ଭାଷାକୁ ଆୟତ୍ତ କରିବା ପାଇଁ ପ୍ରୟାସ କରିବ, ତା' ପକ୍ଷେ ସେହି ଭାଷାକୁ ଆୟତ୍ତ କରିବା କଷ୍ଟକର ହେବନାହିଁ କିନ୍ତୁ ପିତାମାତା ଅଭିଭାବକମାନେ କ'ଣ କରୁଛନ୍ତି ? ପ୍ରଥମରୁ ପିଲାଟିକୁ ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କରେ ପାଠ ପଢ଼ାଇ ନିଜର ମାତୃଭାଷାରେ ଦୁର୍ବଳ କରି ଦେଉଛନ୍ତି। ନା ସେ ଭଲ କରି ନିଜ ଭାଷାକୁ କହୁଛି ନା ଭଲକରି ଇଂରାଜୀ ଭାଷାକୁ ଆୟତ୍ତ କରିପାରୁଛି। ଅବଶ୍ୟ ଦରଖଣ୍ଡିଆ ଭାବରେ ଇଂରାଜୀ କହୁଛି ଓ ଲେଖୁଛି। ପିଲାକୁ ଏହିପରି ଏକ ସଂକଟ ଭିତରକୁ ଠେଲି ଦେଇ ପିତାମାତା ଓ ଅଭିଭାବକମାନେ ତାକୁ ବିକଳାଙ୍ଗ କରି ଦେଉଛନ୍ତି।

କ୍ରମେ ରାଜ୍ୟର ମେଧାବୀ ପିଲାମାନେ ମାତୃଭାଷାଠାରୁ ସଂପୂର୍ଣ୍ଣ ଦୂରେଇ ଯାଇ ହୁଏତ ଅଧିକ ରୋଜଗାର କରିବେ, କିନ୍ତୁ ସେମାନଙ୍କ ମଧ୍ୟରେ ମଣିଷ ପଣିଆର ବିକାଶ ଘଟିବ ତ ? ଯାହା ସ୍ୱଭାବ କବି ଗଙ୍ଗାଧର ମେହେର କହିଯାଇଛନ୍ତି–

ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ॥

ଏହି ପିଲାମାନେ ହୋଇଯିବେ ଏକ ଦେଶଦର୍ଶୀ, ବେତାଳିଆ, ଗୋଟିଏ ଗୋଟିଏ ଛିନ୍ନପକ୍ଷ ମୈନାକ। ଏମାନେ ଉତ୍ତର ପିଢ଼ି ପାଇଁ ମହା ସଂକଟର କାରଣ ହୋଇଯିବେ। କାହିଁକିନା ଯେଉଁ ଭାଷାଟି ସଂସ୍କାର, ସଂସ୍କୃତି, ଦେଶ, ଜାତୀୟତା ଆଦିକୁ ଯୋଡ଼ି ପାରିଥାନ୍ତା, ସେହି ଭାଷାକୁ ସେମାନଙ୍କ ପିଲାଛୁଆ ଆଦୌ ଶିଖି ପାରିବେ ନାହିଁ। ଘଣ୍ଟା ଘଣ୍ଟା ଧରି କମ୍ପ୍ୟୁଟର ପାଖରେ ବସି ରହୁଥିବା ଏ ପିଲାମାନେ ନା ଭାଗବତ ପଢ଼ିବେ ନା ରାମାୟଣ ନା ଫକୀର ମୋହନ, ଗୋପୀନାଥ ଆଦିଙ୍କୁ ଯାହା ତାଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ ହୁଅନ୍ତା, ତାହା ନକରି ସେମାନେ ଅର୍ଥ



ସର୍ବସ୍ୱ, ସଂସ୍କାରହୀନ, ଦେଶ, ଜାତି ବିବର୍ଜିତ ମଣିଷ ହୋଇ ବାହାରିବା ସାର ହେବ । ଯାହାଙ୍କ ଭିତରେ ମାଆ, ମାତୃଭୂମି ଓ ମାତୃଭାଷା ପ୍ରତି ଟିକିଏ ବି ଦରଦ ବୋଧ ନଥିବ । ସେତେବେଳେ ଅର୍ଥାତ୍ ଏ ପିଢ଼ିର ପରବର୍ତ୍ତୀ ପିଢ଼ିରେ କ'ଣ ହେବ ଏ ଭାଷାର ଅବସ୍ଥା ଆଜହୁଁ ଏଜାତି କଳ୍ପନା କରିବା ଉଚିତ୍ ।

ଏହିଭଳି ଆଉ ଗୋଟିଏ କଥା ହେଉଛି ଆମ ଲୋକଙ୍କର ନିଜ ମାତୃଭାଷା ପ୍ରତି ହୀନମନ୍ୟଭାବ । ଦେଶରେ ଓଡ଼ିଆ ଜାତି ବୋଧେ ପ୍ରଥମ ଜାତି ଯେଉଁଠି ଉଭୟ ସରକାରୀ ଓ ଜନସାଧାରଣଙ୍କ ପାଖରେ ନିଜ ମାତୃଭାଷା ଏତେ ହତାଦର ହୋଇଥାଏ । ଆମ ଲୋକେ ରେଳ ଗାଡ଼ିରେ ଚଢ଼ି ସାରିଲା ପରେ ଓଡ଼ିଆ ଭାଷାକୁ ପାଶୋରି ଦେଇ ଛାତିକୁ ଟିକିଏ ଫୁଲାଇ ଲହରାଇ ଲହରାଇ ହିନ୍ଦୀ କିମ୍ବା ଇଂରାଜୀ କହିବା ଆରମ୍ଭ କରିଦିଅନ୍ତି । ଏହା କୌଣସି ତାଚ୍ଛଲ୍ୟର କଥା ନୁହେଁ, ନିରାଟ ସତ କଥା । କିନ୍ତୁ ଆପଣ ଦେଖିଥିବେ ଜଣେ ବଙ୍ଗାଳି ହୁଅନ୍ତୁ କିମ୍ବା ତାମିଲ ଲୋକ ହୁଅନ୍ତୁ, ସେମାନେ ଯେଉଁଠିକୁ (ନିଜ ରାଜ୍ୟ ଭିତରେ କିମ୍ବା ରାଜ୍ୟ ବାହାରେ) ଯାଆନ୍ତି ସେଠାରେ ପ୍ରଥମେ ନିଜ ମାତୃଭାଷାରେ କଥା ହୁଅନ୍ତି କିନ୍ତୁ ଆମ ଲୋକେ ଠିକ୍ ଓଲଟା । ଏବେତ ଆମ ଯୁବସମାଜ ଆଉ ଓଡ଼ିଆ ଭାଷାରେ କଥା ହେଉ ନାହାନ୍ତି । ଏମାନଙ୍କ ଦୃଷ୍ଟିରେ ଓଡ଼ିଆ ଭାଷା ସତେ ଏତେ ଗନ୍ଧିଆ, ନିକଚ୍ଛିଆ । ଦରଖଣ୍ଡିଆ ହିନ୍ଦୀ ନୋହିଲେ ଇଂରାଜୀରେ କଥା ହେବାକୁ ଏହାଙ୍କୁ ସୁଖ ଲାଗୁଛି । କି ଦୁର୍ଭାଗ୍ୟ ସତେ ଏ ଜାତିର । ମଧୁବାବୁ କହିଥିଲେ–

ଇଷ୍ଟ ଦେବୀ ମାତୃଭାଷା ମାତୃ ଜାତି
ତାଙ୍କ ହତାଦରେ ଦେଶ ଆତ୍ମଘାତୀ ॥

ନିଜ ମାତୃଭାଷା ପ୍ରତି ହତାଦର କରି ଆଜି ଏ ଜାତି ନିଜ ପରିଚୟ ହଜାଇବାକୁ ବସିଛି । ଆମ ସରକାରୀ ସ୍ତରରେ ଭାଷାପ୍ରତି ଟିକିଏ ମଧ୍ୟ ଉଦାର ମନୋଭାବ ନାହିଁ । ସରକାରୀ ସ୍ତରରେ ଯଦି ସକାରାତ୍ମକ ମାନସିକତାରେ ଭାଷାପ୍ରତି ସ୍ୱତନ୍ତ୍ର ବିଚାର କରାଯାଏ, ତାହେଲେ ନିଶ୍ଚିତ ଭାବରେ କିଞ୍ଚିତ ପରିବର୍ତ୍ତନ ହେବ ।

ଶବ୍ଦ ଆହରଣରେ ଆମ ଭାଷା ବହୁ ପଛରେ । ପଶ୍ଚିମ ଓଡ଼ିଶାର ଆଞ୍ଚଳିକ ଭାଷା, ଦକ୍ଷିଣ ଓଡ଼ିଶାର ଆଞ୍ଚଳିକ ଭାଷା ବା ଉତ୍ତର ଓଡ଼ିଶାର ଆଞ୍ଚଳିକ ଭାଷାରୁ ସବୁଠାରୁ ଅଧିକ ଆଦିବାସୀ ବଣପାହାଡ଼ ଘେରା ଅଞ୍ଚଳରେ ବାସ କରନ୍ତି । ବିଭିନ୍ନ ପ୍ରକାର ଆଦିବାସୀଙ୍କର ସ୍ୱତନ୍ତ୍ର ଭାଷା ରହିଛି । ଏହି ଭାଷାଗୁଡିକରୁ ମଧ୍ୟ ଶବ୍ଦ ଗ୍ରହଣ କରାଯାଇ ପାରନ୍ତା । କିନ୍ତୁ ଆମ ଚିନ୍ତାଧାରା ନ୍ୟୁନ । କାଳେ ଆମେ ଆଦିବାସୀ ହୋଇଯିବା । କିନ୍ତୁ ଆଜି ବିଚାର କରିବାକୁ ହେବ । ଆଜିର ଆବଶ୍ୟକତା ଅନୁଯାୟୀ ତର୍ଜମା କରି ଆମର ସଂକୁଚିତ ଚିନ୍ତାଧାରାକୁ ପ୍ରସାରିତ କରିପାରିଲେ ଆମ ଓଡ଼ିଆ ଭାଷା ଆହୁରି ସମୃଦ୍ଧ ହୋଇପାରିବ । ବିଶ୍ୱର ପ୍ରତ୍ୟେକ ସମୃଦ୍ଧଶାଳୀ ଭାଷା ଆହଣରେ ରୁଦ୍ଧିମନ୍ତ ହୋଇଥାଏ । ଏଠାରେ ଇଂରାଜୀ ଭାଷାକୁ ବିଚାର କରାଯାଇପାରେ । ଇଂରାଜୀ ଭାଷା କୋଷରେ ପୃଥିବୀର ବିଭିନ୍ନ ପ୍ରାନ୍ତର କିଛି ବସ୍ତୁ କୌଶଳ ଇତ୍ୟାଦିର ନୂତନ ଶବ୍ଦଗୁଡିକୁ ଅଦ୍ୟାବଧି ଗ୍ରହଣ କରାଯାଉଛି । ଏହାକୁ ପାଶ୍ଚାତ୍ୟ ଭାଷା ସମୀକ୍ଷାରେ ଭାଷାର ଉନ୍ନତିକରଣ କୌଶଳ କୁହାଯାଇଥାଏ । ତେଣୁ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗ ଏବଂ ଭାଷାକୁ ସମୃଦ୍ଧ କରିବା ପାଇଁ ସଂସ୍କୃତି ବିଭାଗରେ ଯେଉଁ ଭାଷାବିତ୍, ଶିକ୍ଷାବିତ୍ ଓ ବୁଦ୍ଧିଜୀବୀମାନେ ଓଡ଼ିଶା ସରକାରାଙ୍କ ଅଧୀନରେ କର୍ମରତ, ସେମାନଙ୍କୁ ଯଦି ସରକାର ବ୍ୟବହାର କରି ଓଡ଼ିଆ ଭାଷାରେ ଡାକ୍ତରୀ ବିଦ୍ୟା, ଆଇନବିଦ୍ୟା, ବୈଷୟିକ ଜ୍ଞାନକୌଶଳ, ଗଣିତ, ବିଜ୍ଞାନ, ବାଣିଜ୍ୟ ଆଦି କ୍ଷେତ୍ରରେ ବ୍ୟବହାର ହେଉଥିବା ବିଭିନ୍ନ ଇଂରାଜୀ ଶବ୍ଦ ଓ ଭାଷାର ସଠିକ୍ ଓ ସହଜରେ ଓଡ଼ିଆ ଭାଷାରେ ଅନୁବାଦ କରାଇ ଛାତ୍ରଛାତ୍ରୀମାନଙ୍କ ମନରେ ଆଗ୍ରହ ସୃଷ୍ଟି କରାଇବାର ପ୍ରୟାସ ହେବା ଉଚିତ୍ । ଇଂରାଜୀ ଭାଷାରେ ମାତ୍ର ୨୬ ଗୋଟି ଅକ୍ଷର ଅଛି । କିନ୍ତୁ ତାର ବ୍ୟାକରଣ, ବନାନ ଓ ଉଚ୍ଚାରଣ ଏତେ ସହଜ ଭାବରେ ତିଆରି କରାଯାଇଛି ଯେ, ଯେକୌଣସି ବ୍ୟକ୍ତି ସେହି ଭାଷାକୁ ଶିଖିବା ପାଇଁ ସହଜ ବୋଧ ମନେ କରନ୍ତି । ଠିକ୍ ସେହିପରି ଆମ ଓଡ଼ିଆ ଭାଷାକୁ ସହଜ ଓ ସରଳ କରିପାରିଲେ ଏହା ସର୍ବଜନାଦୃତ ଓ ବ୍ୟବହାର ଯୋଗ୍ୟ ହୋଇପାରିବ । ଭାରତରେ ଅନେକ ଭାଷା ନିଜ ଭାଷାକୁ ସମୃଦ୍ଧ କରିବା ପାଇଁ ସଂସ୍କୃତ, ବିଭିନ୍ନ ଆଦିବାସୀ ଭାଷା, ହିନ୍ଦୀ ଏପରିକି ଅନ୍ୟ ରାଜ୍ୟମାନଙ୍କର ଭାଷାରୁ ଅନେକ ଶବ୍ଦ ନିଜ ଭାଷାରେ ସଂଯୋଗ କରି ନିଜ ଭାଷାକୁ ସମୃଦ୍ଧ କରି ପାରିଛନ୍ତି । ଆମେ କେବଳ ଓଡ଼ିଆ କହିଲେ ଆମ ଭାଷାର ସମୃଦ୍ଧ ହୋଇ ପାରିବ ନାହିଁ । ବରଂ ଏଥିପ୍ରତି ନିଷ୍ଠା ଓ ସମ୍ମାନର ସହ ବିଶେଷ ଭାବେ ଠିକ୍ ଭୁଲ ବିଚାର କରି ନୂତନ ଚିନ୍ତାଧାରାଗୁଡିକୁ ଗ୍ରହଣ କରି ଓଡ଼ିଆ ଭାଷାକୁ ସମୃଦ୍ଧ କରିବାକୁ ଚେଷ୍ଟା କଲେ ଆମେ ଯଥାର୍ଥ ଭାବେ ଓଡ଼ିଆ ଭାଷାର ମାନବୃଦ୍ଧିରେ ସହାୟକ ହୋଇପାରିବା ।

ଭାଷା ପ୍ରସାରଣ ତଥା ସମୃଦ୍ଧିକରଣର ଏକ ଦିଗ ହେଉଛି ଗଣମାଧ୍ୟମ । ସମ୍ବାଦପତ୍ର, ଦୂରଦର୍ଶନ, ରେଡ଼ିଓ, ଚଳଚ୍ଚିତ୍ର ଆଦି ହେଉଛି ଗଣମାଧ୍ୟମର ମୁଖ୍ୟ ଅଙ୍ଗ । ଭାଷା ଏଗୁଡିକ ମାଧ୍ୟମରେ ମଧ୍ୟ ବିକାଶ ଲାଭ କରିଥାଏ । କିଛି ଆମ ଗଣମାଧ୍ୟମଗୁଡିକ ଆଧୁନିକିକରଣ ନାଁରେ ଏମିତି ବିକଳାଙ୍ଗ ହୋଇଯାଉଛି ଯେ ତାହା





ଆମ ଧାରଣା ବାହାରେ । ସଂପ୍ରତି ସମ୍ବାଦପତ୍ରଗୁଡ଼ିକରେ ବ୍ୟବହୃତ ଭାଷା ତୀକ୍ଷ୍ଣ ଏକନିଷ୍ଠ ନୁହେଁ କି ଲୌକିକ ମଧ୍ୟ ନୁହେଁ। ଖାଲି ଶିଥିଳ ଓ ଖାମଖିଆଲି ଭାବେ ବ୍ୟବହୃତ। ଦିନଥିଲା ଓଡ଼ିଆ ସମ୍ବାଦପତ୍ର ବହୁ ନୂଆଶବ୍ଦ ଓଡ଼ିଆ ଭାଷାକୁ ଆଣୁଥିଲେ। 'ରାଜ୍ୟପାଳ', 'ଲୋକପାଳ', 'ଜିଲ୍ଲାପାଳ' ପ୍ରଭୃତି ଶବ୍ଦଗୁଡ଼ିକ ଆମକୁ କିଏ ଦେଇଥିଲା ? ଏଇ ସମ୍ବାଦପତ୍ର । ବର୍ତ୍ତମାନ ଓଡ଼ିଶାରେ କେତେ ଯେ ସମ୍ବାଦପତ୍ର ପ୍ରକାଶ ପାଇଲାଣି ଏବଂ ପ୍ରତିଦିନ ଏହି ସମ୍ବାଦପତ୍ରଗୁଡ଼ିକରେ ବହୁ ନୂତନ ଶବ୍ଦର ସମ୍ଭାର ଦେଖିବାକୁ ମିଳୁଛି। କିନ୍ତୁ ସଠିକ୍ ଶୈଳୀରେ ଓ ଢ଼ଙ୍ଗରେ ସମ୍ବାଦ ପରିବେଷଣ ମାଧ୍ୟମରେ ଭାଷାର ବିକାଶ ହୋଇପାରୁ ନାହିଁ । ଦୂରଦର୍ଶନ, ରେଡ଼ିଓ, ଚଳଚ୍ଚିତ୍ରଗୁଡ଼ିକରେ ମଧ୍ୟ ଓଡ଼ିଆ ଭାଷାର ଦୁର୍ଦ୍ଦଶା ସେଇଆ । ବିଶେଷ କରି ରେଡ଼ିଓ ଓ ଦୂରଦର୍ଶନରେ ସଂଯୋଜନା କାର୍ଯ୍ୟକ୍ରମରେ କି ଧରଣର ଭାଷା ବ୍ୟବହୃତ ହୁଏ ? ଓଡ଼ିଆ, ଇଂରାଜୀ, ହିନ୍ଦୀ, ବଙ୍ଗାଳୀ ଆଦି ସବୁ ମିଶ୍ରଣର ଏକ ଉଦ୍ଭଟ ସଂକଟ ଭାଷା ଆମେ ଶୁଣୁ । ଆମେ ଆମ ଭାଷା, ସଂସ୍କୃତିକୁ ସମୃଦ୍ଧ କରିବାକୁ ଯାଇ କେମିତି ବିକଳାଙ୍ଗ କରି ଦେଉଛେ, ଏହାହିଁ ତାର ଜ୍ୱଳନ୍ତ ଉଦାହରଣ।

ଓଡ଼ିଆ ଭାଷା ଏହି ଭଳି ଏକ ସଂକଟ ସମୟ ଦେଇ ଗତି କରୁଥିବା ବେଳେ ନିକଟ ଅତୀତରେ କେତେଜଣ ଭାଷାତତ୍ତ୍ୱବିତ୍ ନିଜର ଅକ୍ଳାନ୍ତ ପରିଶ୍ରମ ବଳରେ ଗବେଷଣା କରି ଏହି ଭାଷା (ଓଡ଼ିଆ)ର ଶାସ୍ତ୍ରୀୟ ମାନ୍ୟତା ପାଇଁ କେନ୍ଦ୍ର ସରକାରଙ୍କୁ ଯେଉଁ ସୁପାରିଶ କରିଛନ୍ତି, ତାହା ନିଶ୍ଚୟ ଆମ ପାଇଁ ଗୌରବର କଥା। କିନ୍ତୁ ଆମେ ଖାଲି ଗଦ୍‌ଗଦ୍ ହୋଇଗଲେ ହେବନି। ଆମକୁ ଅନେକ କିଛି କରିବାର ଅଛି। ପ୍ରଥମେ ଆମକୁ ମୂଳସ୍ତରକୁ ଗୁରୁତ୍ୱ ଦେବାକୁ ପଡିବ। ପ୍ରତ୍ୟେକ ଲୋକଙ୍କର ମାନସିକତାରେ ସଚେତନତା ଆଣିବା ସହିତ ଭୁଲଧାରଣାକୁ ଦୂର କରିବାକୁ ହେବ। ସରକାରୀ ହେଉ ଅବା ବେସରକାରୀ ପ୍ରତ୍ୟେକ ଶିକ୍ଷାନୁଷ୍ଠାନମାନଙ୍କରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନେ କେବଳ ଓଡ଼ିଆ ଭାଷାରେ ଶିକ୍ଷା ଅଧ୍ୟୟନ କରିବେ। ପ୍ରତି ଜିଲ୍ଲାମାନଙ୍କରେ ଗୋଟିଏ ଗୋଟିଏ ଭାଷା, ଅନୁଷ୍ଠାନ ଗଢ଼ା ହେଉ। ଏହି ଅନୁଷ୍ଠାନମାନଙ୍କରେ ଭାଷାବିତ୍‌ମାନେ ଉପଦେଷ୍ଟା ହେବେ। ଭାଷା ବିଜ୍ଞାନୀ, ଭାଷା ଶାସ୍ତ୍ରୀ, ଭାଷାବିଶାରଦମାନେ ସେମାନଙ୍କୁ ଦିଗ୍‌ଦର୍ଶନ ଦେବେ। ସବୁଠାରୁ ଗୁରୁତ୍ୱ କଥା ହେଉଛି ସକଳ ଭାଷାନୁଷ୍ଠାନ ସମାଜ ଓ ଶିକ୍ଷାନୁଷ୍ଠାନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ରହି ଭାଷାର ବିକାଶ ନିମିତ୍ତ ଗୁରୁଦାୟିତ୍ୱ ବହନ କରିବେ। ଖାଲି ଓଡ଼ିଆ ଭାଷାର ସୁରକ୍ଷା, ବ୍ୟାପକ ପ୍ରଚଳନ ଓ ବିକାଶ ନିମିତ୍ତ ଆଇନ ଗଢ଼ିଦେଲେ ହେବନାହିଁ। ଭାଷାକୁ ଆଧୁନିକ ସମାଜ ଉପଯୋଗୀ କଲେ ଓଡ଼ିଆ ଭାଷା ନିଶ୍ଚିତ ଭାବେ ତିଷ୍ଠି ରହିବ। ଏଥିରେ ସନ୍ଦେହ ନାହିଁ।

---

ଓଡ଼ିଆ ବିଭାଗ,
ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ





# କଟକର ଐତିହ୍ୟ

# ଶ୍ରୀ ଶ୍ରୀ ଝାଞ୍ଜିରୀ ମଙ୍ଗଳା

ରାଜ କିଶୋର ରାଜ

କିମ୍ବଦନ୍ତୀ ଓ ଶିଳାଲେଖାରୁ ଆଭାସ ମିଳେ ଯେ, କଟକ ନଗରର ଚିନ୍ତା ବାଇମୁଣ୍ଡି ରାଜାନୁଗ୍ରହ ପ୍ରାପ୍ତ ହୋଇ ବନ୍ୟାର ବିଭୀଷିକାରୁ କଟକ ସହରକୁ ରକ୍ଷା କରିବା ପାଇଁ ତଥା କଟକ ମହାନଗରବାସୀଙ୍କୁ ବଞ୍ଚାଇବା ନିମନ୍ତେ ପଥରବନ୍ଧ ବସାଇବା ଆରମ୍ଭ କରିଥିଲେ । ଆମ ଶାସ୍ତ୍ରାନୁସାରେ କୌଣସି କାର୍ଯ୍ୟାନୁଷ୍ଠାନ ଆରମ୍ଭ ଆଗରୁ କୌଣସି ଦେବାଦେବୀଙ୍କର ପୂଜାର୍ଚ୍ଚନା ପରେ କାର୍ଯ୍ୟ ଆରମ୍ଭ କରାଯାଏ । ସେତେବେଳେ କଟକ ନଗର ବୋଇଲେ ବିଡ଼ାନାସୀଠାରୁ ଶ୍ମଶାନ ପର୍ଯ୍ୟନ୍ତ ବିସ୍ତିର୍ଣ୍ଣ ଥିଲା । ତେଣୁ ବାଇମୁଣ୍ଡି ପ୍ରଥମେ କଟକ ନଗରର ପୂର୍ବ ଦିଗରେ ଏକ ଶିଳାଲେଖ ଚତୁର୍ଭୁଜା ଅଭୟ ବରଦାୟିନୀ ମା' ମଙ୍ଗଳାଙ୍କର ମୁଖା ଅଙ୍କିତ କରି ଝାଞ୍ଜିରୀ ଖରାଦିନ ଦ୍ୱିପ୍ରହରରେ ଦେବୀଙ୍କର ପ୍ରାଣ ପ୍ରତିଷ୍ଠା କରାଇଥିଲେ । ମାଆଙ୍କର ସ୍ଥାନ ଥିଲା କୋଚିଲା ଗଛ ମୂଳରେ । କାଳକ୍ରମେ ମରହଟ୍ଟାମାନେ କଟକ ନଗରର ସୁବେଦାର ପଦରେ ଅଧିଷ୍ଠିତ ହୋଇ କଟକ ସହରରେ ମନ୍ଦିରମାନ ପ୍ରତିଷ୍ଠା କରିଥିଲେ । ଏହାର ଜ୍ୱଳନ୍ତ ଉଦାହରଣ – ତେଲଙ୍ଗା ବଜାରର ରଘୁନାଥ ଜୀଉ ମନ୍ଦିର ଓ ଝାଞ୍ଜିରୀ ମଙ୍ଗଳାଙ୍କ ମନ୍ଦିର । ବର୍ତ୍ତମାନ ଠାକୁରାଣୀ ବିଜେ କରିଥିବା ମନ୍ଦିରଟି ବିଡ଼ାନାସୀ କଟକରେ ଅବସ୍ଥାନ କରୁଥିବା ସୁବେଦାରଙ୍କ କୀର୍ତ୍ତି । ସେହିଦିନଠାରୁ ମନ୍ଦିରର ବିଜେସ୍ଥଳୀ ଛଡ଼ା କୌଣସି ଭୂସଂପତ୍ତି ନାହିଁ । ଯାହାହେଉ, ଧର୍ମପ୍ରାଣ ବଦାନ୍ୟ ବ୍ୟକ୍ତିଙ୍କର ଦାନରେ ଠାକୁରାଣୀଙ୍କର ନୀତି ସଂପନ୍ନ ହୋଇଥାଏ ।

ଆଜି ଯେଉଁ ମାଆ ଝାଞ୍ଜିରୀ ମଙ୍ଗଳାଙ୍କ ମନ୍ଦିର ଆମେ ଦେଖୁଛୁ, ତାହାର ଇତିହାସ ପ୍ରାଚୀନ ନୁହେଁ । ତଥାପି ବୟୋବୃଦ୍ଧ ଲୋକଙ୍କ ମୁଖରୁ ଯାହା ଶୁଣିବାକୁ ମିଳେ, ସେମାନେ ତାଙ୍କ ବାପା ଜେଜେବାପାଙ୍କଠାରୁ ଏହି ମନ୍ଦିର ଏପରି ତିଆରି ହୋଇ ରହିଥିବାର ଶୁଣିଛନ୍ତି । ଅବଶ୍ୟ ପରବର୍ତ୍ତୀ କାଳରେ ତାହାର ପରିବର୍ତ୍ତନ ଓ ରକ୍ଷଣାବେକ୍ଷଣ କରାହୋଇଛି । ମନ୍ଦିର ପ୍ରାଚୀନ କାଳରୁ ଯେପରି ଥିଲା ସେପରି ରହିଛି । ମନ୍ଦିର ସଂପର୍କରେ ମିଳୁଥିବା ଇତିହାସରୁ ଜଣାଯାଏ ଯେ, ବହୁକାଳ ପୂର୍ବେ ଆଜିର ଝାଞ୍ଜିରୀ ମଙ୍ଗଳା ଅଞ୍ଚଳ ନିଘଞ୍ଚ ଥିଲା, ସେଥିରେ ବାଘ, ଭାଲୁ ରହୁଥିଲେ । କାଳକ୍ରମେ ଦଳେ ଲୋକ ବଣ, ଜଙ୍ଗଲ କାଟି ସଫା କଲେ ଓ ଏହିପରି ବସତି ସ୍ଥାପନର ଶୁଭାରମ୍ଭ ହେଲା, କିଛି ଦିନ ପରେ ସେହି ଅଞ୍ଚଳକୁ ଜଣେ ବାବାଜୀ ଆସିଲେ । ଜଙ୍ଗଲ ମଧ୍ୟଭାଗରେ ଥିବା ଗୋଟିଏ ଝଙ୍କାଳିଆ ବରଗଛ ମୂଳରେ ନିଜର ଆସ୍ଥାନ ପ୍ରତିଷ୍ଠା କରି ରହିଲେ । ଭିକ୍ଷା ବୃତ୍ତି କରି ସେ ବାବାଜୀ ରହୁଥିଲେ ଓ ସେ ବରଗଛ ମୂଳରେ ସକାଳୁ ସଂଜ ବେଳଯାଏଁ ଧର୍ମ ଚର୍ଚ୍ଚା କରୁଥିଲେ । ଲୋକେ ବାବାଜୀଙ୍କଠାରୁ ଧର୍ମ ବିଷୟରେ କଥା ଶୁଣିବାକୁ ବାବାଜୀଙ୍କ ଆସ୍ଥାନ ଝଙ୍କାଳିଆ ବରଗଛ ମୂଳକୁ ଗଲେ ।

ଦିନେ ସେ ବାବାଜୀ ଦେଖିଲେ ଗୋଟିଏ ଝିଅ କଳାଶାଢ଼ୀ ଖଣ୍ଡେ ପିନ୍ଧି କୋଚିଲା ଗଛ ଉହାଡ଼ରେ ଠିଆ ହୋଇଛି । କିଛି କହୁନି । ଝିଅଟିର ମୌନତା ଦେଖି ବାବାଜୀ ପଚାରିଲେ, କିଏ ମା' ? ତୁ କିଏ ? କେଉଁଠୁ ଆସିଛୁ ? କାହିଁକି ଆସିଛୁ କହ ? ଝିଅଟି ପୂର୍ବ ପରି ମୌନ ରହିବାରୁ ବାବାଜୀ ମହାପ୍ରଭୁ ଉଠି ତା' ପାଖକୁ ଗଲେ । ଝିଅଟି କିନ୍ତୁ ଗଛର ଆର ପାଖକୁ ବୁଲି ପଡ଼ିଲା । ବାବାଜୀ ତା'କୁ ପଚାରିବା ପାଇଁ ବୁଲି ତା' ପାଖକୁ ଯାଆନ୍ତେ, ସେ ଠିକ୍ ଗଛର ଆର୍ ପଟକୁ ଚାଲିଗଲେ । ଦୂରରେ ଜଣେ ଲୋକ ଏ କଥା ଦେଖିଲା ଓ କିଛି ଲୋକ ଜମିଗଲେ ବାବାଜୀଙ୍କର ଏ ପ୍ରକାର ଲୀଳା ଦେଖିବାକୁ । ଲୋକ ଦୂରରେ ଦେଖିଲେ, ବାବାଜୀ ଝିଅଟିର ପଛେ ପଛେ ଗୋଡ଼େଇଛନ୍ତି । ବାବାଜୀ ମହାଶୟ ଝିଅଟିର କାନିଟିକୁ ଧରି ନେଇ ପଚାରିଲେ – ତୁ କିଏ ? ମୋ' ପାଖରେ ତୋ'ର କାମ କ'ଣ ? ଏହି ସମୟରେ ଲୋକେ ଗଛର ଆସ୍ଥାନ ପାଖକୁ ଆସି ଜମି ଯାଇଥିଲେ । ବାବାଜୀ ଲୋକଙ୍କୁ ପଚାରିଲେ – ଏ ଝିଅ କାହାର ? ମୁହଁ ନ ଦେଖିଲେ କେହି ଜାଣି ପାରିବେନି ବୋଲି



କହିଲେ । ବାବାଜୀ ମହାଶୟ ଲୋକଙ୍କୁ ଚାହିଁ ଓଢ଼ଣା ଖୋଲି ଦିଅନ୍ତେ, ଦେଖିଲେ ଝିଅଟି ପଥର ପାଲଟି ଯାଇଛି । ସେ ସମୟରେ ଏକ ସ୍ୱର କହୁଛି – ମୁଁ ମାନବୀ ନୁହେଁ, ମୁଁ ଦେବୀ, ମୋ' ନାଁ ମଙ୍ଗଳା । ମୋତେ ଆଜିଠାରୁ ଏ ଗ୍ରାମରେ ପୂଜା କର । ଏ ଘଟଣା ବିଜୁଳି ବେଗରେ ସର୍ବତ୍ର ବ୍ୟାପିଗଲା । ଲୋକେ ସେ ପାଷାଣ ପ୍ରତିମାରେ ସିନ୍ଦୂର ଲଗାଇଲେ, ପୂଜା କଲେ । ଏହି ପାଷାଣ ପ୍ରତିମା ମାଆ ମଙ୍ଗଳା ରୂପରେ ପୂଜା ପାଇଲେ ।

ମା' ମଙ୍ଗଳାଙ୍କ ପୂଜାର୍ଚ୍ଚନା କରିବା ଫଳରେ ଗ୍ରାମର ଉନ୍ନତି ହେବାକୁ ଲାଗିଲା । ଲୋକେ ମିଳିମିଶି ବିଚାରବିମର୍ଷ କଲେ । ମା' ମଙ୍ଗଳାଙ୍କ ପାଷାଣ ବିଗ୍ରହକୁ ଆଉ ବାବାଜୀଙ୍କ ସ୍ଥାନରେ ନ ରଖି ସେଠାରେ ଥିବା କୋଚିଲା ଗଛ ମୂଳରେ ଆସ୍ଥାନ ଜମାଇଲେ ।

ଲୋକମାନେ ଚଳପ୍ରଚଳ ହେଉଥିବା ବାଟରେ ଗୋଟେ ମସ୍ତବଡ଼ କଦମ୍ବ ଗଛ ଥିଲା । ଲୋକେ ଏଥର ଚିନ୍ତା କଲେ ମାଆ ମଙ୍ଗଳାଙ୍କୁ ଆଣି ଏଇ କଦମ୍ବଗଛ ମୂଳରେ ରଖିଦେଲେ ଆମେ ଯିବା ଆସିବା ରାସ୍ତାରେ ମାଆଙ୍କୁ ଦର୍ଶନ କରି ଜୁହାର କରିବା, ତେଣୁ ସେହି ଅନୁସାରେ ମାଆଙ୍କୁ କଦମ୍ବ ବୃକ୍ଷ ମୂଳକୁ ସ୍ଥାନାନ୍ତର କରାଗଲା । କିମ୍ବଦନ୍ତୀରୁ ଜଣାଯାଏ ଯେ ଥରେ ଗୋଟିଏ କୁଷ୍ଟ ରୋଗୀ ଏଇ ବାଟଦେଇ ଯାଉଥିଲା । ବୈଶାଖ ମାସ ଝାଂଜିଖରା, ରୋଗୀ ମଣିଷଟି କଷ୍ଟ ପାଇଲା । କଦମ୍ବ ମୂଳରେ ଥିବା ମାଆ ମଙ୍ଗଳାଙ୍କୁ ମନାସୀ କହିଲା – ମାଆ ତୁ ଯଦି ସତକୁ ସତ ଠାକୁରାଣୀ ହୋଇଥିବୁ, ମୋତେ ଭୟଙ୍କର କଷ୍ଟରୁ ଉଦ୍ଧରିବୁ । ମାଆ ଶୂନ୍ୟେ ଶୂନ୍ୟେ ସେ ରୋଗୀ ମଣିଷଟିକୁ ନିଜ କଦମ୍ବମୂଳ ଆସ୍ଥାନ ପାଖକୁ ଉଠାଇ ଆଣିଲେ ଓ ଛାଇରେ ଶୁଆଇ ଦେଲେ । ରୋଗୀ ନିଦରୁ ଉଠି ଦେଖିଲା ବେଳକୁ ତାହାର ଦେହର ଘା' ଘଉଡ଼ ଆଉ କେଉଁଠି ନାହିଁ । ସେ ସଂପୂର୍ଣ୍ଣ ଭାବରେ ସୁସ୍ଥ ହୋଇଯାଇଛି । ସେ ଲୋକଟି ମାଆଙ୍କର ଭକ୍ତ ହେଲା, ଝାଞ୍ଜି ଖରାରୁ ରକ୍ଷା କରି ବଡ଼ରୋଗରୁ ମୁକ୍ତ କରିଦେବାରୁ ମା'ଙ୍କ ନାଁ ହେଲା ମଙ୍ଗଳା ଓ କାଳକ୍ରମେ ଝାଞ୍ଜିରୀ ମଙ୍ଗଳା । ସାତ ସାହିରେ ଠାକୁରାଣୀ ବିତରଣ କରିବାର ଲୋକେ ଦେଖିଛନ୍ତି ।

ମା'ଙ୍କର ସେବା ନିଯୋଗ

ମା'ଙ୍କର ବାସନ୍ତୀ ଦୁର୍ଗାପୂଜା ମହାସମାରୋହରେ ପାଳନ କରାଯାଏ । ଦଶହରା ପୂଜାରେ ଷୋଡ଼ଶ ବେଶ, କାଳୀ ପୂଜା ତିଥି ଅନୁସାରେ ଅନୁଷ୍ଠିତ ହୁଏ । ପ୍ରତିବର୍ଷ ବୈଶାଖ ପୂର୍ଣ୍ଣିମାରେ ତିନି ଦିନ ବ୍ୟାପୀ ମହାଯଜ୍ଞ କରାଯାଏ । ପ୍ରତ୍ୟହ ଠାକୁରାଣୀଙ୍କ ପାଖରେ ଅନ୍ନଭୋଗ ଲାଗିହୁଏ । ସେବାୟତ (ମାଳି)ଙ୍କଦ୍ୱାରା ବଂଶାନୁକ୍ରମିକ ରୀତିରେ ଦୈନନ୍ଦିନ ପୂଜାକାର୍ଯ୍ୟ ପରମ୍ପରାର ସହିତ ସୂଚାରୁରୂପେ ସଂପନ୍ନ କରାଯାଏ । ଆଜକୁ ୪୮ ବର୍ଷ ତଳେ ମା'ଙ୍କର ମୁଖା ଖସି ପଡ଼ିଥିଲା । ସେଥିଲାଗି ମା'ର ନିର୍ଦ୍ଦେଶକୁ ଅପେକ୍ଷା କରାଗଲା । ତାଳପତ୍ର ଆଜ୍ଞାପତ୍ର ନୂତନ ଗଠନ ପାଇଁ ମସ୍ତକ ଉପରୁ ଖସିଲା । ନୂଆ ପିତ୍ତଳ ମୂର୍ତ୍ତି ଗଠନ ହେଲା । ପଶ୍ଚାତ୍ ଭାଗରେ ପୁରାତନ ମୂର୍ତ୍ତି ରହିଲା । ହଜାର ବର୍ଷ ତଳର ପ୍ରାଚୀନତମ ନଗର କଟକର କେନ୍ଦ୍ରସ୍ଥଳରେ ଆମ୍ବ୍ରା ରୂପରେ ବିରାଜିତ ଝାଞ୍ଜିରୀ ମଙ୍ଗଳାର ଐତିହ୍ୟ ସର୍ବଜନାଦୃତ । କଟକ ତଥା ଓଡ଼ିଶା ଏବଂ ଭାରତର ବହୁ ଉତ୍ଥାନ ଓ ପତନ ଭିତରେ ଝାଞ୍ଜିରୀ ମଙ୍ଗଳାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କଟକ ମହାନଗରର ପୂର୍ବ ଦିଗରେ ବାସ କରି ଝାଞ୍ଜିରୀ ମଙ୍ଗଳା ନାମ ହୋଇଛି ବିଖ୍ୟାତ । ମଙ୍ଗଳା ପଶ୍ଚିମମୁଖା ହୋଇ ବସିଛନ୍ତି । ବାମପାର୍ଶ୍ୱରେ ଅଛନ୍ତି ନୀଳକଣ୍ଠେଶ୍ୱର । ଦକ୍ଷିଣେ ଅଛନ୍ତି ଗୋପୀନାଥଜୀ ଠାକୁର ରାଧିକାଙ୍କୁ ସଙ୍ଗତରେ ଘେନି ଏବଂ ପୃଷ୍ଠଭାଗେ ଲକ୍ଷ୍ମୀନାରାୟଣ, ଶ୍ରୀରାଧାମାଧବ, ମଦନମୋହନ ସଙ୍ଗେ ହୋଇ ଏକ ମେଳ, ଦେବୀ ଜଗତଜନନୀ ଝାଞ୍ଜିରୀ ମଙ୍ଗଳା ମଙ୍ଗଳକାରିଣୀ । ଜଗତର କଳୁଷହାରିଣୀ । ତା' ପଣତ ଛାଇ ତଳେ ଯିଏ ରହିଛି ସଦା ସେ ନିର୍ଭୟରେ କାଳ କାଟିଛି । ବଡ଼ ପ୍ରତ୍ୟକ୍ଷା ଦେବୀ ସେ ।

ଆଦିମାତା, ଶଙ୍କରୀ, ଯୋଗରୂପା, ଯୋଗମାୟା, ଜଗତେଶ୍ୱରୀ, ଶିବାନୀ, ରୁଦ୍ରାଣୀ, ଭକତର ହିତେ ମଙ୍ଗଳମୟୀ ମା' ଝାଞ୍ଜିରୀ ମଙ୍ଗଳା ଯାହାକୁ ହୁଅନ୍ତି ସଦୟ, ଜ୍ଞାନ ତା' ହୃଦୁ ଉଦୟ ହୁଏ । ମଙ୍ଗଳମୟୀ, ଶକ୍ତିମୟୀ ବଡ଼ ପ୍ରତ୍ୟକ୍ଷା । ଭକ୍ତଜନ ଉଦ୍ଧାରି, ପାପୀ ଜନ ତାରିବା ପାଇଁ ପ୍ରତ୍ୟହ ରାତିରେ ସେ ବୁଲନ୍ତି । ତାଙ୍କର କୃପା ହେଲେ ମୂକ କଥା କହିବ, କାଲ ଶୁଣିବ, ଅନ୍ଧ ଦେଖିବ, ଛୋଟା ଚାଲିବ, ମୂର୍ଖ ପଣ୍ଡିତ ହେବ, ଦରିଦ୍ର ଧନୀ ହେବ, ଦୁର୍ବଳ ଶକ୍ତିଶାଳୀ ହେବ । ମାଆଙ୍କ ମାହାତ୍ମ୍ୟ ଲୋକ ଅଗୋଚର ନୁହେଁ । ପ୍ରତିବର୍ଷ ଦଶହରା ସମୟରେ ମାଆଙ୍କର ଷୋଡ଼ଶ ବେଶ ଯଥାକ୍ରମେ ରାଜକେଶ୍ୱରୀ, ସୁନାବେଶ, ଷୋଡ଼ଶୀ, ବ୍ରାହ୍ମଣୀ, ବୈଷ୍ଣବୀ, ରୁଦ୍ରାଣୀ, ଚାମୁଣ୍ଡା, ସରସ୍ୱତୀ, ଅନ୍ନପୂର୍ଣ୍ଣା, ଜୟଦୁର୍ଗା, ବନଦୁର୍ଗା, ମହିଷାମର୍ଦ୍ଦିନୀ ଓ ସୁନାବେଶ ଅନୁଷ୍ଠିତ ହୁଏ ।

ଗତ ପାଞ୍ଚବର୍ଷ ଧରି ଏକ ବିରାଟ ନୂତନ ମନ୍ଦିର ଅତ୍ୟନ୍ତ କାରିଗରୀ କୁଶଳୀରେ ନିର୍ମିତ ହୋଇ ସମଗ୍ର କଟକ ମହାନଗରର ଶ୍ରୀ ବୃଦ୍ଧି କରିଛି ।

ଗଜେନ୍ଦ୍ର ଭବନ, ଝାଞ୍ଜିରୀ ମଙ୍ଗଳା,
କଟକ – ୭୫୩୦୦୯





# ଶିଶୁ ସାହିତ୍ୟର ଜନକ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ

**ନବକିଶୋର ଶତପଥୀ**

ପୂଜ୍ୟ ପୂଜାର ବ୍ୟତିକ୍ରମ କେବେ
ଏ ସମାଜ କରେ ନାହିଁ
ସମାଜ ସେବାରେ ହଜେଇ ଦିଏ ଯେ
ଅସଲ ମହାତ୍ମା ସେହି ।

ଯାଜପୁର ଜିଲ୍ଲାର ହରିଦାସପୁରଠାରୁ ଅନତି ଦୂରରେ ଅଖ୍ୟାତ ପଲ୍ଲୀ ମୁରାରୀପୁର । ସେହି ଗ୍ରାମରେ ୧୯୦୩ ମସିହା ସେପ୍ଟେମ୍ବର ମାସ ୧୦ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ ଉପେନ୍ଦ୍ର ତ୍ରିପାଠୀ । ଦିନେ ଓଡ଼ିଶାର ସେ ଜଣେ ଶ୍ରେଷ୍ଠ କାଳଜୟୀ ଶିଶୁ ସାହିତ୍ୟିକ ଭାବେ ସୁନାମ ଅର୍ଜନ କରିପାରିବେ, ତାହା କିଏ ଜାଣିଥିଲା ? ତାଙ୍କ ରଚିତ 'ବେଙ୍ଗ ବାହାଦୂର' ଓଡ଼ିଶା ସାହିତ୍ୟ ଏକାଡେମୀ ଓ 'ପିଲାଙ୍କ ପଶୁପକ୍ଷୀ ପୁରାଣ' କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ବାଲ୍ୟ କାଳରୁ ଦୁଃଖ ଯନ୍ତ୍ରଣା ଅଭାବ ଅନଟନର ଅଗ୍ନିଦାହ ମଧ୍ୟରେ ଗତିକରି ସେ ନିଜ ସାଧନା ପଥରୁ ବିଚ୍ୟୁତ ନହୋଇ ଯେପରି ନୂତନ ସୃଷ୍ଟିର ସନ୍ଧାନରେ ତାଙ୍କ ଜିଜ୍ଞାସୁ ମନ ବ୍ୟାକୁଳ ହୋଇ ଉଠିଥିଲା । ସେ ନିଜେ ଜଣେ ସଫଳ କର୍ତ୍ତବ୍ୟ ପରାୟଣ ଆଦର୍ଶ ଶିକ୍ଷକ ଥିଲେ । ଶିକ୍ଷକ ଯଦି କବିଟିଏ ପାଲଟିଯାଏ, ତେବେ ତାର ସୃଷ୍ଟି ନୂତନ ଜୀବନର ଭାବାଦର୍ଶର ଯେ ସଙ୍କେତ ଦେଇପାରିବ ଏଥିରେ ସନ୍ଦେହ ନାହିଁ ।

ବିଭିନ୍ନ ସ୍କୁଲରେ ଶିକ୍ଷକତା କରି ଶେଷରେ ମଧୁପୁର ମାଇନର ସ୍କୁଲ, କଲଣକୁ ନିଜ ସାଧନାର ପୀଠ ରୂପେ ଆପଣେଇ ନେଇଥିଲେ । ସେହି ସମୟରେ ତିନିଜଣ ବିଜ୍ଞ କର୍ତ୍ତବ୍ୟନିଷ୍ଠ ଆଦର୍ଶ ଶିକ୍ଷକଙ୍କର ଏକତ୍ର ମିଳନରେ ମଧୁପୁର ବିଦ୍ୟା ନିକେତନ ସମଗ୍ର ଯାଜପୁର ଜିଲ୍ଲାରେ ଏକ ଆଦର୍ଶ ବିଦ୍ୟାଳୟରେ ପରିଣତ ହୋଇଥିଲା । ଏହି ବିଜ୍ଞ ଶିକ୍ଷକ ହେଉଛନ୍ତି ସ୍ୱର୍ଗତ ବୈକୁଣ୍ଠ ରଥ, ସ୍ୱର୍ଗତ ଚକ୍ରଧର ଶରଣ ଓ କବି ଉପେନ୍ଦ୍ର ତ୍ରିପାଠୀ ।

କୁନିକୁନି ଶିଶୁମାନଙ୍କ ଗହଣରେ ସମୟ ବିତେଇ ସେ ପାଇଥିଲେ ଅପୂର୍ବ ଆନନ୍ଦ, ପ୍ରଚୁର ଶାନ୍ତି ଓ ଆତ୍ମତୃପ୍ତିରେ ହୋଇଥିଲେ ବିଭୋର । ଶିଶୁମାନଙ୍କ ନିଷ୍ପାପ ହସ ଓ ମମତାପୂର୍ଣ୍ଣ କଳିରେ ଆତ୍ମହରା ହୋଇ, ସେମାନଙ୍କ ମୁହଁରେ ଚେନାଏ ହସ ଭରିଦେବା ପାଇଁ ରାତ୍ରୀର ସ୍ୱଚ୍ଛ ଆଲୋକରେ ଲେଖି ଚାଲନ୍ତି ରାଶିରାଶି ଶିଶୁ ମନୋମୁଗ୍ଧକର କବିତା । ତାଙ୍କ ଦ୍ୱାରା ପ୍ରଣୀତ ପ୍ରାୟ ୪୦ରୁ ଊର୍ଦ୍ଧ୍ୱ ପୁସ୍ତକଗୁଡିକ ମଧ୍ୟରେ କୁହୁକୁହୁ, ସୁଲୁସୁଲୁ, ରୁଣୁଝୁଣୁ, ଗୁଣୁଗୁଣୁ, କୁଳୁକୁଳୁ, କଷିକାକୁଡି, ଘଣ୍ଟିଘାଗୁଡି, ହସଚାଙ୍ଗୁଡି, କଳାବଉଦ, ମୂଷିମାଉସୀ, ଶିଶୁ ଶଙ୍ଖାଳି, ବେଙ୍ଗବାହାଦୂର, କହିଜାଣିଲେ କଥା ସୁନ୍ଦର, ହଜିଲା ବଳଦ ଖୋଜିଲା ଠେଙ୍ଗ, ଅକଲ ମକଲ ଟକଲ ଟିଆଁ, ପିଲାଙ୍କ ପଶୁପକ୍ଷୀ ପୁରାଣ, ଉଦୟଭାନୁ, ଡିଣ୍ଡିମ ଓ ଆଶୁତୋଷ ରାମାୟଣ ପ୍ରଭୃତି ଶିଶୁମନୋମୁଗ୍ଧକର କବିତା ପୁସ୍ତକ ।

ଆଜିର ଶିଶୁ ଆଗାମୀ କାଲିର ଭବିଷ୍ୟତ । ତେଣୁ ସେମାନଙ୍କୁ ଉପଯୁକ୍ତ ଭାବେ ଗଢି ତୋଳିବା ଜଣେ କର୍ତ୍ତବ୍ୟନିଷ୍ଠ ଶିକ୍ଷକର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । ତେଣୁ ସେମାନଙ୍କ ମନରେ ନିର୍ମଳ ଦେଶାତ୍ମଭାବ ଓ ଜାତୀୟ ସଂହତି ତଥା ଗ୍ରାମ୍ୟ ଜୀବନର ସ୍ନେହଶ୍ରଦ୍ଧାର କାହାଣୀ ତାଙ୍କ କଳାତ୍ମକ ଭାବଭଙ୍ଗୀର ପୁଷ୍କଳ ପୁଷ୍କଳ ପରିପ୍ରକାଶ ହୁଏ ତାଙ୍କ କବିତା ମାଧ୍ୟମରେ । 'କୁହୁକୁହୁ' କବିତା ପୁସ୍ତକର 'ଦେଶ ଓ ଦଶ' କବିତାରେ କବିଙ୍କ ବର୍ଣ୍ଣନା ଚାତୁରୀ ଲକ୍ଷଣୀୟ ।

'ମୋ ଦେଶଟି ଓଡ଼ିଶା
ତୁଳିଲେ ପାଖ ପଡିଶା
ମୋ' ଦେଶଟି ଶେଉଳ ହେଲେ
ଆଉ ଗୁଡିକ ଗଡିଶା ।



ଯୁଆଡେ ଦେଖ ଶ୍ୟାମଳ କ୍ଷେତ
ନୟନ ମନ କରଇ ପୂତ
କୋଟି ପୁଅଙ୍କୁ ଯୋଗାଇ ଭାତ
ଆନର ଆଜି ଭରସା
ମୋ' ଦେଶଟି ଓଡ଼ିଶା ।
ମୋ' ଭାଇଟି ଓଡ଼ିଆ
ଥିଲାରେ ଦିନେ ବଡିଆ
ମଣୁଥିଲା ସେ ରଣଭୂଇଁକୁ
ପିଲାଙ୍କ ଖେଳ ପଡିଆ ।'

ପ୍ରଭୁ ଜଗନ୍ନାଥ ଉତ୍କଳର ପ୍ରାଣକେନ୍ଦ୍ର । ଜଗନ୍ନାଥ ସଂସ୍କୃତି ସାରା ବିଶ୍ୱରେ ପ୍ରସାରିତ । ଭକ୍ତର ମାନ ରଖିବା ପାଇଁ ପ୍ରଭୁ ସୈନିକ ବେଶରେ ମାଣିକ ଗଉଡୁଣୀ ହାତରୁ ଦହିପିଇ କାଞ୍ଚି ଯାତ୍ରା କରିଥିଲେ । କବିଙ୍କ ମନମତାଣିଆ ଭାଷାରେ–

'ଦହି ନବ କିଏ ନିଅ ଗୋ
ବସାଦହି ମୋର ଘିଅ ସରସର
ଶୋଷ କଲେ ପୋଷେ ପିଅ ଗୋ,
ଏହି ରୂପେ କେତେ ଡାକି ଯାଉଥିଲା
ଗଉଡୁଣୀ ବୁଢୀ ସେଦିନ
କି ଯୋଗରେ ତାର ରାତି ପାହିଥିଲା
ଆହାକି ସେଦିନ ସୁଦିନ ।

ସେହିପରି–

'ତୋ ଦେଶ ଜଗତେ ସାରରେ କାଳିଆ
ତୋ ଦେଶ ଜଗତେ ସାର
ମାଆ ମାଆ କହି
ପାଦ ଦିଏ ଧୋଇ
ନୀଳବଙ୍ଗ ପାରାବାରରେ କାଳିଆ
ନୀଳବଙ୍ଗ ପାରାବାର ।

ଅଝଟିଆ ଶିଶୁକୁ ନାନାବାୟା ଗୀତ ଶୁଣାଇଲେ ସେ ମନ୍ତ୍ରମୁଗ୍ଧ ପରି ମାଆର କୋଳରେ ଶାନ୍ତିରେ ଶୋଇଯାଏ । କବିଙ୍କ ରଚିତ 'ମା'ର ଶିଶୁ ଶୁଆଗୀତ' ଶୀର୍ଷକରେ–

'ଧନ ମଣିରେ ଧନମଣି ତୁ ଶୋଇପଡରେ ଧୀରେ
ବୁଜିଲେ ଆଖି ଦେଖିବୁ ଧାଇଁ– ଆସିବେ କେତେ ବୀରେ ।
ବାରବାଟୀର ବଟଛାଇରେ ବୀରରୁ ଦଳେ ବସି
ବାଉଥିବେରେ ବୀରବାଇଦ ମୁରୁକି ହସି ହସି ।
ନାଚୁଥିବେରେ ଥୋକାଏ ଧରି ଧନୁ ଖଡକ ଢାଲ
ବାହୁରେ ବାହୁ ମିଳାଇ ନେଇ ଦଳେ ଓଡ଼ିଆ ମାଲ ।'

ସେହିପରି ଶିଶୁକୁ ବର୍ଷମାସ ତଥା ପର୍ବପର୍ବାଣି ବିଷୟରେ ଅବଗତ କରାଇବା ଲକ୍ଷ୍ୟରେ କବିଙ୍କ 'ବାରମାସୀ' କବିତାର ଏକ ପଂକ୍ତି ଉଦ୍ଧାର କରାଗଲା–

'ବଇଶାଖେ ଟାଣଖରା
ଖରା ତାପ ପାଇ ତାତଇ ଧରା
ଶୁଖିଯାଏ ପାଣି ଝରା ।
ଜ୍ୟେଷ୍ଠ ମାସେ ରଜ ଦୋଳି
ଘରେ ଘରେ ଚୁଆ ଚନ୍ଦନ ଗୋଳି
ହେଉଥାନ୍ତି ବୋଳା ବୋଳି ।
ଆଷାଢରେ ପାଣି ବରଷେ
ଚଷା ଭାଇ କ୍ଷେତ ବହୁଡି ବସେ
ଗୀତ ଗାଇ ନାନା ରସେ ।'

କୃଷକ ଦେଶବାସୀଙ୍କୁ ଖାଦ୍ୟ ଯୋଗାଇ ସେମାନଙ୍କ ଜୀବନ ରକ୍ଷା କରେ । ବର୍ଷା ହେଲେ ଭଲ ଫସଲ ଅମଳ ହୁଏ । ପ୍ରଚୁର ବର୍ଷା ହେବା ନିମନ୍ତେ କବି ବ୍ୟାକୁଳ ଚିତ୍ତରେ ବର୍ଣ୍ଣନା କରିଛନ୍ତି–

'ଆ–ବଉଦ ଦେ ପାଣି
ଚଷା ଭାଇର ମନଜାଣି
ଚଷା ଭାଇ ଖୁସି ମନେ ଚଷିବ କ୍ଷେତ
ଯା–ହିତେ ରହିଛି ଆମ ସଭିଙ୍କ ହିତ
ଦେ–ରେ ପାଣି
ଡାକିଡାକି ତଣ୍ଟି ମୋର ଶୁଖି ଗଲାଣି ।'

ମାଆ ଏବଂ ମାତୃଭୂମି ସ୍ୱର୍ଗଠାରୁ ବଡ । ମାତୃଭୂମି ପ୍ରତି ମମତା ଯାହାର ହୃଦୟରେ ନଥାଏ, ସେ ଅଜ୍ଞାନୀ ଅଟେ । ମାତୃଭୂମି ପ୍ରତି ଶିଶୁର ମନକୁ ଆକୃଷ୍ଟ କରିବା ପାଇଁ କବି କବିତା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ।

'ମାଆ ମାଆ ବୋଲି ତୁହାଇ ତୁହାଇ
ଡାକୁରେ କହ୍ନାଇ ମୋତେ
ମାଆ ପରା ତୋର ଉତ୍କଳ ଜନନୀ
କୋଳରେ ଧରିଛି ତୋତେ ।
ଫୁଲଫଳେ ତୋର ଶ୍ୟାମଳା ଜନନୀ
କୋମଳ ଶ୍ୟାମଳ ଏତେ ?
ଢେଉ ତୋଳି ତୋଳି ସମୀର ଖେଳଇ



କାହାର ଶ୍ୟାମଳ କ୍ଷେତେ ?
ଗଗନେ କାହାର ତାରା ଦଳେ ହସେ
ଏଡିକି ବିମଳ ଚାନ୍ଦ ?
ସନ୍ତାନରେ କିଏ ସ୍ନେହରେ ଛନ୍ଦଇ
ପକାଇ ମୋହନ ଫାନ୍ଦ ।'

ପିଲାଟି ବେଳରୁ ଶିଶୁ ମନରେ ସାହସ ଭରିଦେଲେ ସେ ଅସମ୍ଭବକୁ ସମ୍ଭବରେ ପରିଣତ କରିପାରିବ । କବିଙ୍କ 'ରୁଣୁଝୁଣୁ' ପୁସ୍ତକର 'ବାଣୁଆଝିଅ' କବିତା ଶୀର୍ଷକରେ–

ଥିଲା ଏକ ବାଣୁଆ
ହାତ ତାର ଟାଣୁଆ
ଉଡିଗଲା ଚଢେଇ
ତଳେ ଦିଏ ଝଡେଇ ।
ଶର ଯୋଖେ ଯାହାକୁ
କିଏ ରଖେ ତାହାକୁ ?
ବାଘ ହେଲେ ହଟିବ
'ମଲିମଲି' ରଟିବ ।

ଶିଶୁଙ୍କ ମନରେ ଚେନାଏ ହସ ଭରିଦବା ଉଦ୍ଦେଶ୍ୟରେ କବିଙ୍କ ହାସ୍ୟରସାତ୍ମକ କବିତା 'ସତ କଥାରୁ ଫାଳେ' ପାଠକରି ଶିଶୁ ହସି ହସି ବେଦମ ହୋଇଯିବ ।

ମାଇଲା ଜଣେ ସହିଲା ଜଣେ
ଅଇଲା ଜଣେ ଧାଇଁ
କିଏ ମାଇଲା କିଆଁ ମାଇଲା ?
ହୋଇଲା ଖାଲି ବାଇ ।
ମତେଇ ଦେଲା ତତେଇ ଦେଲା
ବତେଇ ଦେଲା ବାଟ
ବାହାପିଆଟା ଲାଗିଲେ ଦୁହେଁ
ଦେଖିବ ବସି ନାଟ ।
ସତକୁ ସତ କଥାରେ ତା'ର
ବୋକାଏ ଗଲେ ଭୁଲି
କଚେରୀ ହତା ମାଡି ନଥିଲେ
ଅଇଲେ ଏବେ ବୁଲି ।
ମାମଲା କଲେ ପଇସା ଦେଲେ
ମରିଲା ଗୋଡୁ ପାଣି
ମାମଲ କଲେ କଅଣ ହୁଏ
ପାରିଲେ ଏବେ ଜାଣି ।'

ଶିଶୁ ଫୁଲକୁ ଆଦର କରେ । ଫୁଲ, ଫଳ, ପନିପରିବା ସେ ତା ପରିବେଶ ମଧ୍ୟରେ ଦେଖିବାକୁ ପାଏ, ତା'ର ଜିଜ୍ଞାସୁ ମନରେ ପ୍ରେରଣା ଭରି ତା'ର ସୃଜନୀ ଶକ୍ତିର ବିକାଶ ଘଟାଇବା ଲକ୍ଷ୍ୟରେ କବିଙ୍କ 'ଗୁଣୁଗୁଣୁ' ପୁସ୍ତକର 'କଇଁ ଫୁଲ' କବିତାରେ–

'ରାତିରେ ଫୁଟଇ କଇଁ ଗୋ ବଉଳ
ରାତିରେ ଫୁଟଇ କଇଁ
ସକାଳ ପହରେ ଖରା ଆସିଗଲେ
ମଥା ତା' ପଡଇ ନଇଁ ଗୋ ବଉଳ
ମଥା ତା' ପଡଇ ନଇଁ ।
ଚାନ୍ଦ ସଙ୍ଗେ ତାର ଖେଳ ବାର ମାସ
ଚାନ୍ଦ ପରି ତା'ର ମନ ଖୋଲା ହସ
ଚାନ୍ଦ ପରି ତାର ରୂପ ଝଲ ମଲ
ଚାନ୍ଦକୁ ଥାଏ ସେ ଚାହିଁ ଗୋ ବଉଳ
ଚାନ୍ଦକୁ ଥାଏ ସେ ଚାହିଁ ।

ବାଡିରେ ବିଭିନ୍ନ ଜାତିର ପନିପରିବା ଫଳେ । କବିଙ୍କ 'ପରିବା' କବିତାରେ–

'ବୋଇତି କଖାରୁ ତରକାରୀ
ଅଜା କହେ ନାତି ମଜା ଭାରି ।
ବାଡି ବାଇଗଣ ଫାଳ ଭଜା
ନାତି କହେ ଅଜା ଭାରିମଜା ।
ସାରୁ କରେ ପାଟି ଗଲଗଲ
ଖଟା ଖାଇଦେଲେ ହୁଏ ଭଲ ।'

ପାଠପଢିବା ସହିତ ପାଠ୍ୟୋପକରଣଗୁଡିକର ଯତ୍ନନେବା ଶିଶୁର ପ୍ରଧାନ କର୍ତ୍ତବ୍ୟ । ଶିଶୁ ମନରେ ପାଠପଢିବା ପାଇଁ ପ୍ରେରଣା ଭରିଦେବା ଉଦ୍ଦେଶ୍ୟରେ କବିଙ୍କ 'ଗୁଣୁଗୁଣୁ' କବିତା ପୁସ୍ତକର 'ପାଠପଢା ଗୀତ'ଟି ଶିଶୁର ହୃଦୟସ୍ପର୍ଶୀ ହୋଇପାରିବ ।

ପଢିବାରେ ଭାଇ ପଢିବା
ଦେଶକୁ ଆମର ଗଢିବା
ପାଠୁଆ ରାଇଜ କରିଲେ
ଆମେ ପିଲେ ଯେବେ ପାଠୁଆ ହୋଇବା
ନଥିବ କେ' ତାହା ସରିରେ
ମୁକୁତା ପଡିବ ଝରିରେ
ପାରିବ କେ ତା ଧରିରେ ?



ସେହିପରି 'କଲମ ଆଉ କାଳି' କବିତାରେ–

'କଲମ ଆଉ କାଳି
କେତେ ଯେ ଆମେ ଭାଙ୍ଗୁଛୁ ନିତି
କେତେ ଦେଉଛୁ ଢାଳି ।
ଅଳପ ମୂଲେ ଦୁଇଟି ମିଳେ
ଲେଖା ଲେଖିରେ କାମଟି ଚଳେ
କଲମ କାଳି ନଷ୍ଟ କଲେ
ବାପା ଦିଅନ୍ତି ଗାଳି ।'

ଶିଶୁ ଖେଳ ପ୍ରିୟ । ଖେଳରେ ମଜ୍ଜିଯାଇ ଭୋକ ଶୋଷ ଭୁଲିଯାଆନ୍ତି । ଏପରିକି ଗୁରୁଜନମାନଙ୍କ ଆକଟ ନମାନି ଖେଳକୁଦରେ ଧ୍ୟାନ ଦେଇଥାଆନ୍ତି । ଖେଳ ମାଧ୍ୟମରେ ଶିଶୁ ଅନେକ ଶିକ୍ଷା ଲାଭ କରିଥାଏ । କବିଙ୍କ 'ଖେଳ' କବିତାରେ–

'ଭାଇ ଭଉଣୀ ନିଇତି ଆମେ
ଖେଳୁରେ କେତେ ଖେଳ
ଖେଳର ବେଳେ ବେଜାଏ ମାତି
ପାରୁନା ଜାଣି ବେଳ ।
ଧୂଳିରେ ଭାତ ତିଅଣ କରୁ
ମହୁର କ୍ଷୀରି ପିଠା
ଖାଇଲେ ପୁଣି ମିଛି ମିଛିକା
ପାଟିକୁ ଲାଗେ ମିଠା ।'

ଶିଶୁ ଖାଦ୍ୟ ପ୍ରିୟ । ବର୍ଷା ଋତୁରେ ଗରମାଗରମ ମୁଢି ସାଙ୍ଗକୁ ନଡିଆ ଖାଇବାର ମଜା ମନରୁ ଭୁଲି ପାରେନା । ସେହିପରି ଛେନା ଗୁଡ ଚକଟା ଏକ ସୁସ୍ୱାଦୁ ଖାଦ୍ୟ । ଦହିଚୁଡା ଓ ଗୁଡ ବିଶେଷତଃ ବ୍ରାହ୍ମଣମାନଙ୍କର ପ୍ରିୟଖାଦ୍ୟ । କବିଙ୍କର 'କୁଳୁକୁଳୁ' ପୁସ୍ତକର 'ମୁଢି ନଡିଆ' ଶୀର୍ଷକ କବିତାଟି ବେଶ୍ ଆକର୍ଷଣୀୟ ।

'ମୁଢି ନଡିଆରେ ମୁଢି ନଡିଆ
ତୁମେ ଦୁହେଁ କିଆଁ ଏତେ ବଢିଆ
ବାଇପରି ହୋଇ ଆମେ ଯାଉଁ ଧାଇଁ
ଦାଣ୍ଡ ପଟେ ଯେବେ ଡାକେ ଗୁଡିଆ ।

ମୁଢି ନଡିଆରେ ମୁଢି ନଡିଆ
ମୁଢି ଭାଜିବାକୁ ଲୋଡା ଘଡିଆ
ବାଲି ଖରଖର ମୁଢି ଭରଭର
ଛୁରୀ ନୋହିଲେ କି ଛାଡେ ନଡିଆ ।'

କବିଙ୍କ 'କହି ଜାଣିଲେ କଥା ସୁନ୍ଦର' ପୁସ୍ତକର 'ଛେନାଗୁଡ' କବିତାରେ–

'ଛେନା ମାଉସୀ ଛେନା ମାଉସୀ
କୁଆଡେ ଗଲୁ ଆସି
ଗୁଡ ମଉସା କହିଲା କାଳେ
ତୁଉଟା ତାର ଦାସୀ ?
ଛେନା– ସେଇ କଥାଟା ପୁଅରେ
କାନକୁ ଟିକେ ନିଅରେ
ତାହାର ପାଇଁ କହୁଚି ଦିନେ
ଗଳାରେ ଦେବି ଫାସି
ମୁଁ କାଳେ ତାର ଦାସୀ ?

'ଆମେ ଦହି ଚୁଡା ଗୁଡ' କବିତାଟି ଶିଶୁ ମନରେ ଅପାର ଆନନ୍ଦ ସୃଷ୍ଟି କରେ ।

'ଆମେ ଦହିଚୁଡା ଗୁଡ
ଦେଖି ନପାରି ଥଟ୍ଟା କରି
ନିନ୍ଦେ ସିନା ମୂଢ ।
ସୁଖରେ ଥାଉ ତିନୋଟି ସାଥୀ
ବସିଲେ କେହି ପତର ପାତି
ବିଶେଷତଃ ବ୍ରାହ୍ମଣ ଜାତି
ଯତ୍ନେ ହେଉ କୁଢ
ଆମେ ଦହିଚୁଡା ଗୁଡ ।
ବହିରୁ ହୁଡା ପରିଧି ଚୁଡା
କେନ୍ଦ୍ରଧର ଗୁଡ
ମନ ଲଗେଇ ଖୋଜିଲେ ଭାଇ
ଗଉଡ ଘରେ ଦହିକୁ ପାଇ
ଚୁଡାର ବସା କେଉଟ ସାହି
ଗୁଡିଆ ଘରେ ଗୁଡ
ଆମେ ଦହିଚୁଡା ଗୁଡ ।'

କବିଙ୍କ ରଚିତ 'କଥା ବଡ କି ମଥା ବଡ' କବିତାଟି ବେଶ୍ ଶିକ୍ଷଣୀୟ । ଯିଏ ବନେଇ ଚୁନେଇ କହିପାରେ ସିଏ ସବୁଠି ଆଦର ପାଏ ।

'ଦେଖୁଛେ ଆଜି କହୁଛି ଯିଏ
କଥା କେଇଟା ବାଗେଇ
ଯେତେ ଯେଉଁଠି ଆଗରେ ଥାଉ
ଯାଉଛି ସିଏ ଆଗେଇ ।



କଥା କହିବା ଉପରେ ତେଣୁ
ଆଗେଇ ଯିବା ରହୁଛି
ବିଦେଇ ଭୋଇ ପୁଅକୁ ତାର
ବୁଝେଇ ଦିନେ କହୁଛି ।'

ବର୍ତ୍ତମାନ ବିଜ୍ଞାନ ଯୁଗରେ ବୈଜ୍ଞାନିକମାନେ ଅସମ୍ଭବକୁ ସମ୍ଭବରେ ପରିଣତ କରି ପାରିଛନ୍ତି । ବିଜ୍ଞାନର ଜୟଯାତ୍ରା ଆଜି ମହାକାଶରେ ଆଗେଇ ଚାଲିଛି । ମଣିଷ ଚନ୍ଦ୍ରରେ ରହି ଗବେଷଣା କରିବାରେ ସମର୍ଥ ହେଲାଣି । କବିଙ୍କ 'ବିଜ୍ଞାନ ଯୁଗ' କବିତା ୧୯୫୮ ମସିହାରେ ଲିଖିତ ।

'ଚନ୍ଦ୍ର ନେଇ ଚାଲିଛି ଖେଳ
ଏ କେଉଁ ବେଳ
ପାରୁଛ ପିଲେ ଠଉରି ?
ବାହାଘରିଆ ହାବେଳି ବାଣ
ଛୁଟୁଛି ଜାଣ
ତା'ପରେ ଚକା ଭଉଁରୀ ।
ବିଜ୍ଞାନର ଯୁଗଟା ଏଇ କହିବ କିଏ
କଅଣ ହେବ ପଛକୁ ?
ଗୋଟାଏ କିଛି କଦର କରି
ମଣିଷ ପରି
ଚଲାଇ ଦେବେ ଗଛକୁ ।
ନୋହିଲା କଥା ହୋଇଲା ହବ
ଜୀଇବ ଶବ
ଆଉ ଯେ କେତେ କଅଣ ।
ଦେଖିବ ତୁମେ ଏଇଠି ବସି
ମୁରୁକି ହସି
ଏବର ଯାହା ଗହନ ।'

ପୃଥିବୀର ଆକୃତି ସମ୍ପର୍କରେ ଶିଶୁମାନଙ୍କୁ ଅବଗତ କରାଇବା ନିମନ୍ତେ କବି ଲେମ୍ବୁ, ଅଣ୍ଡା ଓ ପେଣ୍ଡୁର ଚମତ୍କାର ତୁଳନା କରିଛନ୍ତି ।

'ବୋଲ ହରିବୋଲ
ଲେମ୍ବୁ ଅଣ୍ଡା ପେଣ୍ଡୁ ପରି ପୃଥିବୀଟା ଗୋଲ
ସୂର୍ଯ୍ୟ ଗୋଲ ଚନ୍ଦ୍ର ଗୋଲ
ତାଙ୍କ ଭାଇ ପୃଥିବୀ ଗୋଲ
ନାହିଁ ଗଣ୍ଡଗୋଳ
ହରିହରି ବୋଲ ।'

ଫୁଟିଥିବା ଫୁଲ, ପଶୁପକ୍ଷୀ ଆଦି ପ୍ରାତ୍ୟହିକ ଜୀବନରେ ଶିଶୁ ଏମାନଙ୍କ ସହ ପରିଚିତ ହୋଇଥାଏ । 'କୁନୁକୁନୁ' ପୁସ୍ତକର 'ଗାଈ' କବିତାରେ–

'ଗାଈ, ଘାସ କୁଟା ଖାଇ
ଗୁହାଳରେ ଥାଇ
ଦୁଧ ଦେଉ ଆମକୁ
ସେଇଥିରୁ ବଳ ପାଇ
ଅଣ୍ଟା ଭିଡୁ କାମକୁ ।'

'ସୁଲୁସୁଲୁ' ପୁସ୍ତକର 'ଫୁଲ' କବିତାରେ–

'ଦେଖ ମା ଦେଖ ଆଣିଛି
କେଡେ ସୁନ୍ଦର ଫୁଲ
ବାପା କହୁଥିଲେ ଜଗତେ
ନାହିଁ ଏହାର ମୂଲ ।
କୋମଳ ପାଖୁଡ଼ାଗୁଡ଼ିକ
ଦିଶେ କେମନ୍ତ ତୋରା
ବସନ୍ତରେ ବେଶୀ ଫୁଟଇ
ଲାଗି ମଳୟ ଚୋରା ।'

ଲୋକକଥାକୁ ଆଧାର କରି କବି ନିଜସ୍ୱ ମୌଳିକ ଢଙ୍ଗରେ ନୂତନତାର ଭାବାଦର୍ଶ ସୃଷ୍ଟି କରିବାରେ ସିଦ୍ଧହସ୍ତ । 'ଘଣ୍ଟିଘାଗୁଡ଼ି' ପୁସ୍ତକର 'ତିନିତୁଣ୍ଡରେ ଛେଳି କୁକୁର' କବିତାରେ–

'କାଶିଆ ବିଶିଆ ନିଶା
ତିନିକୁ ତିନିହେ ଠକ ଶିରୋମଣି
ଠକିବା ତାଙ୍କର ପେଶା ।
ବୁଲି ଯାଇଛନ୍ତି ଦିନେ
ଦୂରରେ ଦେଖିଲେ ଛେଳିଟିଏ ଧରି
ଲୋକଟିଏ ଆସେ ଏଣେ ।
ବିଶିଆ କହିଲା ଭାଇ
ଚାହିଁଛ କଅଣ ? ଠକେଇବା ଆସ
ଛେଳିକୁ କୁକୁର କହି ।''

ସାର୍ଥକ କବିଟିଏ ପ୍ରଥମେ ତା'ର ପରିବେଶ, ନିଜଗାଁ ଓ ପ୍ରିୟଜନମାନଙ୍କୁ ଭଲପାଇ ଶିଖିଥାଏ । କବି ନିଜ ଗ୍ରାମ 'ମୁରାରୀପୁର' ଗ୍ରାମ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି–

ମୁରାରୀ ପୁର
ହରିଦାସପୁରୁ ଅଳପ ଦୂର



ମାଇଲ ଦେଢଟି ବାଆଁକୁ ଘୂର
ଦେଖିବ ସେଠେଇଁ ଏକ ଠାକୁର
ମାରି କାଳେ ପ୍ରଭୁ ମୁର ଅସୁର
ରହିଥିଲେ ସେଠି ରଚି ସେ ପୁର ।'

କବିଙ୍କ 'ବେଙ୍ଗ ବାହାଦୂର' ପୁସ୍ତକଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । 'ଫୁଲେଇ ବେଙ୍ଗ' କବିତାରେ–

'ବଙ୍ଗସାଗରୁ ବେଙ୍ଗ ଗୋଟିଏ
କଟକ ଦେଖିବା ପାଇଁ
ଆସିଥିଲା ଦିନେ ବାଟରେ ଭେଟିଲା
ଆପଣା ଗୋଷ୍ଠୀ ଭାଇ ।
ସିଏ ବି ସେ ରୂପେ ମହାନଦୀ ଛାଡି
ପୁରୀ ଯାଉଥିଲା ଦେଖି
ଶୁଣି ସେ କାଳେ ଦିନ ଧରିଥିଲେ
ଆଗରୁ ପତ୍ର ଲେଖି ।

କବିଙ୍କ ଜନ୍ମସ୍ଥାନ ମୁରାରୀପୁରଠାରୁ ଅଳ୍ପଦୂରରେ ସୁପ୍ରସିଦ୍ଧ ଶୈବପୀଠ ଶ୍ରୀ ମହାବିନାୟକ । 'ଡାଳରେ ମାଙ୍କଡ ମାରଇ ଡିଆଁ' ପୁସ୍ତକର 'ଶ୍ରୀ ମହାବିନାୟକ' ଶୀର୍ଷକ ଆଧ୍ୟାତ୍ମିକ କବିତା କୋମଳମତି ଶିଶୁ ମନରେ ଧାର୍ମିକ ଭାବନା ଜାଗ୍ରତ କରିପାରିବ ।

'ନୀଳ ଏକ ପାହାଡ ନାମ ତାର ବରୁଣା
କୋଳେ ଏକ ଦେଉଳ ତାହା ଅତି ପୁରୁଣା
ଶ୍ରୀ ମହାବିନାୟକ ପ୍ରଭୁ ତହିଁ ଦେବତା
ଦୁଃଖୀ ଦୁଃଖ ହରନ୍ତି ଜଗତର କରତା ।'

ସେହିପରି 'ଠାକୁର ଘରେ କିଏରେ' ଏକ ବ୍ୟଙ୍ଗାତ୍ମକ କବିତା । ଏଥିରେ ଚିତ୍ରକଳ୍ପର ଝଲକ ଦେଖିବାକୁ ମିଳେ–

'ଠାକୁର ଘରେ କିଏରେ ?
କଦଳୀ ଖାଇନାହିଁ ମୁଁ,
ଜାଣିଲି ଚୋର ଯିଏରେ
କହିଲୁ କିଏ ବୋଉ ତୁ
କହିବି କିଏ ଆସିଲୁ ଏଣେ
ବସେଇ ଦିଏ ପିଠିରେ ପଣେ
ଏତେକେ ପୁଅ ଛାନିଆ
ମୁହଁକୁ ପୋତି ମଉନ ଅତି
ଆଙ୍ଗୁଠି ଯାକ ପାନିଆଁ ।'

'ଶିଶୁତୋଷ ରାମାୟଣ' କବିଙ୍କର ସର୍ବଶ୍ରେଷ୍ଠ କୃତି । ପୌରାଣିକ ରାମାୟଣ ବିଷୟବସ୍ତୁକୁ ନିଜସ୍ୱ ରଚନା ଶୈଳୀରେ ଶିଶୁମନ ଛୁଆଁ ଭାବ ଓ ସରଳ ଭାଷାରେ ରଚନା କରି ଉତ୍କଳ ଶିଶୁ ସାହିତ୍ୟ କ୍ଷେତ୍ରରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲେ କବି । ଆକାଶବାଣୀ, କଟକ କେନ୍ଦ୍ରରୁ ଏହା ଧାରାବାହିକ ରୂପେ ପ୍ରସାରିତ ହୋଇ ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରିପାରିଥିଲା ।

'ଅତି ମନୋହର ଅଯୋଧ୍ୟା ନଗର
ସରଯୂ ନଦୀର କୂଳେ
କୋଠା ମାଳ ମାଳ ଉଚ୍ଚା ସାତତାଳ
ସୁନା କଳସ ତା' ଚୂଳେ ।
ନଈ ଜଳେ ଖେଳେ ଛବି ତା' ମୃଦୁଳେ
ଦୋହଲି ଦୋହଲି ସଦା
ସେ ଶୋଭା ଦେଖିଲେ ମନ ପ୍ରାଣ ଭୁଲେ
ମଣି ମୁକ୍ତା ଗଦାଗଦା ।
ରାଜା ଦଶରଥ ସୁଶୀଳ ସୁରଥ
ପରଜା ପାଳନ୍ତି ସୁଖେ
ରାଣୀ ତାଙ୍କ ତିନି ସତୀ ଶିରୋମଣୀ
ପ୍ରିୟବାଣୀ ସଦା ମୁଖେ ।

ଗ୍ରାମ–ଶୂଳିଆ, ଡାକଘର– କଲଣ
ମାଧ୍ୟମ– ଧର୍ମଶାଳା,
ଜିଲ୍ଲା– ଯାଜପୁର–୭୫୫୦୦୮







# ଐତିହାସିକ ଧାମରା, ଚାନ୍ଦବାଲି ବନ୍ଦର: ପ୍ରାଚୀନରୁ ଆଧୁନିକ

**ଶାନ୍ତନୁ କୁମାର ମହାନ୍ତି**

ଓଡ଼ିଶା ଅତୀତରେ ଏକ ବନ୍ଦର ରାଜ୍ୟ ଥିଲା। ଆଗଙ୍ଗା ଗୋଦାବରୀ ବିସ୍ତୃତ କଳିଙ୍ଗ ସାମ୍ରାଜ୍ୟର ସୁଦୀର୍ଘ ଉପକୂଳରେ ଅନେକ ନୌଘାଟୀ ତଥା ବନ୍ଦର ଥିଲା। ତାମ୍ରଲିପ୍ତି, ଚେଲିତାଲୋ, ପାଲୁର ଦନ୍ତପୁର, ଚିଲିକା ପ୍ରଭୃତି ପ୍ରସିଦ୍ଧ ବନ୍ଦର ଓ ଶହ ଶହ ପୋତାଶ୍ରୟଗୁଡିକର ଅବସ୍ଥିତି ଯୋଗୁଁ ଉତ୍କଳୀୟମାନେ ସମୁଦ୍ର ପାର ବେପାର ବଣିଜରେ ସୁଦକ୍ଷ ଓ ଶକ୍ତିଶାଳୀ ଥିଲେ। ସାତ ସମୁଦ୍ର ତେର ନଈ ପାର ହୋଇ ସାଧବ ପୁଅମାନେ ସୁଦୂର ଭୂଖଣ୍ଡରେ ଉପନିବେଶ ସ୍ଥାପନ କରିଥିଲେ। ଅତୀତ ଓଡ଼ିଶା ସୁଜଳା, ସୁଫଳା ଶସ୍ୟ ଶ୍ୟାମଳା ଥିବା ସହିତ ନୌବାଣିଜ୍ୟରୁ ପ୍ରାପ୍ତ ସମ୍ପଦ ଦ୍ୱାରା ଭାରତବର୍ଷରେ ଏକ ବିଭବଶାଳୀ ରାଜ୍ୟ ରୂପେ ପରିଗଣିତ ହେଉଥିଲା। ସଂପ୍ରତି ଉତ୍କଳୀୟ ସମୃଦ୍ଧ ନୌବାଣିଜ୍ୟ କିମ୍ବଦନ୍ତୀର ବିଷୟବସ୍ତୁ ଭଳି ରହିଯାଇଛି। ପ୍ରାକୃତିକ ବିପର୍ଯ୍ୟୟ ଫଳରେ ଓଡ଼ିଶାର ନଦୀ ମୁହାଣ ସବୁ ପୋତି ହୋଇ ପଡିବାରୁ, ନଦୀଶଯ୍ୟା ନୌଚଳାଚଳ ପାଇଁ ଅନୁପଯୁକ୍ତ ହୋଇଯିବାରୁ ବନ୍ଦର ସବୁ ଧ୍ୱଂସ ପାଇଛି। ରାଜନୈତିକ, ବାଣିଜ୍ୟିକ ହସ୍ତକ୍ଷେପ ଫଳରେ କେତେକ ବନ୍ଦର ଅକାମୀ ହୋଇପଡିଛି। କିନ୍ତୁ ପୂର୍ବଗୌରବର ସେହି ସ୍ମୃତି ଓ ସଂକେତ ଓଡ଼ିଶା ଉପକୂଳର ଅନେକ ସ୍ଥାନ ବହନ କରିଛି। ତନ୍ମଧ୍ୟରୁ ଧାମରା, ଚାନ୍ଦବାଲି ଅନ୍ୟତମ। କାହିଁ କେଉଁ ସୁଦୂର ତଅପୋଇ ଯୁଗରୁ ବୋଇତଠାରୁ ଷ୍ଟିମର ଏବଂ ଷ୍ଟିମରଠାରୁ ଜାହାଜ ପର୍ଯ୍ୟନ୍ତ ନୌବାଣିଜ୍ୟ ପରମ୍ପରାରେ ଏହାର ଅବଦାନ ଅବିସ୍ମରଣୀୟ।

ଊନବିଂଶ ଶତାବ୍ଦୀ ପ୍ରାରମ୍ଭରେ ବାଲେଶ୍ୱର ବନ୍ଦର ଉତ୍କଳ ନୌବାଣିଜ୍ୟର କେନ୍ଦ୍ରବିନ୍ଦୁ ଥିଲା । କଲିକତା ଓ ମାନ୍ଦ୍ରାଜରୁ ଜାହାଜଗୁଡିକ ଏଠାକୁ ଆସି ଚାଉଳ ଓ ପଣ୍ୟଦ୍ରବ୍ୟ ନେଇ ଫେରୁଥିଲେ । ଲାକାଡିଭ୍, ମାଲ୍‌ଡିପ ଦ୍ୱୀପପୁଞ୍ଜରୁ ନଡ଼ିଆ, କଉଡ଼ି ଆମଦାନୀ ହେଉଥିଲା। ସେତେବେଳେ ବାଲେଶ୍ୱର, ଚୂଡ଼ାମଣି, ଧାମରା ବନ୍ଦରଗୁଡିକ ଚାଉଳ ଓ ଲୁଣ କାରବାରରେ ମୁଖ୍ୟତଃ ଲିପ୍ତ ରହୁଥିଲେ । ୧୮୫୮ ମସିହାରେ ଭାରତ ସରକାର ଓଡ଼ିଶା ବନ୍ଦରଗୁଡିକର ନିୟନ୍ତ୍ରଣ ଓ ପରିଚାଳନା ନିମିତ୍ତ ଏକ ବିସ୍ତୃତ ଯୋଜନା ପ୍ରସ୍ତୁତ କଲେ। ଏହି ସମୟରେ ଧାମରା ବନ୍ଦର ପୁନର୍ଗଠିତ ହେଲା। ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷ ସମୟରେ ଧାମରା ଏବଂ ଫଲ୍ସପଏଣ୍ଟକୁ ଛାଡ଼ି ଯେକୌଣସି ଜାହାଜକୁ ଆଶ୍ରୟ ଦେବା ନିମିତ୍ତ ଉତ୍କୃଷ୍ଟ ପୋତାଶ୍ରୟ ପ୍ରାୟ ନଥିଲା। ଏହା ସତ୍ତ୍ୱେ ବି ଓଡ଼ିଶାର ରପ୍ତାନୀ ବାଣିଜ୍ୟ ଯଥେଷ୍ଟ ଥିଲା। ସମଗ୍ର ଓଡ଼ିଶାରେ ଏହାର ପରିମାଣ ୩୩,୦୦୦ ଟନ୍ ଥିଲାବେଳେ କେବଳ ବାଲେଶ୍ୱରରେ ୨୬,୦୦୦ ଟନ୍ ଥିଲା। ଦୁର୍ଭିକ୍ଷ ସମୟରେ ଉତ୍ତମ ପୋତାଶ୍ରୟ ଅଭାବରୁ ସରକାର ଓଡ଼ିଶାକୁ ଯଥେଷ୍ଟ ଚାଉଳ ପଠାଇ ପାରିଲେ ନାହିଁ। ତାହା ହୋଇଥିଲେ ବହୁ ଲୋକଙ୍କୁ ରକ୍ଷା କରାଯାଇ ପାରିଥାନ୍ତା। ତେଣୁ ୧୮୬୬ ମସିହା ପରେ ଦୁର୍ଭିକ୍ଷ କମିଶନ୍ ଓଡ଼ିଶା ବନ୍ଦରଗୁଡିକର ପରିବହନ ସୁବିଧା ଓ ଉନ୍ନୟନ ପାଇଁ ନିର୍ଦ୍ଦିଷ୍ଟ ମତାମତ ପ୍ରଦାନ କରିଥିଲେ। ଏହି ସମୟରେ ମହାନଦୀ ମୁହାଣର ଫଲ୍ସ ପଏଣ୍ଟ ସରକାରଙ୍କ ଦୃଷ୍ଟି ଆକର୍ଷଣ କଲା। ପ୍ରଥମାବସ୍ଥାରେ ପୋତାଶ୍ରୟକୁ ଗଭୀର କରାଯାଇ ବ୍ୟବହାର କରାଗଲା। ତା'ଛଡା ପ୍ରତିକୂଳ ପାଗରେ ଜାହାଜ ସବୁ ବନ୍ଦରସ୍ଥଳଠାରୁ ଯଥେଷ୍ଟ ବ୍ୟବଧାନରେ ନଙ୍ଗର ପକାଇ ଅବସ୍ଥାନ କରିବା ଦ୍ୱାରା ମାଲପତ୍ର ଖଲାସ କରିବାରେ ଅସୁବିଧା ସୃଷ୍ଟି ହେଲା।

ବୈଷୟିକ ଅସୁବିଧା ଓ ବ୍ୟୟବହୁଳତା ଦୃଷ୍ଟିରୁ ବାଲେଶ୍ୱର ଏବଂ ଫଲ୍ସପଏଣ୍ଟକୁ ବନ୍ଦ କରିଦିଆଗଲା । ଦକ୍ଷିଣ-ପଶ୍ଚିମ ମୌସୁମୀ ପାଇଁ ନିରାପଦ ନଥିଲା। ଗୋପାଳପୁର ବନ୍ଦର ବର୍ଷସାରା କାର୍ଯ୍ୟକ୍ଷମ ନଥିଲା। ଏହି ଉପକୂଳରେ ଭୟଙ୍କର ସାମୁଦ୍ରିକ ତରଙ୍ଗ



ଯୋଗୁଁ ଜାହାଜଗୁଡିକ ନଙ୍ଗର ପକାଇବାକୁ ନିରାପଦ ମଣୁ ନଥିଲେ। ଧାମରା ବନ୍ଦର ସାମୁଦ୍ରିକ ପ୍ଲାବନରୁ କଦାପି ମୁକ୍ତ ନଥିଲା। ଏହିସବୁ କାରଣରୁ ବନ୍ଦର କାର୍ଯ୍ୟ ଚାନ୍ଦବାଲିକୁ ସ୍ଥାନାନ୍ତରିତ ହେଲା। ଏଠାରେ ନଦୀଜଳର ଗଭୀରତା ଯଥେଷ୍ଟ ଥିଲା ଏବଂ ପ୍ଲାବନର କୌଣସି ଭୟ ନଥିଲା। ୧୮୭୨ ମସିହାରେ କମିଶନ୍‌ର ରେଭେନ୍ସା ଏହାକୁ ନିର୍ମାଣ କଲେ। ସେଥିପାଇଁ ଚାନ୍ଦବାଲି ବନ୍ଦରର ଅନ୍ୟନାମ ରେଭେନ୍ସା ପୋର୍ଟ। ଏହି ବନ୍ଦର ବ୍ରାହ୍ମଣୀ–ବୈତରଣୀ ମିଳନ ସ୍ଥଳରୁ ୮ ମାଇଲ୍ ଏବଂ ଧାମରା ମୁହାଣଠାରୁ ୨୦ ମାଇଲ ପଶ୍ଚିମକୁ ବୈତରଣୀ ନଦୀର ଉତ୍ତରକୂଳରେ ଅବସ୍ଥିତ ଥିଲା। ତା'ଛଡ଼ା ଏହା ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ସନ୍ତେଇ ନଦୀ, ଚାନ୍ଦବାଲି, ଭଦ୍ରକ ରାସ୍ତା ଓ ବହୁ ଜୁଆରିଆ ନଦୀନାଳ ଦ୍ୱାରା ସଂଯୁକ୍ତ ଥିଲା। ଧାମରା ବନ୍ଦର ଓ ଚାନ୍ଦବାଲି ବନ୍ଦର ଯଦିଓ ଦୁଇଟି ପୃଥକ ବନ୍ଦର ଭାବେ ଗଣ୍ୟ, ପ୍ରକୃତରେ ଏହା ଗୋଟିଏ ନଦୀବନ୍ଦରର ଦୁଇଟି ସୀମା। ବୈତରଣୀ ନଦୀ ମୁହାଣରେ ଧାମରା, ଏହାର ପଶ୍ଚିମକୁ ଅନତି ଦୂରରେ ଉଚ୍ଚ ଭୂମିରେ ଚାନ୍ଦବାଲି। ବ୍ରିଟିଶ ସରକାରଙ୍କ ଦ୍ୱାରା ୧୮୫୮ ମସିହା ମଇ ମାସ ୧୮ ତାରିଖରେ ଧାମରା ବନ୍ଦର ଘୋଷଣାନାମା ଏବଂ ୧୮୮୧ ମସିହା ମାର୍ଚ୍ଚମାସ ୨୮ ତାରିଖରେ ଚାନ୍ଦବାଲି ବନ୍ଦର ଘୋଷଣାନାମା ପ୍ରକାଶ ପାଇଥିଲା। ପରବର୍ତ୍ତୀ ସମୟରେ ୧୯୦୬ ମସିହାଠାରୁ ଏହି ଦୁଇଟି ବନ୍ଦରକୁ ଗୋଟିଏ ବନ୍ଦରର ମାନ୍ୟତା ଦିଆଯାଇଥିଲା। ପ୍ରାକୃତିକ କାରଣରୁ ଧାମରା ବନ୍ଦର ପରିସରକୁ ଚାନ୍ଦବାଲି ପର୍ଯ୍ୟନ୍ତ ବୃଦ୍ଧି କରାଗଲା ଏବଂ ଦେଖାଗଲା ସମଗ୍ର ପୂର୍ବ ଉପକୂଳର ଏହା ଏକ ଉତ୍କୃଷ୍ଟ ନଦୀ ବନ୍ଦର।

ଓଡ଼ିଶାର ଏକ ସୁବିଧାଜନକ ବାଣିଜ୍ୟକେନ୍ଦ୍ର ହିସାବରେ ଚାନ୍ଦବାଲିର ଯଥେଷ୍ଟ ପ୍ରସିଦ୍ଧି ଥିଲା। ଓଡ଼ିଶାର ତତ୍କାଳୀନ ଏକମାତ୍ର ସାପ୍ତାହିକ ସମ୍ବାଦପତ୍ର 'ଉତ୍କଳ ଦୀପିକା' ତାଙ୍କର ୧୮୭୨ ମାର୍ଚ୍ଚ ୨୩ ତାରିଖ ସଂସ୍କରଣରେ ଲେଖିଛନ୍ତି ଚାନ୍ଦବାଲି ବାଟେ ଜାହାଜରେ ବିସ୍ତର ଲୋକ ଯାତାୟାତ କରୁଛନ୍ତି ଓ ଯେବେ ସେଠାରେ ଦ୍ରବ୍ୟ ଓହ୍ଲାଇ କଟକକୁ ଆଣିବା ଓ କଟକରୁ ଦ୍ରବ୍ୟ ନେଇ ସେଠାରେ ନଦିବାର ସୁଯୋଗ ହୁଅଇ, ତେବେ ସେହି ବାଟେ ଏକା କଟକ ଜିଲ୍ଲାର ସବୁ ବାଣିଜ୍ୟ ଚଳିବ, ଚାନ୍ଦବାଲିର ସୁବିଧା ଏହି ଯେ ଜାହାଜ ଭଡ଼ା ଊଣା ଓ ସ୍ଥଳ ପଥରେ ଜାହାଜ ନିକଟକୁ ବୋହି ନେବାର ସୁଯୋଗ ଅଛି

କମିଶନର ରେଭେନ୍ସା ସାହେବ ତାଙ୍କ ୧୮୭୭ ମସିହା ଜୁଲାଇ ୧୮ ତାରିଖ ପରିଦର୍ଶନ ବିବରଣୀରେ ଲେଖିଛନ୍ତି– ଚାନ୍ଦବାଲି ବଜାରକୁ ଚାନ୍ଦବାଲିର ଚାରିପଟରୁ ଓ ଆଖପାଖ ଅଞ୍ଚଳରୁ ଲଗାତର ଭାବେ ବର୍ଷସାରା ବିପୁଳ ପରିମାଣରେ ଶସ୍ୟ ଆସୁଅଛି। ଏହି ଶସ୍ୟାବଳୀ ବିଭିନ୍ନ ସ୍ଥାନରୁ ନୌକା, ବଳଦ ଗାଡ଼ି ଓ ବଳଦ ପିଠିରେ ଲଦା ହୋଇଅଛି। ବର୍ତ୍ତମାନ ଚାନ୍ଦବାଲିରେ ଇଂରେଜ, ପାର୍ସି, ବଙ୍ଗାଳୀ, ମାରୱାଡ଼ି, ମାନ୍ଦ୍ରାଜୀ, ମୁସଲମାନ୍ ଓ ବମ୍ବେ ମୁସଲମାନ ବଣିକମାନେ ବସବାସ କଲେଣି। ଜଣେ ଦୁଇଜଣ ଓଡ଼ିଆ ବଣିକ ମଧ୍ୟ ଅଛନ୍ତି। ଏହି ଅଳ୍ପଦିନ ହେଲା ଗ୍ରୀକ୍ ବଣିକମାନେ ଆସିଛନ୍ତି। ଧାନ ଅମଳ ସମୟରେ ଚାନ୍ଦବାଲିରୁ ସପ୍ତାହକୁ ଦୁଇଟି ଷ୍ଟିମର ବୋଝେଇ ହୋଇ ଚାଉଳ କଲିକତା ଯାଉଅଛି। ପରବର୍ତ୍ତୀ ଅବସ୍ଥାରେ ଉପମହାଦେଶର ଦକ୍ଷିଣାଞ୍ଚଳରେ ଶସ୍ୟ ଦରଦାମ ବୃଦ୍ଧିପ୍ରାପ୍ତ ହେବାରୁ ଏହି ବନ୍ଦରରୁ ଇଂରେଜ ଜାହାଜ, ଅନ୍ୟାନ୍ୟ ବିଦେଶୀ ଜାହାଜ ଓ ଦେଶୀୟ ଡ଼ଙ୍ଗାରେ ମାନ୍ଦ୍ରାଜ ଓ ବମ୍ବେ ବନ୍ଦରକୁ ଶସ୍ୟ ରପ୍ତାନୀ ହେବା ସଂଗେ ସଂଗେ ମରିସସ୍, ସିଂହଳ, ମାଲଦ୍ୱୀପ, ଲକ୍ଷାଦ୍ୱୀପ ଅଞ୍ଚଳକୁ ମଧ୍ୟ ରପ୍ତାନୀ ହେଉଅଛି। ବିପୁଳ ପରିମାଣରେ ଶସ୍ୟ ଚାନ୍ଦବାଲିରୁ ନଦୀ ପଥରେ ଫଲ୍ସପଏଣ୍ଟ ବତୀଘର ପର୍ଯ୍ୟନ୍ତ ନିଆଯାଉଛି ଓ ସେଠାରୁ ବଡ଼ ବଡ଼ ଜାହାଜରେ ବୋଝେଇ ହୋଇ ବିଭିନ୍ନ ସ୍ଥାନକୁ ଜାହାଜରେ ଯାଉଛି। ଏଥିରୁ ସୂଚିତ ହୁଏ ଯେ ଓଡ଼ିଶା ବାଣିଜ୍ୟର ପ୍ରଧାନପୀଠ ଚାନ୍ଦବାଲି ଏକ ଆନ୍ତର୍ଜାତିକ ସହର ଭାବେ ଗଢ଼ି ଉଠିଥିଲା। କାରଣ ଏହା ଥିଲା ପୂର୍ବଉପକୂଳର ଏକ ଉନ୍ନତ ପ୍ରଥମଶ୍ରେଣୀ ପୋତାଶ୍ରୟ ଏବଂ ନିରାପଦ ପ୍ରାକୃତିକ ନଦୀବନ୍ଦର।

ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ ତାଙ୍କ 'ଓଡ଼ିଶା ଇତିହାସ' ୧୮୭୯ ଗ୍ରନ୍ଥରେ ଲେଖିଛନ୍ତି– '୧୮୭୨ ଖ୍ରୀଷ୍ଟାବ୍ଦ ରୁ ଚାନ୍ଦବାଲି ବନ୍ଦର ଦିନକୁ ଦିନ ବର୍ଦ୍ଧିତପ୍ରଦ ହେଉଅଛି। ବାଲେଶ୍ୱର, ପୁରୀ ଓ କଟକ ଜିଲ୍ଲା ଲୋକଙ୍କର ଏହି ଚାନ୍ଦବାଲି ବନ୍ଦର ପ୍ରିୟ ହୋଇଥିବାର ଜଣାଯାଏ। ଲୋକଙ୍କର ଜାହାଜରେ ବିଦେଶ ଯାତାୟାତର ଆବଶ୍ୟକ ହେଲେ, ଏହି ଚାନ୍ଦବାଲି ବନ୍ଦର ବାଟେ ସେମାନେ ଗମନାଗମନ କରୁଅଛନ୍ତି। ପ୍ରତି ସପ୍ତାହରେ ନିୟମିତ ରୂପେ ଜାହାଜ ଏଠାକୁ ଯାତାୟାତ କରୁଅଛି । ବାଣିଜ୍ୟ କାରବାରରେ ଚାନ୍ଦବାଲି ବନ୍ଦର ବିଶେଷ ପ୍ରସାର ଲାଭ କରିବାର କାରଣ ହେଲା ଏହା ବର୍ଷର ସବୁ ଋତୁରେ କାର୍ଯ୍ୟକାରୀ ହୋଇପାରୁଥିଲା ଏବଂ ଏକ ପ୍ରାକୃତିକ ନଦୀ ବନ୍ଦର ରୂପେ ବିଶେଷ ସ୍ଥାନ ଅଧିକାର କରିଥିଲା।

ଚାନ୍ଦବାଲି ଥିଲା ଓଡ଼ିଶାର ଏକମାତ୍ର ସବୁଦିନିଆ ବନ୍ଦର ଓ ଆନ୍ତଃ ପ୍ରାଦେଶିକ ଜଳପଥ। ଊନବିଂଶ ଶତାବ୍ଦୀ ଶେଷ ଆଡ଼କୁ





ଚାନ୍ଦବାଲି ଓଡ଼ିଶାର ପ୍ରଧାନ ବନ୍ଦରଭାବେ ମୁଣ୍ଡ ଟେକିଥିଲା । ଓଡ଼ିଶା ବାଣିଜ୍ୟର ମୁଖ୍ୟ ଅଂଶ ଚାନ୍ଦବାଲିରେ କେନ୍ଦ୍ରୀଭୂତ ହୋଇଥିଲା। ୧୮୮୭ ମସିହାରେ ଓଡ଼ିଶା କୋଷ୍ଟକେନାଲ ନିର୍ମିତ ହେବାଦ୍ୱାରା କଲିକତା ଓ ଚାନ୍ଦବାଲି ମଧ୍ୟରେ ପ୍ରତ୍ୟହ ଷ୍ଟିମର ଚଳାଚଳ ସୁଗମ ହେଲା । ଦେଶ ଭିତରୁ ଓ ଦେଶ ବାହାରୁ ବହୁ ଧନୀ ସୌଦାଗରମାନଙ୍କ ଚାନ୍ଦବାଲିକୁ ଆଗମନ ହେଲା । ବହୁ ପ୍ରତିଷ୍ଠିତ ଜାହାଜ କମ୍ପାନୀମାନେ ଏଠାରେ ବ୍ୟବସାୟ ଆରମ୍ଭ କଲେ। ଆମଦାନୀ ରପ୍ତାନୀ ବୃଦ୍ଧି ପାଇଲା । ହଜାର ହଜାର ଯାତ୍ରୀ, ଓଡ଼ିଶାର ବହୁ ମାନ୍ୟ ଗଣ୍ୟ ବ୍ୟକ୍ତି ବୈତରଣୀ ନଦୀ ବକ୍ଷରେ ସୁଦୂର ଦେଶ ବିଦେଶକୁ ଯାତ୍ରା କଲେ। ପୁରୀଗାମୀ ତୀର୍ଥଯାତ୍ରୀଗଣ ଏହି ପଥ ଦେଇ ଜଗନ୍ନାଥ ଦର୍ଶନକୁ ଯାଉଥିଲେ। ସେମାନଙ୍କ ରହିବା ପାଇଁ ସରକାରୀ ଅନୁମୋଦିତ ଯାତ୍ରୀ ନିବାସ ଯେତେଦୂର ଜଣାଯାଏ ଏଠାରେ ଓ ପୁରୀରେ ଥିଲା। ଚାନ୍ଦବାଲିରେ ଥିବା ନୌବାଣିଜ୍ୟର ମୁଖ୍ୟ କେନ୍ଦ୍ରକୁ 'ଷ୍ଟାଣ୍ଡ ରୋଡ' ଭାବରେ ନାମିତ କରାଯାଇଥିଲା। ବନ୍ଦର ଅଫିସ, କଷ୍ଟମସ୍ ଅଫିସ, ଡ଼ାକ ବଙ୍ଗଳା, ଯାତ୍ରୀ ନିବାସ, ଭଣ୍ଡାରଘର, ପତାକାସ୍ତମ୍ଭ, ଜେଟୀ, ପାଣିପାଗ ଅଫିସ ନିର୍ମିତ ହେଲା। ମୁହାଣରେ ବତୀ ଘର ଥିଲା ଓ ନଦୀ ମଧ୍ୟରେ ବୟାଁ ଭାସୁଥିଲା।

ଚାନ୍ଦବାଲି ବନ୍ଦର ପର୍ଯ୍ୟାୟକ୍ରମେ ଅଗ୍ରଗତି କରୁଥିଲା। ଇଣ୍ଡିଆନ୍ ଜେନେରାଲ୍ ଷ୍ଟିମ୍ ନେଭିଗେସନ କମ୍ପାନୀ ଏବଂ ଓଡ଼ିଶା ଷ୍ଟିମ୍ ନେଭିଗେସନ କମ୍ପାନୀର ଜାହାଜଗୁଡିକ ପ୍ରତି ସପ୍ତାହରେ ନିୟମିତ କଲିକତା ଓ ଚାନ୍ଦବାଲି ମଧ୍ୟରେ ଚଳାଚଳ କରୁଥିଲା। ୧୮୯୬ ମସିହାରେ ଓଡ଼ିଶାକୁ ରେଳପଥ ଫିଟିବା ଦ୍ୱାରା ଜଳ ପରିବହନ ବାଧାପ୍ରାପ୍ତ ହେଲା ଏବଂ ନୌବାଣିଜ୍ୟ କମି କମି ଆସିଲା। ଓଡ଼ିଶା ବନ୍ଦରଗୁଡ଼ିକର ଉନ୍ନତି ଏବଂ ଅଧୋଗତି ସହିତ ଏହାର ପ୍ରଭାବ ଜନଜୀବନରେ ପ୍ରତିଫଳିତ ହୋଇଥିଲା। ବଙ୍ଗଳା ପ୍ରଶାସନିକ ବିବରଣୀ (୧୯୦୮-୦୯)ରେ ଉଲ୍ଲେଖ ଅଛି ଯେ ଇଂଲଣ୍ଡ, ଫ୍ରାନ୍ସ, ଆମେରିକାର ଜାହାଜଗୁଡିକ ନିୟମିତ ବ୍ୟବଧାନରେ ଫଲ୍ସ ପଏଣ୍ଟ, ପୁରୀ, ବାଲେଶ୍ୱର, ଚାନ୍ଦବାଲି ଏବଂ ଗୋପାଳପୁର ବନ୍ଦରକୁ ଆସୁଥିଲେ। ବ୍ରିଟିଶ ଇଣ୍ଡିଆ ଷ୍ଟିମ୍ ନେଭିଗେସନ କମ୍ପାନୀ, ସିନ୍ଧିଆ ଷ୍ଟିମ୍ ନେଭିଗେସନ କମ୍ପାନୀ, ଏସିଆଟିକ୍ ନେଭିଗେସନ କମ୍ପାନୀ ପ୍ରଭୃତି ଏହିସବୁ ବନ୍ଦର ସହିତ ବାଣିଜ୍ୟ କାରବାରରେ ଲିପ୍ତ ଥିଲେ। ବେଙ୍ଗଲ ଏଣ୍ଡ ଓଡ଼ିଶା ଷ୍ଟିମ୍ସ କମ୍ପାନୀ ଏବଂ ଚାନ୍ଦବାଲି ଷ୍ଟିମ୍ସ ସର୍ଭିସ କମ୍ପାନୀ ଦ୍ୱାରା ଚାନ୍ଦବାଲି ଓ କଲିକତା ମଧ୍ୟରେ ପଣ୍ୟବାହୀ, ଯାତ୍ରୀବାହୀ ଜାହାଜ ଯାତାୟାତ କରୁଥିଲା। ଚାନ୍ଦବାଲି ଥିଲା ଓଡ଼ିଶାର ଏକମାତ୍ର ଯାତ୍ରୀବାହୀ ତଥା ମାଲବାହୀ ବନ୍ଦର, ଯିଏକି ଓଡ଼ିଶା ବାଣିଜ୍ୟର ପ୍ରାୟ ୬୦ଭାଗ ନିୟନ୍ତ୍ରଣ କରୁଥିଲା।

ଚାନ୍ଦବାଲି ବନ୍ଦର ସଂପର୍କରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ଉଲ୍ଲେଖ ଅଛି– ଏହା କଟକ ଓ ବାଲେଶ୍ୱର ଜିଲ୍ଲାର ସୀମାରେ ବ୍ରାହ୍ମଣୀ ଓ ବୈତରଣୀ ନଦୀର ସଙ୍ଗମ ସ୍ଥଳ ଧାମରା ମୁହାଣଠାରୁ କିୟତି ଦୂରରେ ଅବସ୍ଥିତ। ଏହା ଆଜିକାଲି ଓଡ଼ିଶାର ଏକମାତ୍ର ବାଣିଜ୍ୟ ପ୍ରଧାନ ବନ୍ଦର। ଏହି ସ୍ଥାନ ପର୍ଯ୍ୟନ୍ତ ଛୋଟ ଛୋଟ ଜାହାଜ କଲିକତାରୁ ଆସେ ଏବଂ ଏଠାରୁ କେନାଲ ବାଟେ କଟକକୁ ଷ୍ଟିମର ଯାତାୟାତ କରେ।

ରେଳ ସେବା ପୂର୍ବରୁ କଟକରୁ କଲିକତା ଯିବା ଯାତ୍ରୀମାନେ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଷ୍ଟିମରରେ ଯାଇ ସେଠାରୁ କଲିକତାକୁ ସମୁଦ୍ରବାଟେ ଜାହାଜରେ ଯାଉଥିଲେ। ବର୍ତ୍ତମାନ କେବଳ ପଣ୍ୟଦ୍ରବ୍ୟମାନ ଏହି ବାଟେ ଯାଉଅଛି। ଓଡ଼ିଶାରେ ଯେତେବେଳେ ନଦୀ ପରିବହନର ପ୍ରାଧାନ୍ୟ ଥିଲା, ସେତେବେଳେ ଚାନ୍ଦବାଲି ଏକ ସମୃଦ୍ଧଶାଳୀ ବନ୍ଦର ରୂପେ ଖ୍ୟାତିଲାଭ କରିଥିଲା। ଓଡ଼ିଶାର ବାଣିଜ୍ୟିକ ଅଭିବୃଦ୍ଧି ଏବଂ ଅର୍ଥନୈତିକ ପ୍ରଗତିରେ ସାହାଯ୍ୟ କରିବା ସଂଗେ ସଂଗେ ତତ୍କାଳୀନ ଓଡ଼ିଶାର ରାଜଧାନୀ ତଥା ପ୍ରାଣକେନ୍ଦ୍ର କଟକ ନଗର ସହ କଲିକତା ମହାନଗରୀ ସମନ୍ୱୟ ରକ୍ଷା କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ହରେକୃଷ୍ଣ ମହତାବଙ୍କ ମତରେ ବ୍ରିଟିଶ ଶାସନ ସମୟରେ ଉଲ୍ଲେଖନୀୟ କୀର୍ତ୍ତି ହେଉଛି 'କୋଷ୍ଟ କେନାଲ' ଏବଂ ଚାନ୍ଦବାଲି ବନ୍ଦର ସଂରକ୍ଷଣ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଏକ ଉତ୍କୃଷ୍ଟ ବନ୍ଦରର ଆବଶ୍ୟକତାକୁ ଚାନ୍ଦବାଲି ବହୁ ଭାବରେ ସାର୍ଥକ କରିଥିଲା। ଓଡ଼ିଶା ରାଜ୍ୟ ବନ୍ଦର ମୁଖ୍ୟ କାର୍ଯ୍ୟାଳୟ ଚାନ୍ଦବାଲିରେ ଥିଲା ଓ ଏହାର ଅଧିକାରୀ ଜଣେ କମିଶନର ପାହ୍ୟାର ଅଫିସର ଥିଲେ। ସେ ଏଠାରେ ରହି ରାଜ୍ୟ ବନ୍ଦରଗୁଡ଼ିକର ସଂରକ୍ଷଣ, ପରିଚାଳନା ଓ ଉନ୍ନୟନ କାର୍ଯ୍ୟ ତଦାରଖ କରୁଥିଲେ। ଏଠାରୁ ଚାଉଳ, ତୈଳବୀଜ, ଚମଡ଼ା ଇତ୍ୟାଦି କଲିକତା, ବମ୍ବେ, ଆରାକାନ୍, ମାଲଡିଭ୍ସ, ସିଂହଳ, ମରିସସ୍‌କୁ ଯାଉଥିଲା ଏବଂ ସେଠାରୁ ଲବଣ, ମସଲା, ଚିନି, କାର୍ପାସ ଦ୍ରବ୍ୟ, କିରୋସିନି ଏଠାକୁ ଆସୁଥିଲା। ଏହିପରି ଭାବରେ ଓଡ଼ିଶାର ଆମଦାନୀ ରପ୍ତାନୀ ବାଣିଜ୍ୟର ବହୁଳାଂଶ ଚାନ୍ଦବାଲି ଦ୍ୱାରା ନିୟନ୍ତ୍ରିତ ହେଉଥିଲା। ୧୯୧୩ ମସିହାରେ ମଧୁସୂଦନ ଦାସ ଇମ୍ପେରିଆଲ ଲେଜିସ୍‌ଲେଟିଭ କାଉନ୍‌ସିଲରରେ ଯୁକ୍ତି ବାଢ଼ିଥିଲେ – 'ଓଡ଼ିଶା ବହୁ ପରିମାଣରେ ଚାଉଳ ରପ୍ତାନୀ କରେ। ଏହାର ଏକ ଭଲ ଅଂଶ ସିଂହଳକୁ ଏବଂ



ବହୁଳାଂଶ ମରିସସ୍‌କୁ ରପ୍ତାନୀ ହୁଏ। ମରିସସ୍ ପ୍ରତିବଦଳରେ ଚିନି ଓଡ଼ିଶାକୁ ପଠାଏ। ଅଧୁନା ଏହିସବୁ ଆମଦାନୀ ଓ ରପ୍ତାନୀ ଦ୍ରବ୍ୟ ପ୍ରଥମେ କଲିକତାକୁ ଆସି ସେଠାରୁ ଷ୍ଟିମର ଦ୍ୱାରା ଚାନ୍ଦବାଲିକୁ କିମ୍ବା ରେଳଦ୍ୱାରା ଭାରତର ବିଭିନ୍ନ ପ୍ରାନ୍ତକୁ ପଠାଯାଏ। ବହୁ ପରିମାଣରେ ଚମଡ଼ା ଇଉରୋପ ଏବଂ ବିଦେଶକୁ ରପ୍ତାନୀ ହୁଏ। ସଂପ୍ରତି ସେଗୁଡିକ ଚାନ୍ଦବାଲି ବାଟେ କିମ୍ବା ରେଳପଥରେ କଲିକତାକୁ ଯାଏ ଏବଂ ସେଠାରୁ ଜଳପଥରେ ସୁମୁଦ୍ରଗାମୀ ଜାହାଜଦ୍ୱାରା ବିଦେଶକୁ ପଠାଯାଏ। ଏହା ବ୍ୟୟବହୁଳ ଅଟେ। ଯଦି ଧାମରାରେ କିମ୍ବା ତାର ଆଖପାଖରେ ବନ୍ଦରଟିଏ ଗଢ଼ି ଉଠନ୍ତା, ଯେଉଁଠାରେ ଜାହାଜଗୁଡିକ ନିରାପଦରେ ଆଶ୍ରୟ ନେଇପାରିବେ, ମାଲ୍ ବୋଝେଇ ଓ ଖଲାସ କରିପାରିବେ, ତେବେ ଯଥେଷ୍ଟ ଅର୍ଥ ବଳକା ରହିପାରନ୍ତା। ସେ ଆହୁରି ମଧ୍ୟ ଦର୍ଶାଇ ଥିଲେ ଯେ ଯଦି ଭଦ୍ରକରୁ ଚାନ୍ଦବାଲି ରେଳପଥ ନିର୍ମାଣ କରାଯାଏ କିମ୍ବା କୌଣସି ଉପଯୁକ୍ତ ସ୍ଥାନ ଯେଉଁଠି ବନ୍ଦର କାର୍ଯ୍ୟକ୍ଷମ ହୋଇପାରିବ ଯଦ୍ଦ୍ୱାରା ଦେଶୀୟବାଟ ଫିଟିଯିବ, ବାଣିଜ୍ୟ ବୃଦ୍ଧି ପାଇବ ଏବଂ ସର୍ବସାଧାରଣ ଉପକୃତ ହେବେ।

୧୯୪୭ ମସିହାପରେ ବ୍ରିଟିଶ ଶାସନର ପରିସମାପ୍ତି ସହ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟ ଅତୀତର କାହାଣୀ ଭଳି ରହିଗଲା। ଓଡ଼ିଶାର ସବୁ ବନ୍ଦରଗୁଡିକ ଅଧୋଗତିର ସମ୍ମୁଖୀନ ହେଲେ। କେବଳ ଚାନ୍ଦବାଲି ବନ୍ଦରକୁ ଜାହାଜ ଓ ଷ୍ଟିମରଗୁଡିକ ମଝିରେ ମଝିରେ ଆସୁଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବ୍ରିଟିଶ ସରକାର ଓଡ଼ିଶା ବନ୍ଦରଗୁଡିକର ଉନ୍ନୟନ ନିମିତ୍ତ ମନ ନବଳାଇବାର କେତେକ କାରଣ ଥିଲା। ପ୍ରଥମତଃ ବେଙ୍ଗଲ ପ୍ରେସିଡେନ୍ସି ଏବଂ ମାଡ୍ରାସ ପ୍ରେସିଡେନ୍ସିରେ କ୍ରମାଗତ ଦୁର୍ଭିକ୍ଷ ଫଳରେ ବନ୍ଦର ଉନ୍ନୟନ ନିମିତ୍ତ ଯଥେଷ୍ଟ ସମ୍ବଳ ଯୋଗାଇବା ସମ୍ଭବପର ହେଲା ନାହିଁ। ଦ୍ୱିତୀୟତଃ ୧୮୮୭ରେ ଓଡ଼ିଶା କୋଷ୍ଟ କେନାଲ ଏବଂ ୧୮୯୬ରେ ଓଡ଼ିଶାକୁ ରେଳପଥ ଉନ୍ମୁକ୍ତ ହୋଇଯିବା ଦ୍ୱାରା ଗମନାଗମନ ଓ ପରିବହନ ଅଧିକ ସହଜ ହେଲା । ତୃତୀୟତଃ ଓଡ଼ିଶାର ବଣିକ ଏବଂ ଶିଳ୍ପୋଦ୍ୟୋଗୀ ଗୋଷ୍ଠୀଙ୍କ ଅଭାବ ହେତୁ ସରକାର ବନ୍ଦର ଉନ୍ନୟନ ଦିଗରେ ନିରବ ରହିବାକୁ ଉଚିତ ମନେକଲେ ।

ଓଡ଼ିଶାକୁ ରେଳଗାଡ଼ି ଆସିଲାଯାଏ ଚାନ୍ଦବାଲି ହିଁ ଥିଲା ଓଡ଼ିଶାର ପ୍ରବେଶ ପଥ ଏବଂ ବର୍ହିଃଦ୍ୱାର । ୧୮୯୬ ମସିହାରେ ଓଡ଼ିଶାକୁ ରେଳପଥ ଫିଟିଲା ପରେ ଚାନ୍ଦବାଲିର ବୈଦେଶିକ ବାଣିଜ୍ୟ ଉପକୂଳ ବାଣିଜ୍ୟ ବାଧାପ୍ରାପ୍ତ ହେଲା । ଚାନ୍ଦବାଲି ବନ୍ଦର ଭାଗ୍ୟରେ ଦୁର୍ଦ୍ଦିନ ଆସିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ। ଯେତେବେଳେ କି ସରକାର ଜାହାଜଗୁଡ଼ିକୁ ଯୁଦ୍ଧର ଆବଶ୍ୟକତା ତୁଲାଇବା ପାଇଁ ଅନ୍ୟତ୍ର ବ୍ୟବହାରରେ ଲଗାଇଲେ। ଫଳତଃ ୧୯୪୧ ମସିହାଠାରୁ ୧୯୪୬ ମସିହା ପର୍ଯ୍ୟନ୍ତ ଦୀର୍ଘ ଛଅବର୍ଷ କାଳ ଚାନ୍ଦବାଲିକୁ ଜାହାଜ ଚଳାଚଳ ସଂପୂର୍ଣ୍ଣ ଭାବେ ବନ୍ଦ ରଖାଗଲା। ଯୁଦ୍ଧୋତ୍ତର କାଳରେ ସରକାରୀ କଟକଣା ଯୋଗୁଁ ଜାହାଜ କାରବାର ସେତେଟା ଉତ୍ସାହଜନକ ହେଲା ନାହିଁ। ତା'ଛଡ଼ା ବହୁଦିନ ଧରି ନଦୀ ମୁହାଣ ଓ ନଦୀ ଶଯ୍ୟା ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ କ୍ରମଶଃ ପୋତି ହେବାକୁ ଲାଗିଲା ଏବଂ ନୌଚାଳନା ପାଇଁ ଆବଶ୍ୟକୀୟ ସର୍ଭେ ଚାର୍ଟ ଅଭାବରୁ ଜାହାଜ କମ୍ପାନୀମାନେ ଏଠାକୁ ଜାହାଜ ଆଣିବା ନିରାପଦ ମନେକଲେ ନାହିଁ। କାରବାର ଊଣା ପଡିବାରୁ ବନ୍ଦର ବିଭାଗର ଖର୍ଚ୍ଚ ତୁଲାଇବା କଷ୍ଟକର ହୋଇପଡିଲା। ଫଳରେ ଓଡ଼ିଶାର ଏକମାତ୍ର ବାଣିଜ୍ୟ ପ୍ରଧାନ ବନ୍ଦର ଚାନ୍ଦବାଲିର ସୂର୍ଯ୍ୟ ଅସ୍ତମିତ ହେଲା। ୧୯୬୨ ମସିହାଠାରୁ ଚାନ୍ଦବାଲିକୁ ଜାହାଜ ଚଳାଚଳ ସଂପୂର୍ଣ୍ଣ ବନ୍ଦ ହୋଇଗଲା।

ଏହିପରି ଉତ୍କଳ ନୌବାଣିଜ୍ୟ ପରମ୍ପରାରେ ଧାମରା, ଚାନ୍ଦବାଲିର ଏକ ଗୁରୁତ୍ୱପୂର୍ଣ୍ଣ ଭୂମି ଓ ଭୂମିକା ଥିଲା। ନୌବାଣିଜ୍ୟ ଯୁଗରେ ଉକ୍ତ ଅଞ୍ଚଳଟି ଏକ କର୍ମ ଓ ଜୀବିକା ମୁଖରିତ ସ୍ଥାନ ରୂପେ ପରିଗଣିତ ହୋଇଥିଲା। ବୋଇତଠାରୁ ଷ୍ଟିମର ପର୍ଯ୍ୟନ୍ତ ନୌବାଣିଜ୍ୟକୁ ବହୁ ଶତାବ୍ଦୀ ଧରି ସମ୍ଭାଳି ରଖିଥିଲା। ତେଣୁ ତ କବିଶେଖର ଚିନ୍ତାମଣି ମହାନ୍ତି ମହୋଦଧି କାବ୍ୟରେ ବ୍ୟକ୍ତ କରିଛନ୍ତି–

ବହିତ୍ର ବନ୍ଦିତ ରମ୍ୟ ଚାନ୍ଦବାଲି
ବାଣିଜ୍ୟ ଗୌରବ ରଖିଛି ସମ୍ଭାଳି

ଇତିହାସରୁ ଜଣାଯାଏ ତ୍ରୟୋଦଶ ଶତାବ୍ଦୀରେ ଗଜପତି ଅନଙ୍ଗଭୀମ ଦେବ ଚାନ୍ଦବାଲି ବନ୍ଦରରୁ ନୌକା ଯୋଗେ ବଙ୍ଗଦେଶ ଯାତ୍ରା କରିଥିଲେ। ଷୋଡ଼ଶ ଶତାବ୍ଦୀରେ ଆକବରଙ୍କ ସେନାପତି ମାନସିଂହ ଧାମରା ମୁହାଣବାଟେ ନୌକାଯୋଗେ ଓଡ଼ିଶାକୁ ଆଗମନ କରିଥିଲେ। ପ୍ରାଚୀନ କାଳରେ ଉତ୍କଳରୁ ଯେଉଁମାନେ ବାହାରକୁ ଯାଉଥିଲେ, ସେମାନେ ଏହିପଥ ଦେଇ ଯାଉଥିଲେ ଏବଂ ବାହାରୁ ଯେଉଁମାନେ ଉତ୍କଳକୁ ଆସୁଥିଲେ, ସେମାନେ ଏହିପଥ ଦେଇ ଆସୁଥିଲେ। ସୁଗମ୍ୟା ବୈତରଣୀ କଳିଙ୍ଗର ଶେଷସୀମା ହୋଇ ଥିବାରୁ ଏହି ନଦୀର ମୁହାଣ କଳିଙ୍ଗର ପ୍ରବେଶ ପଥ ନାମରେ ପରିଚିତ ଥିଲା । ସମଗ୍ର ପ୍ରଦେଶରେ ଏହା ସାମୁଦ୍ରିକ




ବାଣିଜ୍ୟର ପ୍ରଧାନପଥ ଥିଲା ଏବଂ ବହୁବର୍ଷ ଧରି ଜୀବନ୍ତ ଓ କାର୍ଯ୍ୟକ୍ଷମ ରହିଥିଲା ।

ଆନ୍ତର୍ଜାତିକ ନୌଯାତ୍ରାର ଇତିହାସରେ ପୁରାତନ କାଳରୁ ପ୍ରତିଷ୍ଠିତ ଓଡ଼ିଶା ବନ୍ଦରଗୁଡ଼ିକର ପ୍ରସିଦ୍ଧି ଓ ପରମ୍ପରା ଏବେ ସୁଦ୍ଧା ବିସ୍ମୃତ ହୋଇଯାଇନାହିଁ । କଳିଙ୍ଗ ସାଗର ବେଳାରେ ଯେଉଁସବୁ ସ୍ଥାନ ଥିଲା ନୌବାଣିଜ୍ୟ ଦୀପ୍ତ କଳିଙ୍ଗ, ଉତ୍କଳ, ଓଡ଼ିଶାର ଗଳାହାର ବା ମଥାମଣି । ଦୂର ଅତୀତର ସେହି ସମୁଦ୍ରଯାତ୍ରୀମାନଙ୍କର ଫେରନ୍ତା ଉଲ୍ଲାସର ନିରବ ମୂକସାକ୍ଷୀ, ସେହିସବୁ ପ୍ରାଚୀନ ବନ୍ଦରର ଧ୍ୱଂସାବଶେଷ ଉପରେ ଗୋଟିକ ପରେ ଗୋଟିଏ ଆଧୁନିକ ବୃହତ୍ ବନ୍ଦର ଗଢ଼ି ଉଠିବା ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ ଏବଂ ପ୍ରଶଂସନୀୟ ପଦକ୍ଷେପ । ପାରାଦ୍ୱୀପ, ଗୋପାଳପୁର, ଧାମରା ସେହି ସୁମହାନ ପରମ୍ପରାର ସୁନେଲି ସ୍ୱାକ୍ଷର । ବିଜୁବାବୁଙ୍କ ସ୍ୱପ୍ନର ପାରାଦୀପରେ ଆଜି ସୁବର୍ଣ୍ଣତରୀ ଭାସୁଛି । ଏହା ଓଡ଼ିଶା ପାଇଁ କମ୍ ଗର୍ବ ଗୌରବର କଥା ନୁହେଁ ।

୧୯୧୩ ମସିହାରେ ବିହାର-ଓଡ଼ିଶା ବିଧାନସଭାରେ ମଧୁବାବୁ ଧାମରା, ଚାନ୍ଦବାଲିରେ ଗୋଟିଏ ନୂତନ ବନ୍ଦର ଓ ରେଳପଥ ନିର୍ମାଣ ପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ଏବେ ଶହେ ବର୍ଷପରେ ତାହା ବାସ୍ତବରେ ପରିଣତ ହୋଇଛି । ଆଧୁନିକ ଓଡ଼ିଶାର ବନ୍ଦର ନିର୍ମାଣ ଯୁଗର ଅଗ୍ରଦୂତ ବିଜୁବାବୁଙ୍କ ସୁପୁତ୍ର ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ନବନିର୍ମିତ ବୃହତ ଧାମରା-ଚାନ୍ଦବାଲି ବନ୍ଦରକୁ ୨୦୧୧ ମସିହା ଡିସେମ୍ବର ୧୮ ତାରିଖରେ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କଲେ । ବିଜୁବାବୁଙ୍କ ପାଇଁ ପାରାଦୀପ ଯାହା, ନବୀନ ବାବୁଙ୍କ ପାଇଁ ଧାମରା ସେଇଆ । ଏହି ବନ୍ଦର ନିର୍ମାଣ କାର୍ଯ୍ୟ ୨୦୦୦ ମସିହାରୁ ଶୁଭାରମ୍ଭ ହୋଇ ଦୀର୍ଘ ୧୨ ବର୍ଷ ଚାଲିଥିଲା । ଜାତିର ବନ୍ଦରକୁ ଗଢ଼ିବା ପାଇଁ ଜନତା ଆଗ୍ରହରେ ଅପେକ୍ଷା କରିଥିଲେ । ବନ୍ଦର କୋଣାର୍କର ନିର୍ମାଣ ପାଇଁ ସରକାର ଇଚ୍ଛାପ୍ରକାଶ କଲେ ଏବଂ ଚୂକି ମାରିଲେ । ଆନନ୍ଦରେ ଅଧୀର ହୋଇଉଠିଲେ ରାଜ୍ୟବାସୀ । ଧାମରା-ଚାନ୍ଦବାଲି ବନ୍ଦରର ଭାଗ୍ୟଲକ୍ଷ୍ମୀ ଫେରି ଆସିଲେ । ସୁଖର କଥା ଓଡ଼ିଶା ଉପକୂଳର ଆଉ କେତେକ ସ୍ଥାନରେ ମଧ୍ୟ ନୂତନ ବନ୍ଦର ଗଢ଼ି ଉଠିବାକୁ ଯାଉଛି । ଯଦି ହୁଏ ବିଜୁ ବାବୁ ଯେଉଁ ବନ୍ଦରକୁ ବନ୍ଦରର ସ୍ୱପ୍ନ ଦେଖିଥିଲେ, ତାହା ସାକାର ହେବ । ଓଡ଼ିଆମାନେ ତାଙ୍କର ପୂର୍ବ ଗୌରବ ଫେରିପାଇବେ । ଓଡ଼ିଶା ଏକ ବନ୍ଦର ରାଜ୍ୟର ମାନ୍ୟତା ପାଇବ ।

ଚାନ୍ଦବାଲି ମହାବିଦ୍ୟାଳୟ,
ଚାନ୍ଦବାଲି, ଭଦ୍ରକ

# ସବୁ ଭାରତୀୟ ଗୋଟିଏ ଜାତି

**ବ୍ରଜ ପାଇକରାୟ**

ଉଣେଇଶ ସତଚାଳିଶ ମସିହା
ତାରିଖ ଅଗଷ୍ଟ ପନ୍ଦର
ପରାଧୀନତାର ଶୃଙ୍ଖଳ କାଟି
ସ୍ୱାଧୀନତାର ପୁଲକ ବାଣ୍ଟି
ହିମଗିରି ଭାଲେ ଉଇଁଲା ତପନ,
ଆଲୋକିତ କରି ସାଗର ।
ଜାନୁଆରୀ ମାସ ଛବିଶି ତାରିଖ
ସନ ଉଣେଇଶ ପଚାଶ,
ଏଇଦିନଠାରୁ ହେଲା କାର୍ଯ୍ୟକାରୀ,
ଆମ ସମ୍ବିଧାନ, ଆଇନ ଶାସନ
ସାଧାରଣତନ୍ତ୍ର ଦିବସ ।

ଶାନ୍ତି ପଥର ଯାତ୍ରୀ ଆମେରେ
ତ୍ରିରଙ୍ଗା ପତାକା ଆମର ଗର୍ବ
ହିନ୍ଦୁ, ମୁସଲମାନ, ସଭିଏଁ ସମାନ
ଜାତୀୟ ସଂହତି ଆମର ଧର୍ମ
ସାର୍ବଭୌମ ଭାରତବର୍ଷେ
ଧର୍ମନିରପେକ୍ଷ ଆମର ନୀତି,
ସମାଜବାଦରେ ବିଶ୍ୱାସୀ ଆମେ
ସବୁ ଭାରତୀୟ ଗୋଟିଏ ଜାତି ।

କେ-୪/୬୦୯, କଳିଙ୍ଗ ନଗର
ପୋଷ୍ଟ- ପାତ୍ରପଡା
ଭୁବନେଶ୍ୱର-୧୯



# ନୂତନ ବର୍ଷର ଅନୁଚିନ୍ତା

**ବିକ୍ରମ କେଶରୀ ବର୍ମା**

'କଳିଙ୍ଗାଃ ସାହାସିକାଃ' ଜାତି ନାମରେ ଯେ ସମଗ୍ର ବିଶ୍ୱରେ ପରିଚିତ ଥିଲା, ଯାହାର ସମ୍ରାଟ ଐର ଖାରବେଳ ମଗଧକୁ ପରାସ୍ତ କରିବା ସଙ୍ଗେ ସଙ୍ଗେ ଗ୍ରୀକ୍ ସେନାପତି ଡ୍ରିମିଟିଅସଙ୍କୁ ପରାସ୍ତ କରିଥିଲେ, ଯେଉଁ ଜାତିର ବଣିକ ପୁଅମାନେ ସାଗରର ଉତ୍ତାଳ ତରଙ୍ଗକୁ ଖାତିର ନକରି ଜାଭା, ସୁମାତ୍ରା ଆଦି ଦ୍ୱୀପରେ ବାଣିଜ୍ୟ କରି ସୁନା, ହୀରା, ମଣି ମାଣିକ ବୋହି ଆଣୁଥିଲେ, ସେହି ଭୂଖଣ୍ଡ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ଗଙ୍ଗାଠାରୁ କୃଷ୍ଣା–କାବେରୀ ନଦୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ।

ଯେଉଁ ଜାତିର ଆରାଧ୍ୟ ଦେବତା ସ୍ୱୟଂ ଜଗନ୍ନାଥ, ମନ୍ଦିର ହେଉଛି ଶ୍ରୀମନ୍ଦିର, ଦାଣ୍ଡ ହେଉଛି ବଡ଼ଦାଣ୍ଡ, ସମୁଦ୍ର ହେଉଛି ମହୋଦଧି, ଶ୍ମଶାନର ନାମ ସ୍ୱର୍ଗଦ୍ୱାର, ପର୍ବତର ନାମ ମେଘାସନ ଓ ନଦୀର ନାମ ମହାନଦୀ।

ବ୍ଲାକ୍ ପାଗୋଡ଼ା କୁହାଯାଉଥିବା କୋଣାର୍କ ମନ୍ଦିର ମୁଣ୍ଡି ମାରିଥିବା ବାରବରଷର ଧର୍ମପଦ। କେଶରୀ ବଂଶ, ଗଙ୍ଗ ବଂଶ ଓ ସୂର୍ଯ୍ୟ ବଂଶର ରାଜାମାନେ ଯଶସ୍ୱୀ ଥିଲେ। ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, କଟକର କାଠଜୋଡ଼ି ପଥର ବନ୍ଧ ଓ ଯାଜପୁରର ବିରଜା ମନ୍ଦିର କେଶରୀ ବଂଶର ଅବଦାନ।

ଏପରି ଏକ ଦୁର୍ଦ୍ଧର୍ଷ, ପ୍ରଚଣ୍ଡ ସାହସୀ ଜାତି ଘଟଣା ଚକ୍ରରେ ଭାଗ୍ୟର ବିପର୍ଯ୍ୟୟ ଫଳରେ ନିଜର ପୂର୍ବ ଗୌରବ ହରାଇ ବସିଛି। ଆଜି ଦେଶରେ ସବୁଠାରୁ ଗରିବ ରାଜ୍ୟରେ ପରିଣତ ହୋଇଥିବା ଓଡ଼ିଶା ଦିନେ ସ୍ୱର୍ଣ୍ଣପ୍ରସୂ ଥିଲା। ଏହାର ଭୂମି ତଳେ ଲୌହ, ମାଙ୍ଗାନିଜ, କ୍ରୋମ୍, ଅଭ୍ର, ଆଲୁମିନିୟମ, କୋଇଲା ଏପରିକି ସୁନା ରହିଥିବା ବେଳେ ଓଡ଼ିଶା ଗରିବ ରାଜ୍ୟ ହୋଇ ନପାରେ।

ଓଡ଼ିଶା ଶିଳ୍ପ କ୍ଷେତ୍ରରେ ପଛୁଆ ଥିଲା। ପ୍ରଥମେ ସରକାରୀ ଉଦ୍ୟୋଗରେ ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠିତ ହୋଇଥିଲା। ବହୁଦିନ ଧରି ଓଡ଼ିଶାର ୨ୟ ଇସ୍ପାତ କାରଖାନା ପ୍ରତିଷ୍ଠା ହୋଇପାରି ନଥିଲା। ପ୍ରବାଦ ପୁରୁଷ ବିଜୁବାବୁ କଳିଙ୍ଗ ନଗରୀରେ ୨ୟ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ପାଇଁ ସୁରଜପଲଙ୍କୁ ରାଜି କରାଇ ଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଏହି ନିଷ୍ପତ୍ତିରୁ ଓହରି ଯାଇଥିଲେ। କିନ୍ତୁ ଆଜି ଶିଳ୍ପାୟନରେ ସୁବର୍ଣ୍ଣଯୁଗ ଓଡ଼ିଶାରେ ଆରମ୍ଭ ହୋଇଛି। ଏକାଧିକ ଇସ୍ପାତ କାରଖାନା, ଆଲୁମିନିୟମ, ଫେରୋକ୍ରମ, କ୍ରୋମାଇଟ୍, ବିଦ୍ୟୁତ୍ ଉତ୍ପାଦନ କାରଖାନା ପ୍ରତିଷ୍ଠା ହେଲାଣି। ଟିସ୍କୋ, ଜିନ୍ଦଲ, ଭୂଷଣ, ଆରତୀ, ମୋନେଟ୍, ବେଦାନ୍ତ, ପୋସ୍କୋ ଆଦି ବଡ଼ ବଡ଼ କମ୍ପାନୀ ସେମାନଙ୍କ କାରଖାନା ପ୍ରତିଷ୍ଠା କଲେଣି। ବିଶ୍ୱର ଦ୍ୱିତୀୟ ବୃହତ୍ତମ ଇସ୍ପାତ କାରଖାନା ପୋସ୍କୋ ପ୍ରତିଷ୍ଠା ୨୦୧୪ରେ ହେବାର ସମ୍ଭାବନା ସୃଷ୍ଟି ହୋଇଛି। କାରଣ ବହୁବାଧା ବିଘ୍ନ ସତ୍ତ୍ୱେ ଅଧିକରଣ ହୋଇପାରିଛି।

ଓଡ଼ିଶାରେ ଏକମାତ୍ର ବନ୍ଦର ପାରାଦ୍ୱୀପଠାରେ ବିଜୁବାବୁଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ଏବେ ଏକାଧିକ ବନ୍ଦର ଗୋପାଳପୁର, ଧାମରା ଇତ୍ୟାଦି ପ୍ରତିଷ୍ଠା କାମ ଆରମ୍ଭ ଚାଲିଛି। ମୁଖ୍ୟମନ୍ତ୍ରୀ ନବୀନବାବୁଙ୍କ ୧୪ ବର୍ଷ ଶାସନକାଳ ମଧ୍ୟରେ ରାଜ୍ୟରେ ଶିଳ୍ପାୟନର ସୁବର୍ଣ୍ଣ ଯୁଗ ଆରମ୍ଭ ହୋଇଛି, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ।

ପ୍ରବାଦ ପୁରୁଷ ବିଜୁବାବୁ ସବୁବେଳେ ଓଡ଼ିଆ ଜାତିକୁ ସାହସୀ ହେବା ପାଇଁ ପରାମର୍ଶ ଦେଉଥିଲେ। ସେ ସବୁବେଳେ




କଳିଙ୍ଗ ସମ୍ରାଟ ଐର ମେଘବାହନ ଖାରବେଳ ପ୍ରଚଣ୍ଡ ସାହସ କଥା ଯୁବପିଢ଼ିଙ୍କ ଆଗରେ ଉପସ୍ଥାପନ କରୁଥିଲେ। ଉତ୍କଳଗୌରବ ମଧୁବାବୁ କହିଥିଲେ– ତୁ ପରା ବୋଲାଉ ଉତ୍କଳ ସନ୍ତାନ ତେବେ କିମ୍ପା ତୁହି ଭୀରୁ।

ଗୁରୁଗୋବିନ୍ଦ ସିଂହ ଶିଖ ଜାତିକୁ ସାହସୀ କରିପାରିଥିଲେ। ଛତ୍ରପତି ଶିବାଜୀ ମରହଟ୍ଟା ଜାତିକୁ ସାହସୀ ଜାତିରେ ପରିଣତ କରିଥିଲେ କିନ୍ତୁ ପ୍ରଚଣ୍ଡ ସାହସୀ ଜାତି ଓଡ଼ିଆ ତାହାର ସାହସ ହରାଇ ଥିବାରୁ ବୁଢ଼ୁବାବୁ ସବୁବେଳେ ଦୁଃଖ ପ୍ରକାଶ କରୁଥିଲେ।

ନୂତନ ବର୍ଷ ଓଡ଼ିଆ ଜାତିକୁ ପୂର୍ବପରି ସାହସୀ ଜାତିରେ ପରିଣତ କରୁ, ଏହାହିଁ କୋଟି କୋଟି ଓଡ଼ିଆଙ୍କ ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

ପୂର୍ବତନ ବିଧାୟକ, ମାହାଙ୍ଗା

# ନେତାଜୀ

**ବିନ୍ଦୁସାଗର ଓଝା**

ଧନ୍ୟ ସେ ମା' ତୁମ ପରି
ବୀର ଯୋଦ୍ଧାକୁ ପାଇ
ସେଇ ବାର, ସେଇ ତିଥି
ସେଇ ଦିନ ବି ଧନ୍ୟ ହୋଇଗଲା
ତୁମ ଆବିର୍ଭାବରେ ।
କାମନା ବାସନା ସୁଖ ସମ୍ଭୋଗ
ଐଶ୍ୱର୍ଯ୍ୟ ଝିଲ୍‌ମିଲ୍ ସ୍ୱପ୍ନକୁ
ତୁଚ୍ଛ କରି ଦେଇ
ହସି ହସି ଡେଇଁଥିଲ
ଅନଳ ବକ୍ଷକୁ
ଦେଶ ମାତୃକାର ନୟନରୁ
ଲୋତକ ପୋଛିବାକୁ ।
ବନ୍ଦୀଶାଳାର କାଳିମା ଭ୍ରୂକ୍ଷେପ ନକରି
ମୁକ୍ତିର ସଳିତା ଜଳାଇବାକୁ
ନିଜ ଶରୀରର ଲହୁରୂପି ତୈଳରେ ।
କୋଟିପ୍ରାଣର ମଙ୍ଗଳ ପାଇଁ
ଗଳାରେ ପଥର ବାନ୍ଧି
ଲମ୍ଫ ଦେଇଥିଲ ଅତଳ ବାରିଧିକୁ
ତେଜବୋଳା କୁହାଟରେ
ଥରେଇ ଦେଇଥିଲ
ଲୁଂଠନକାରୀର ବୁକୁ
ବିଜୟ ବୈଜୟନ୍ତ ଉଡାଇବାକୁ ।
ସଳିତା ସାଜି
ତିଳ ତିଳ ହୋଇ ଜଳି
ଆଲୋକିତ କରିଦେଲ ଦେଶ ମାତୃକାର
କୋଣ ଅନୁକୋଣ
ହେ ବୀର !
ତୁମ ଜନ୍ମ ଦିବସକୁ ସଲାମ୍
ହେ ମୃତ୍ୟୁଞ୍ଜୟୀ
ତୁମକୁ କୋଟି ସଲାମ୍ ।

ଗ୍ରାମ–ମକୁନ୍ଦପୁର
ଡାକଘର– ଅଚ୍ୟୁତପୁର
ଭାୟା– ରାଜକନିକା
ଜିଲ୍ଲା– କେନ୍ଦ୍ରାପଡା





# ଅଷ୍ଟମ ତୋଷାଳୀ ଜାତୀୟ କ୍ରାଫ୍ଟ ମେଳା–୨୦୧୩

**ସୁଚେତା ପ୍ରିୟଦର୍ଶିନୀ**

ଓଡ଼ିଶା ସରକାରଙ୍କ ବୟନ, ହସ୍ତତନ୍ତ ଏବଂ ହସ୍ତଶିଳ୍ପ ବିଭାଗ ଦ୍ୱାରା ଆୟୋଜିତ ଅଷ୍ଟମ ତୋଷାଳୀ ଜାତୀୟ ହସ୍ତଶିଳ୍ପ ମେଳା ଭୁବନେଶ୍ୱର ଜନତା ମଇଦାନଠାରେ ଗତ ଡିସେମ୍ବର ୧୫ ତାରିଖରୁ ଆରମ୍ଭ ହୋଇ ୨୭ ତାରିଖରେ ଶେଷ ହୋଇଛି । ତେର ଦିନ ଧରି ଚାଲିଥିବା ଏହି ମେଳା କେବଳ ରାଜଧାନୀ ଭୁବନେଶ୍ୱର ନୁହେଁ, ଓଡ଼ିଶାର ବିଭିନ୍ନ ଅଞ୍ଚଳର ଏବଂ ବିଭିନ୍ନ ବର୍ଗର ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସଫଳ ହୋଇଥିଲା । ଏହି ମେଳାରେ ୩୦୦ରୁ ଉର୍ଦ୍ଧ୍ୱ ହସ୍ତତନ୍ତ ଏବଂ ହସ୍ତଶିଳ୍ପ ଷ୍ଟଲ ଖୋଲିଥିଲା, ଯେଉଁଥିରେ ଦେଶର ୨୨ଟି ରାଜ୍ୟର କାରିଗର, ବୁଣାକାର, ସ୍ଥପତି ଓ ଚିତ୍ରଶିଳ୍ପୀ ଯୋଗ ଦେଇ ସେମାନଙ୍କର ସାମଗ୍ରୀ ବିକ୍ରିବଟା କରିଥିଲେ । ମୁଖତଃ ଓଡ଼ିଶା ସମେତ ଆନ୍ଧ୍ରପ୍ରଦେଶ, ଆସାମ, ବିହାର, ଛତିଶଗଡ, ଦିଲ୍ଲୀ, ଗୁଜୁରାଟ, ହରିଆଣା, ଜାମ୍ମୁ ଏବଂ କାଶ୍ମୀର, ଝାଡଖଣ୍ଡ, କର୍ଣ୍ଣାଟକ, ମଣିପୁର, ମହାରାଷ୍ଟ୍ର, ମେଘାଳୟ, ମଧ୍ୟପ୍ରଦେଶ, ପଞ୍ଜାବ, ରାଜସ୍ଥାନ, ତ୍ରିପୁରା, ଉତ୍ତରପ୍ରଦେଶ, ତାମିଲନାଡୁ, ପଶ୍ଚିମବଙ୍ଗ ପ୍ରଭୃତି ରାଜ୍ୟର ହସ୍ତତନ୍ତ ଏବଂ ହସ୍ତଶିଳ୍ପ ସାମଗ୍ରୀ ଉପଲବ୍ଧ ହେଉଥିଲା । ଅଧିକାଂଶ ଜାତୀୟ ପୁରସ୍କାର ପ୍ରାପ୍ତ ବୁଣାକାର ଏବଂ କାରିଗର ଯୋଗ ଦେଇଥିବାରୁ ଭିନ୍ନ ଏବଂ ବିରଳ ଡିଜାଇନର ଜିନିଷ ଉପଲବ୍ଧ ହେବା ଥିଲା ଏହି ମେଳାର ବିଶେଷତ୍ୱ ।



ଓଡ଼ିଶା ହସ୍ତତନ୍ତ ମଧ୍ୟରେ ବୟନିକା, ଅମ୍ଳାନ, ସମ୍ବଲପୁରୀ ବସ୍ତ୍ରାଳୟ ଏବଂ ୪୬ଟି ପ୍ରାଥମିକ ବୁଣାକାର ସହଯୋଗ ସମିତି ଓଡ଼ିଶାର ବିପୁଳ ହସ୍ତତନ୍ତର ସମ୍ଭାର ପ୍ରଦର୍ଶନ କରିଥିଲେ, ଯାହାର ବିଶେଷ ଚାହିଦା ରହିଥିଲା । ସେହିପରି କାଶ୍ମୀର ଶାଲ୍, ଉତ୍ତରପ୍ରଦେଶର ପ୍ରସିଦ୍ଧ ଫର୍ଣ୍ଣିଚର, ଆଗ୍ରାର ପ୍ରସିଦ୍ଧ ଚମଡା ତିଆରି ସାମଗ୍ରୀ, ବିହାରର ମଧୁବନୀ ପେଣ୍ଟିଂ, ଉତ୍ତର ପୂର୍ବ ଭାରତ ଓ ପଶ୍ଚିମବଙ୍ଗର ଡ୍ରାଏ ଫ୍ଲାୱାର, ମହାରାଷ୍ଟ୍ରର କୋହ୍ଲାପୁରୀ ଚପଲ, ରୁପା, ତାରକସି କାମ, ପଟ୍ଟଚିତ୍ର, ପଥର ଖୋଦେଇ ମୂର୍ତ୍ତି ଆଦି କିଣିବା ପାଇଁ ପ୍ରବଳ ଜନଗହଳି ପରିଲକ୍ଷିତ ହୋଇଥିଲା ।

ଚଳିତବର୍ଷ ଓଡ଼ିଶାର ସମୃଦ୍ଧ ଟସର ଶିଳ୍ପ ଏବଂ ଟସର ଉତ୍ପାଦନର ଉତ୍କର୍ଷତାକୁ ନେଇ ଥିମ ପ୍ୟାଭିଲିଅନ୍ 'ସିମ୍ଫୋନୀ ଇନ୍ ଟସର' (Symphony in Tassar)ପରିକଳ୍ପନା ଥିଲା ମେଳାର ଆକର୍ଷଣର କେନ୍ଦ୍ରବିନ୍ଦୁ । ଯେଉଁଥିରେ ଟସର ଚାଷ, ସଂଗ୍ରହଠାରୁ ବସ୍ତ୍ର ପ୍ରସ୍ତୁତି ପର୍ଯ୍ୟନ୍ତ ସମସ୍ତ ଜୀବନ ଚକ୍ରକୁ ଅତି ନିଖୁଣ ଭାବେ ପ୍ରଦର୍ଶନ କରାଯାଇଥିଲା । ଟସରରୁ ନୂଆ ନୂଆ ଡିଜାଇନରେ ପ୍ରସ୍ତୁତ ବିଭିନ୍ନ ଆଧୁନିକ ପୋଷାକର ବିଶାଳ ବର୍ଗମାଳା ଯୁବପିଢିକୁ ମଧ୍ୟ ବେଶ୍ ଆକୃଷ୍ଟ କରିଥିଲା, ଯାହାଫଳରେ ଚଳିତବର୍ଷ ଟସର ସାମଗ୍ରୀ ଅଧିକ ପରିମାଣରେ ବିକ୍ରି ହୋଇଥିଲା ।

◆◆◆





ହସ୍ତତନ୍ତ ଏବଂ ହସ୍ତଶିଳ୍ପ କ୍ଷେତ୍ରରେ ବୈଷୟିକ ଶିକ୍ଷା ପ୍ରଦାନ କରୁଥିବା ପ୍ରମୁଖ ଅନୁଷ୍ଠାନ ନିଫ୍ଟ-ଭୁବନେଶ୍ୱର, ସିଡାକ୍-ଭୁବନେଶ୍ୱର, ଏଟିଡିସି- ଭୁବନେଶ୍ୱର, ସିଇଟି-ଭୁବନେଶ୍ୱର, ଆଇ.ଆଇ.ଏଚ୍.ଟି- ବରଗଡ ନିଜ ନିଜର ଷ୍ଟଲ ଖୋଲିଥିଲେ । ଯେଉଁଠାରେ ଫେସନ ଟେକ୍ନୋଲୋଜି କ୍ଷେତ୍ରରେ କ୍ୟାରିଅର କରିବାକୁ ଚାହୁଁଥିବା ଅନେକ ଛାତ୍ରଛାତ୍ରୀ ବୈଷୟିକ ପରାମର୍ଶ ପାଇଁ ଆସୁଥିବା ପରିଲକ୍ଷିତ ହେଉଥିଲା ।

ମେଳାର ଅନ୍ୟତମ ପ୍ରମୁଖ ଆକର୍ଷଣ ଥିଲା ପ୍ରତ୍ୟହ ସଂଧ୍ୟାରେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ମାଧ୍ୟମରେ ଆୟୋଜିତ ହେଉଥିବା ଆକର୍ଷଣୀୟ ସାଂସ୍କୃତିକ କାର୍ଯ୍ୟକ୍ରମ । ଉଦ୍‌ଘାଟନୀ ସଂଧ୍ୟାରେ 'ସୃଜନ' ଅନୁଷ୍ଠାନ ତରଫରୁ ଓଡ଼ିଶୀ ନୃତ୍ୟାଭିନୟ ଭୋ ଶମ୍ଭୋ, ଭଗବତୀ ସ୍ତୋତ୍ର ଓ 'ବିଶ୍ୱାସ' ଆଦି ମଞ୍ଚସ୍ଥ କରାଯାଇଥିଲା । ଅନ୍ୟ ଦିବସମାନଙ୍କରେ ଗୁଜୁରାଟର ସିଦ୍ଧି ଧମାଲ ଗ୍ରୁପ୍‌ର ଆଫ୍ରିକୀୟ ଆଦିବାସୀ ନୃତ୍ୟ, ସମ୍ବଲପୁରୀ ଲୋକନୃତ୍ୟ, ଛଉ ନୃତ୍ୟ, କଣ୍ଢେଇନାଚ ପ୍ରଭୃତିକୁ ଦର୍ଶକମାନେ ମନଭରି ଉପଭୋଗ କରିଥିଲେ । ସେହିଭଳି ବଲିଉଡ୍‌ର ପ୍ରଖ୍ୟାତ କଣ୍ଠଶିଳ୍ପୀ ତଥା ସଙ୍ଗୀତଜ୍ଞ ବାପି ଲାହିରୀ ରେକ୍ସ ଡିସୁଜା, ଭଜନ ସମ୍ରାଟ ଅନୁପ ଜଲୋଟା, ପଦ୍ମଶ୍ରୀ ଭାରତୀ ବନ୍ଧୁଙ୍କ ସଂଗୀତ ପରିବେଷଣ ଥିଲା ବେଶ୍ ମନୋମୁଗ୍ଧକର । ପାରମ୍ପରିକ ଭାରତୀୟ ଖାଦ୍ୟ ସହ ଅନ୍ୟାନ୍ୟ ସ୍ୱାଦିଷ୍ଟ ଖାଦ୍ୟରେ ଭରପୂର ଫୁଡ୍‌କୋର୍ଟରେ ସର୍ବାଧିକ ଜନଗହଳି ଦେଖିବାକୁ ମିଳିଥିଲା । ବିଭିନ୍ନ ନାମୀଦାମୀ ହୋଟେଲ ଏଠାରେ ନିଜ ନିଜର ଫୁଡ୍‌ଷ୍ଟଲ୍ ଖୋଲିଥିଲେ । ଚଳିତବର୍ଷ ମେଳାରେ ୧୦ଲକ୍ଷ ୬୧ ହଜାର ଜନସମାଗମ ହୋଇଥିବା ବେଳେ ୭କୋଟି ୩୫ ଲକ୍ଷ ଟଙ୍କାର ବିକ୍ରିବଟା ହୋଇଥିଲା, ଯାହାକି ବିଗତ ବର୍ଷର ବ୍ୟବସାୟିକ କାରବାରଠାରୁ ଯଥେଷ୍ଟ ଅଧିକ ।



୨୦୦୬ ମସିହାରୁ ରାଜ୍ୟ ପର୍ଯ୍ୟଟନ ବିଭାଗ ଆନୁକୂଲ୍ୟରେ ଆରମ୍ଭ ହୋଇଥିବା ତୋଷାଳୀ ହସ୍ତଶିଳ୍ପ ମେଳା ଚଳିତବର୍ଷ ପ୍ରଥମ ଥର ପାଇଁ ବୟନ, ହସ୍ତତନ୍ତ ଏବଂ ହସ୍ତଶିଳ୍ପ ବିଭାଗ ଦ୍ୱାରା ଆୟୋଜିତ ହୋଇଥିଲା । ଚଳିତବର୍ଷ ଏହି ମେଳାକୁ କେନ୍ଦ୍ର ବାଣିଜ୍ୟ ଏବଂ ବୟନ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀମତୀ ଅନୀତା ଅଗ୍ନିହୋତ୍ରୀ ଉଦ୍‌ଘାଟନ କରିଥିଲେ । ଏହି ଉଦ୍‌ଘାଟନୀ ସମାରୋହରେ ବୟନ, ହସ୍ତତନ୍ତ ଓ ହସ୍ତଶିଳ୍ପ ସଚିବ ଶ୍ରୀ ସୁରେନ୍ଦ୍ର କୁମାର, ବୟନ ନିର୍ଦ୍ଦେଶକ ଶ୍ରୀ ସଂଜୟ କୁମାର ହାବାଡା ଏବଂ ଯୁଗ୍ମ ସଚିବ ତଥା ତୋଷାଳୀ କ୍ରାଫ୍ଟ ମେଳାର ନୋଡାଲ ଅଫିସର ଶ୍ରୀ ରାଜା ପରିଜା ପ୍ରମୁଖ ଯୋଗ ଦେଇଥିଲେ ।

ଏହି ମେଳା ଆୟୋଜନରେ ରାଜ୍ୟ ପର୍ଯ୍ୟଟନ ବିଭାଗ, କେନ୍ଦ୍ର ଉନ୍ନୟନ କମିଶନର (ହସ୍ତତନ୍ତ) ଏବଂ କେନ୍ଦ୍ର ଉନ୍ନୟନ କମିଶନର (ହସ୍ତଶିଳ୍ପ) ସହଯୋଗ କରିଥିଲେ ।

ଭାରତର ସମୃଦ୍ଧ ପାରମ୍ପରିକ ହସ୍ତତନ୍ତ ଏବଂ ହସ୍ତଶିଳ୍ପର ସଂରକ୍ଷଣ, ପୁନରୁଦ୍ଧାର, ପ୍ରଚାର ପ୍ରସାର ଏବଂ ଲୋକପ୍ରିୟତା ଅର୍ଜନରେ ତୋଷାଳୀ ମେଳା ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଛି । ବିଶେଷକରି ଦେଶର ବିଭିନ୍ନ ଅଞ୍ଚଳର କାରିଗର, ବୁଣାକାର, ଚିତ୍ରଶିଳ୍ପୀ ଏବଂ ସ୍ଥପତିମାନଙ୍କ ନିଖୁଣ ପାରମ୍ପରିକ ହସ୍ତକଳାଠାରୁ ଆରମ୍ଭ କରି ଆଧୁନିକ ହସ୍ତଶିଳ୍ପର ପ୍ରଦର୍ଶନ ଏବଂ ବିକ୍ରିବଟା ପାଇଁ ଏହି ମେଳା ସର୍ବୋତ୍କୃଷ୍ଟ ମାଧ୍ୟମଭାବେ ନିଜସ୍ୱ ପରିଚୟ ସୃଷ୍ଟି କରିବାରେ ସଫଳ ହୋଇଛି ।

ମୋଟାମୋଟି ଭାବେ ଅଷ୍ଟମ ତୋଷାଳୀ ଜାତୀୟ କ୍ରାଫ୍ଟ ମେଳା ଏକ ଛୋଟିଆ ଭାରତର ଭ୍ରମ ସୃଷ୍ଟି କରିଥିଲା । ପାରମ୍ପରିକ ହସ୍ତତନ୍ତ, ହସ୍ତଶିଳ୍ପ, ସ୍ୱାଦିଷ୍ଟ ଖାଦ୍ୟ, ସାଂସ୍କୃତିକ କାର୍ଯ୍ୟକ୍ରମ ଏବଂ ମେଳାର ଆକର୍ଷଣୀୟ ସାଜସଜ୍ଜା ଲୋକମାନଙ୍କ ହୃଦୟକୁ ଛୁଇଁଥିଲା । ମେଳାର ସମସ୍ତ ଆୟୋଜନ ତଦାରଖ କରିଥିଲେ ବିଭାଗୀୟ ସଚିବ ଶ୍ରୀ ସୁରେନ୍ଦ୍ର କୁମାର । ଚଳିତବର୍ଷ ତୋଷାଳୀ ମେଳାର ଜନସମାବେଶ, ବିକ୍ରିବଟା, ସାଜସଜ୍ଜା ସୁରଜକୁଣ୍ଡ ମେଳାର ସମକକ୍ଷ ହୋଇପାରିଛି ଏବଂ ଏହି ମେଳାକୁ ଆଗାମୀ ବର୍ଷରେ ଆହୁରି ଆକର୍ଷଣୀୟ କରିବାକୁ ଉଦ୍ୟମ କରାଯିବ ବୋଲି ବିଭାଗ ତରଫରୁ ସୂଚନା ଦିଆଯାଇଛି ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ



# ଓଡ଼ିଶାର ଅରଣ୍ୟ ସମ୍ପଦ

**ହିମାଂଶୁ ଶେଖର ଫତେସିଂହ**

ପରିବେଶୀୟ ଭାରସାମ୍ୟ ରକ୍ଷାରେ ଅରଣ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ବାୟୁମଣ୍ଡଳରୁ ବିପୁଳ ପରିମାଣର ଅଙ୍ଗାରକାମ୍ଳ ଗ୍ୟାସ୍ ଶୋଷଣ କରି ବାୟୁ ପ୍ରଦୂଷଣ ଦୂରୀକରଣରେ ସହାୟକ ହୁଏ । ମୃତ୍ତିକାର ଉର୍ବରତା ଓ ଜଳୀୟ ବାଷ୍ପ ଧାରଣ କ୍ଷମତା ବୃଦ୍ଧି ଏବଂ ମୃତ୍ତିକା ସଂରକ୍ଷଣ କ୍ଷେତ୍ରରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରେ । ଏହା ଅରଣ୍ୟ, ଜଳବାୟୁ, ବୃଷ୍ଟିପାତ ଆଦିକୁ ପ୍ରଭାବିତ କରିବା ସହିତ ବନ୍ୟା, ବାତ୍ୟା, ମରୁଡି ଆଦି ପ୍ରାକୃତିକ ଦୁର୍ବିପାକର ନିୟନ୍ତ୍ରଣରେ ସହାୟକ ହୁଏ । ଏତଦ୍‌ବ୍ୟତୀତ ଅରଣ୍ୟରୁ ଜାଳେଣି କାଠ, ଗୃହ ଓ ଆସବାବ ନିର୍ମାଣ ପାଇଁ କାଠ, ଶିଳ୍ପ ନିମନ୍ତେ କଞ୍ଚାମାଲ, ପଶୁ ଖାଦ୍ୟ, ନାନାଦି ବନୌଷଧି, ଫଳମୂଳ ଓ ବହୁଧରଣର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀର ଗନ୍ତାଘର ହେଉଛି ଅରଣ୍ୟ । ଏହା ବହୁବିଧ ବୃକ୍ଷଲତାରେ ପରିପୂର୍ଣ୍ଣ ହେବା ସାଙ୍ଗକୁ ବହୁ ଜାତିର ପଶୁପକ୍ଷୀ, ସରୀସୃପ, କୀଟପତଙ୍ଗ, ଅଣୁଜୀବଙ୍କ ଆଶ୍ରୟସ୍ଥଳୀ ରୂପେ କାର୍ଯ୍ୟ କରେ । ତେଣୁ ମନୁଷ୍ୟ ଓ ପ୍ରାଣୀଜଗତ ପାଇଁ ଅରଣ୍ୟର ଭୂମିକା ବେଶ୍ ମହତ୍ତ୍ୱପୂର୍ଣ୍ଣ । ତେଣୁ ଜାତୀୟ ଅରଣ୍ୟ ନୀତିରେ ଦେଶର ମୋଟ ଭୂଭାଗର ଅନ୍ୟୁନ ୩୩ ପ୍ରତିଶତ ଅରଣ୍ୟରେ ଆଚ୍ଛାଦିତ ରହିବା ଉପରେ ଗୁରୁତ୍ୱାରୋପ କରାଯାଇଛି ।

ଗତ ୨୦୦୮ ଅକ୍ଟୋବର ମାସରୁ ୨୦୦୯ ମାର୍ଚ୍ଚ ମାସ ମଧ୍ୟରେ ଭାରତର ରିସୋର୍ସସାଟ୍ ବା ଆଇ.ଆର.ଏସ୍–ପି–୬ ଦୂରସମ୍ବେଦୀ ଉପଗ୍ରହ ଯୋଗେ ଭାରତର ଅରଣ୍ୟ ସର୍ବେକ୍ଷଣ ସଂସ୍ଥା ତରଫରୁ ଅରଣ୍ୟ ସର୍ବେକ୍ଷଣ କରାଯାଇ ଗତବର୍ଷ 'ଭାରତରେ ଅରଣ୍ୟର ସ୍ଥିତି–୨୦୧୧' ରିପୋର୍ଟ ପ୍ରକାଶ ପାଇଛି । ଏହି ରିପୋର୍ଟରେ ଭାରତର ବିଭିନ୍ନ ରାଜ୍ୟରେ ଅରଣ୍ୟର ସ୍ଥିତି ଓ ପ୍ରକୃତି ସମ୍ପର୍କିତ ତଥ୍ୟ ସନ୍ନିବେସିତ ହୋଇଛି । ଏହି ରିପୋର୍ଟରେ ଦେଶର ଅରଣ୍ୟକୁ ଅତି ଘନ ଅରଣ୍ୟ, ମଧ୍ୟମ ଘନ ଅରଣ୍ୟ ଓ ମୁକ୍ତ ଅରଣ୍ୟ ନାମରେ ତିନିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଅତି ଘନ ଅରଣ୍ୟର ବିତାନର ଘନତା ୭୦ ପ୍ରତିଶତରୁ ଅଧିକ ହୋଇଥାଏ । ସେହିପରି ମଧ୍ୟମ ଘନ ଅରଣ୍ୟ ଓ ମୁକ୍ତ ଅରଣ୍ୟରେ ବିତାନର ଘନତା ଯଥାକ୍ରମେ ୪୦ରୁ ୭୦ ପ୍ରତିଶତ ଓ ୧୦ରୁ ୪୦ ପ୍ରତିଶତ ମଧ୍ୟରେ ରହେ । ଅରଣ୍ୟରେ ବିତାନର ଘନତା ୧୦ ପ୍ରତିଶତରୁ କମ୍ ହୋଇଥିଲେ, ତାହାକୁ ବୁଦୁବୁଦିକିଆ ଅରଣ୍ୟ କୁହାଯାଏ ।

ଏହି ରିପୋର୍ଟରୁ ପ୍ରକାଶିତ ଯେ, ଓଡ଼ିଶାର ସମୁଦାୟ ଭୌଗୋଳିକ କ୍ଷେତ୍ରଫଳ ୧୫୫୭୦୭ ବର୍ଗ କି.ମି. ହୋଇଥିବା ବେଳେ ଏଥିମଧ୍ୟରୁ ଅରଣ୍ୟାଚ୍ଛାଦିତ ଅଞ୍ଚଳର ପରିମାଣ ହେଉଛି ୪୮,୯୦୩ ବର୍ଗ କି.ମି. । ଏହା ରାଜ୍ୟର ମୋଟ ଭୂଭାଗର ପ୍ରାୟ ୩୧.୪୧ ପ୍ରତିଶତ ସହ ସମାନ । ଏହା ମଧ୍ୟରେ ୭୦୬୦ ବର୍ଗ କି.ମି. ଅତି ଘନ ଅରଣ୍ୟ ୨୧,୩୬୬ ବର୍ଗ କି.ମି. ମଧ୍ୟମ ଘନ ଅରଣ୍ୟ ଓ ୨୦,୪୭୭ ବର୍ଗ କିମି ଅରଣ୍ୟ ଅନ୍ତର୍ଭୁକ୍ତ । ଏହାବ୍ୟତୀତ ଆମ ରାଜ୍ୟରେ ୪୭୩୪ ବର୍ଗ କିମି ପରିମିତ ବୁଦୁବୁଦିକିଆ ଅରଣ୍ୟ ରହିଛି, ଯାହାକି ରାଜ୍ୟର ଭୌଗୋଳିକ ଭୂଭାଗର ୩.୦୪ ପ୍ରତିଶତ । ଭାରତରେ ଅରଣ୍ୟସ୍ଥିତି ୨୦୦୯ ରିପୋର୍ଟରେ ରାଜ୍ୟ ମୋଟ ଅରଣ୍ୟର ପରିମାଣ ୪୮,୮୫୪ ବର୍ଗ କି.ମି. ବୋଲି ଆକଳନ କରାଯାଇଥିଲା । ମାତ୍ର ବର୍ତ୍ତମାନର ରିପୋର୍ଟରେ ଏଥିରେ ୪୮ ବର୍ଗ କି.ମି. ବୃଦ୍ଧି ପାଇଥିବାର ଦର୍ଶାଯାଇଛି । ରାଜ୍ୟରେ ବନ ସଂରକ୍ଷଣ କ୍ଷେତ୍ରରେ ସଫଳତା ଓ ବୁଦୁବୁଦିକିଆ ଅରଣ୍ୟରେ ବ୍ୟାପକ ବାଉଁଶ ଓ ଶାଗୁଆନ୍ ଗଛ ରୋପଣ କାର୍ଯ୍ୟକ୍ରମରେ ଅଗ୍ରଗତି ଘଟିଥିବାରୁ ଏହା ସମ୍ଭବପର ହୋଇପାରିଛି । ଏହି ରିପୋର୍ଟରେ ପ୍ରକାଶିତ ଆମ ରାଜ୍ୟର ବିଭିନ୍ନ



ଜିଲ୍ଲାରେ ଅରଣ୍ୟର ପରିମାଣ ଆକଳନ ସମ୍ପର୍କିତ ତଥ୍ୟ ନିମ୍ନ ସାରଣୀରେ ଦିଆଯାଇଛି । ଏହି ରିପୋର୍ଟରେ କନ୍ଧମାଳ ଜିଲ୍ଲାରେ ସର୍ବାଧିକ ୫୪୬୯ ବର୍ଗ କି.ମି, ସୁନ୍ଦରଗଡରେ ୪୦୫୨ ବର୍ଗ କି.ମି, ମୟୂରଭଞ୍ଜରେ ୩୯୯୨ ବର୍ଗ କି.ମି ଓ ସମ୍ବଲପୁର ଜିଲ୍ଲାରେ ୩୩୦୯ ବର୍ଗ କି.ମି ଅରଣ୍ୟ ଭୂମି ରହିଥିବାର ଦର୍ଶାଯାଇଛି ।

ଓଡ଼ିଶା ସରକାରଙ୍କ ତରଫରୁ ପ୍ରକାଶିତ ଓଡ଼ିଶା ଅର୍ଥନୈତିକ ସର୍ଭେ ୨୦୧୨–୧୩ରୁ ଜଣାଯାଏ ଯେ, ଗତ ୨୦୧୧ ମସିହା ସୁଦ୍ଧା ଓଡ଼ିଶାରେ ଲିପିବଦ୍ଧ ଅରଣ୍ୟାଚ୍ଛାଦିତ ଭୂଭାଗର ପରିମାଣ ହେଉଛି ୫୮,୧୩୬ ବର୍ଗ କି.ମି., ଯାହାକି ରାଜ୍ୟର ମୋଟ୍ ଭୌଗୋଳିକ ଭୂଭାଗର ୩୭.୩୪ ପ୍ରତିଶତ । ଏହି ଅରଣ୍ୟର ୪୫.୨୯ ଭାଗ ସଂରକ୍ଷିତ ଅରଣ୍ୟ, ୨୬.୭୦ଭାଗ ସୁରକ୍ଷିତ ଅରଣ୍ୟ ଓ ୨୮.୦୧ଭାଗ ଅଣ ଶ୍ରେଣୀଭୁକ୍ତ ଅରଣ୍ୟ ଅନ୍ତର୍ଭୁକ୍ତ । ଆମ ରାଜ୍ୟର କନ୍ଧମାଳ ଜିଲ୍ଲାରେ ସର୍ବାଧିକ ୭୧.୧୯ ଭାଗ, ମାଲକାନଗିରିରେ ୫୭.୯୫ଭାଗ ଗଜପତିରେ ୫୭.୦୯ଭାଗ, ଦେବଗଡରେ ୫୩.୦୭ ଭାଗ ଓ ନୟାଗଡ ଜିଲ୍ଲାରେ ୫୩.୦୫ଭାଗ ଭୌଗୋଳିକ କ୍ଷେତ୍ର ଅରଣ୍ୟରେ ଆଚ୍ଛାଦିତ ହୋଇରହିଛି । ଭାରତରେ ପରିଦୃଷ୍ଟ ୧୬ଟି ମୁଖ୍ୟ ପ୍ରକାରର ଅରଣ୍ୟ ମଧ୍ୟରୁ ଓଡ଼ିଶାରେ ୪ ପ୍ରକାରର ଅରଣ୍ୟ ଦେଖାଯାଏ । ସେଗୁଡିକ ମଧ୍ୟରେ କ୍ରାନ୍ତୀୟ ଶୁଷ୍କ ପର୍ଣ୍ଣମୋଚୀ ଅରଣ୍ୟ ୫୭.୮୭ଭାଗ, କ୍ରାନ୍ତୀୟ ଆର୍ଦ୍ର ପର୍ଣ୍ଣମୋଚୀ ଅରଣ୍ୟ ୩୯.୮୮ଭାଗ, କ୍ରାନ୍ତୀୟ ଅର୍ଦ୍ଧଚିରହରିତ ଅରଣ୍ୟ ୦.୬୮ଭାଗ ଓ ଉପକୂଳବର୍ତ୍ତୀ ଜୁଆରିଆ ଅରଣ୍ୟ ୦.୬୮ଭାଗ ଅନ୍ତର୍ଭୁକ୍ତ । ଗତ ୧୦ବର୍ଷ ମଧ୍ୟରେ ରାଜ୍ୟରେ ୧୪,୬୯୬.୬୬ ହେକ୍ଟର ଅରଣ୍ୟ ଭୂମିକୁ ଅଣ ଜଙ୍ଗଲ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଥିବାର ରିପୋର୍ଟ ମିଳିଛି । ଏହା ମଧ୍ୟରେ ଗତ ୨୦୦୯–୧୦ ମସିହାରେ ୨୩୧୦.୧୬ ହେକ୍ଟର, ୨୦୧୦–୧୧ରେ ୯୧୫.୯୫ ହେକ୍ଟର ଓ ୨୦୧୧–୧୨ରେ ୮୩୧.୧୦ ହେକ୍ଟର ଜଙ୍ଗଲ ଜମି ଅନ୍ତର୍ଭୁକ୍ତ । ଗତ ୨୦୧୧–୧୨ ମସିହାରେ ଜଳସେଚନ ଉଦ୍ଦେଶ୍ୟରେ ୨୩୦.୧୩ ହେକ୍ଟର, ଖଣି କାର୍ଯ୍ୟରେ ୫୪୨.୧୧ ହେକ୍ଟର, ଶିଳ୍ପ ଉଦ୍ଦେଶ୍ୟରେ ୧.୧୫ ଓ ଅନ୍ୟାନ୍ୟ ଉଦ୍ଦେଶ୍ୟରେ ୫୭.୬୮ ହେକ୍ଟର ଜଙ୍ଗଲ ଭୂମିକୁ ବ୍ୟବହାର କରାଯାଇଛି ।

**ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଅରଣ୍ୟର ଆକଳନ**

ସାରଣୀ–୧ (ବର୍ଗ କି.ମିରେ)

| ଜିଲ୍ଲାର ନାମ | ଭୌଗୋଳିକ କ୍ଷେତ୍ରଫଳ | ଅତି ଘନ ଅରଣ୍ୟ | ମଧ୍ୟମ ଘନ ଅରଣ୍ୟ | ମୁକ୍ତ ଅରଣ୍ୟ | ମୋଟ ଅରଣ୍ୟ | ଭୌଗୋଳିକ କ୍ଷେତ୍ରଫଳର ପ୍ରତିଶତ | ବୁଦୁବୁଦିକିଆ ଅରଣ୍ୟ |
|---|---|---|---|---|---|---|---|
| ଅନୁଗୁଳ | ୬୩୭୫ | ୩୬୩ | ୧୩୫୩ | ୯୫୧ | ୨,୬୬୭ | ୪୧.୮୪ | ୧୩୪ |
| ବାଲେଶ୍ୱର | ୩,୮୦୬ | ୨୩ | ୧୨୬ | ୧୫୫ | ୩୦୪ | ୭.୯୯ | ୫୧ |
| ବରଗଡ଼ | ୫୮୩୭ | ୧୭୬ | ୩୭୨ | ୩୪୮ | ୮୯୬ | ୧୫.୩୫ | ୭୯ |
| ଭଦ୍ରକ | ୨୫୦୫ | ୧ | ୧୦ | ୧୩ | ୨୪ | ୦.୯୬ | ୦ |
| ବଲାଙ୍ଗିର | ୬୫୭୫ | ୭୨ | ୨୨୧ | ୬୪୪ | ୯୩୭ | ୧୪.୨୫ | ୨୩୨ |
| ବୌଦ୍ଧ | ୩୦୯୮ | ୨୬୩ | ୫୪୪ | ୪୪୮ | ୧,୨୫୫ | ୪୦.୫୧ | ୭୯ |
| କଟକ | ୩୯୩୨ | ୪୬ | ୨୧୬ | ୪୦୫ | ୬୬୭ | ୧୬.୯୬ | ୧୧୯ |
| ଦେଓଗଡ | ୨୯୪୦ | ୧୫୫ | ୬୨୦ | ୫୬୬ | ୧୩୪୧ | ୪୫.୬୧ | ୧୪ |
| ଢେଙ୍କାନାଳ | ୪୪୫୨ | ୧୭୨ | ୩୪୩ | ୮୨୭ | ୧୩୪୨ | ୩୦.୧୪ | ୧୫୩ |
| ଗଜପତି | ୪୩୨୫ | ୯୦ | ୧୫୧୮ | ୮୭୯ | ୨,୪୮୭ | ୫୭.୫ | ୨୬୬ |





| ଜିଲ୍ଲାର ନାମ | ଭୌଗୋଳିକ କ୍ଷେତ୍ରଫଳ | ଅତି ଘନ ଅରଣ୍ୟ | ମଧ୍ୟମ ଘନ ଅରଣ୍ୟ | ମୁକ୍ତ ଅରଣ୍ୟ | ମୋଟ ଅରଣ୍ୟ | ଭୌଗୋଳିକ କ୍ଷେତ୍ରଫଳର ପ୍ରତିଶତ | ବୁଦୁବୁଦିକିଆ ଅରଣ୍ୟ |
|---|---|---|---|---|---|---|---|
| ଗଞ୍ଜାମ | ୮୨୦୬ | ୧୫୬ | ୧୦୩୭ | ୮୦୦ | ୧୯୯୩ | ୨୪.୨୯ | ୬୭୨ |
| ଜଗତସିଂହପୁର | ୧୬୬୮ | ୦ | ୭ | ୧୬ | ୨୩ | ୧.୩୮ | ୧ |
| ଯାଜପୁର | ୨୮୯୯ | ୬ | ୬୯ | ୧୮୦ | ୨୫୫ | ୮.୮୦ | ୫୩ |
| ଝାରସୁଗୁଡା | ୨୦୮୧ | ୪ | ୧୪୪ | ୧୫୧ | ୨୯୯ | ୧୪.୩୭ | ୪୪ |
| କଳାହାଣ୍ଡି | ୭୯୨୦ | ୩୬୯ | ୭୪୯ | ୧୨୧୩ | ୨୩୩୧ | ୨୯.୪୩ | ୪୫୪ |
| କେନ୍ଦ୍ରାପଡା | ୨୬୪୪ | ୮୧ | ୮୭ | ୨୬ | ୧୯୪ | ୭.୩୪ | ୬ |
| କେନ୍ଦୁଝର | ୮୩୦୩ | ୩୦୮ | ୧୪୦୧ | ୧୫୦୭ | ୩୨୧୬ | ୩୮.୭୩ | ୫୫ |
| କନ୍ଧମାଳ | ୮୦୨୧ | ୬୬୦ | ୨୬୪୨ | ୨୧୬୭ | ୫,୪୬୯ | ୬୮.୧୮ | ୩୫୮ |
| ଖୋର୍ଦ୍ଧା | ୨୮୧୩ | ୨୩ | ୧୯୧ | ୧୮୦ | ୩୯୪ | ୧୪.୦୧ | ୧୩୯ |
| କୋରାପୁଟ | ୮,୮୦୭ | ୧୦୧ | ୭୧୯ | ୮୭୪ | ୧୬୯୪ | ୧୯.୨୩ | ୬୧୨ |
| ମାଲକାନ୍‌ଗିରି | ୫୭୯୧ | ୧୫୭ | ୭୧୧ | ୧୩୧୮ | ୨୧୮୬ | ୩୭.୭୫ | ୩୬ |
| ମୟୂରଭଞ୍ଜ | ୧୦,୪୧୮ | ୧୩୪୦ | ୧୭୧୧ | ୯୪୧ | ୩୯୯୨ | ୩୮.୩୨ | ୩୩ |
| ନୂଆପଡା | ୩୮୫୨ | ୮୫ | ୪୮୧ | ୬୬୩ | ୧୨୨୯ | ୩୧.୯୧ | ୧୧୨ |
| ନବରଙ୍ଗପୁର | ୫୨୯୧ | ୧୮୮ | ୪୬୩ | ୪୯୧ | ୧୧୪୨ | ୨୧.୫୮ | ୩୫ |
| ନୟାଗଡ | ୩୮୯୦ | ୧୮୬ | ୯୭୩ | ୫୦୬ | ୧୬୬୫ | ୪୨.୮ | ୨୩୧ |
| ପୁରୀ | ୩୪୭୯ | ୦ | ୫୬ | ୪୪ | ୧୦୦ | ୨.୮୭ | ୪୪ |
| ରାୟଗଡା | ୭୦୭୩ | ୪୫୩ | ୮୯୬ | ୧୭୬୭ | ୩୧୧୬ | ୪୪.୦୫ | ୪୫୮ |
| ସମ୍ବଲପୁର | ୬୬୫୭ | ୫୩୩ | ୧୭୩୫ | ୧୦୪୧ | ୩୩୦୯ | ୪୯.୭୧ | ୪୯ |
| ସୋନପୁର | ୨୩୩୭ | ୩ | ୨୦୦ | ୧୨୧ | ୩୨୪ | ୧୩.୮୬ | ୭୦ |
| ସୁନ୍ଦରଗଡ | ୯୭୧୨ | ୧୦୪୬ | ୧୭୭୧ | ୧୨୩୫ | ୪୦୫୨ | ୪୧.୭୨ | ୧୪୪ |
| **ମୋଟ** | **୧୫୫୭୦୭** | **୭୦୬୦** | **୨୧,୩୬୬** | **୨୦,୪୭୭** | **୪୮,୯୦୩** | **୩୧.୪୧** | **୪,୭୩୪** |

ଅଭ୍ୟର୍ଥନା, ଇବ୍ ଥର୍ମାଲ୍
ଜିଲ୍ଲା–ଝାରସୁଗୁଡା–୭୬୮୨୩୪







# ବକ୍ସି ଜଗବନ୍ଧୁ

ପ୍ରାଚୀନ କାଳରୁ ଉତ୍କଳ ବିଶାଳ ବୈଭବରେ ପରିପୂର୍ଣ୍ଣ ଏବଂ ଅତ୍ୟନ୍ତ ଶକ୍ତିଶାଳୀ ଦେଶ ଭାବରେ ପରିଚିତ ଥିଲା । ଏହାର ଇତିହାସ, କଳାକୃତି, ସଂସ୍କୃତି ଓ ଶିକ୍ଷା ଅତ୍ୟନ୍ତ ଋଦ୍ଧିମନ୍ତ । ବିଜୟର ବୀରତ୍ୱ ଗାଥା ଆଜି ବି ଓଡ଼ିଶାବାସୀଙ୍କ ମନରେ ଅପୂର୍ବ ଶିହରଣ ସୃଷ୍ଟି କରେ । ଇତିହାସର ଘଟଣା ପ୍ରବାହରେ ଯେତେବେଳେ ଓଡ଼ିଶାର ସ୍ୱାଧୀନତା ଅବକ୍ଷୟମୁଖୀ, ସେତେବେଳେ ଓଡ଼ିଶାର ଶେଷ ସ୍ୱାଧୀନତା ବଜାୟ ରଖିବା ପାଇଁ ଉତ୍କଳ ଜନନୀର ଯେଉଁ କେତେଜଣ ବୀର ସୁଯୋଗ୍ୟ ସନ୍ତାନ ଇଂରେଜମାନଙ୍କ ସହ ସଂଗ୍ରାମ କରିଥିଲେ, ସେମାନଙ୍କ ମଧ୍ୟରୁ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଅନ୍ୟତମ । ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ବଳିଷ୍ଠ ତ୍ୟାଗ, ଅପୂର୍ବ ସାହସ ଓ ବୀରତ୍ୱ ସହ ତାଙ୍କର ଆତ୍ମୋତ୍ସର୍ଗ ଓଡ଼ିଶା ଇତିହାସର ଏକ ଗୌରବପୂର୍ଣ୍ଣ ରକ୍ତରଞ୍ଜିତ ଅଧ୍ୟାୟ ।



ବକ୍ସି ଜଗବନ୍ଧୁଙ୍କର ୧୮୦୪ ପୂର୍ବବର୍ତ୍ତୀ ଜୀବନୀ ଏ ପର୍ଯ୍ୟନ୍ତ ଅଜଣା ରହିଛି । କେତେକ ଐତିହାସିକ ମତ ଦିଅନ୍ତି ତାଙ୍କ ଜୀବନ କାଳ ୧୭୮୦ ମସିହାରୁ ୧୮୨୯ ମସିହା ମଧ୍ୟରେ ସୀମାବଦ୍ଧ ଥିଲା । ଇଂରେଜମାନେ ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରି ତାଙ୍କର ରାଜ୍ୟକୁ 'ଖାସ୍' କଲେ ଅର୍ଥାତ୍ ପ୍ରତ୍ୟକ୍ଷ ଇଂରେଜ ଶାସନାଧୀନ ଅଞ୍ଚଳ ସହିତ ତାକୁ ମିଶାଇ ଦିଆଗଲା । ପାଇକଙ୍କ ନିଷ୍କର ଜମି ଉପରେ ଉଚ୍ଚ ହାରରେ କର ଧାର୍ଯ୍ୟ ହେଲା । ଫଳରେ ପାଇକମାନେ ତାଙ୍କର ବଂଶାନୁକ୍ରମିକ ନିଷ୍କର ବୃତ୍ତିରୁ ବଞ୍ଚିତ ହେଲେ । ଖୋର୍ଦ୍ଧା ଖାସ୍ ହେବା ପରେ ସେହି ଜମିଦାରୀର ରାଜସ୍ୱ ଅନେକ ପରିମାଣରେ ବୃଦ୍ଧି କରାଯାଇ ଜଣେ ବିଦେଶୀ ଜମିଦାରଙ୍କୁ ପଟ୍ଟା ଦିଆଗଲା । ଅନେକ ସର୍ବସ୍ୱାନ୍ତ ହୋଇ ନିଜର ଘରଦ୍ୱାର ଛାଡ଼ି ନିକଟବର୍ତ୍ତୀ କରଦ ରାଜ୍ୟମାନଙ୍କରେ ଆଶ୍ରୟ ନେଲେ । ଯେଉଁମାନେ ରହିଲେ ସେମାନଙ୍କ ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଲା । ପାଇକମାନେ ବୀର ଜାତି । ସେମାନେ ଅନ୍ୟାୟ ଅତ୍ୟାଚାରକୁ ନିରବରେ ସହ୍ୟ କରିବାରେ ଅଭ୍ୟସ୍ତ ନୁହନ୍ତି । ଯେଉଁମାନଙ୍କ ଯୋଗୁଁ ସେମାନଙ୍କ ଅବସ୍ଥା ଏପରି ଦୟନୀୟ ହୋଇ ପଡ଼ିଛି, ସେମାନଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ପାଇକମାନେ ଦୃଢ଼ ସଂକଳ୍ପ ନେଲେ ଓ ସୁଯୋଗର ଅପେକ୍ଷାରେ ରହିଲେ । ୧୮୧୭ ସାଲ ମାର୍ଚ୍ଚ ମାସରେ ସେ ସୁଯୋଗ ଆସିଲା । କୁହୁଳୁଥିବା ବିଦ୍ରୋହାଗ୍ନି ଜଳି ଉଠିଲା । ପାଇକମାନେ ସେମାନଙ୍କର ସେନାଧ୍ୟକ୍ଷ ଓ ପ୍ରିୟ ନେତା ବକ୍ସି ଜଗବନ୍ଧୁଙ୍କର ନେତୃତ୍ୱରେ ଇଂରେଜମାନଙ୍କର ଅନ୍ୟାୟ ନୀତି ଓ ନିର୍ଯାତନା ବିରୁଦ୍ଧରେ ବିଦ୍ରୋହ କଲେ ।

ବକ୍ସି ଜଗବନ୍ଧୁ ଖୋର୍ଦ୍ଧା ରାଜାଙ୍କ ସେନାବାହିନୀର ସେନାପତି ଥିଲେ । ରାଜ୍ୟରେ ତାଙ୍କର ସ୍ଥାନ ରାଜାଙ୍କ ପରେ ଥିଲା । ତାଙ୍କର ସେରଗଡ଼ ଓ ବଡ଼ମ୍ବା ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିଲା । ସୁତରାଂ ସେ ଉଚ୍ଚ ବଂଶଜ ବୋଲି ଅନୁମାନ କରାଯାଏ । ଶ୍ରୀ ସୁଧାକର ପଟ୍ଟନାୟକ ଜଗବନ୍ଧୁଙ୍କ ବଂଶାବଳୀ ସମ୍ବନ୍ଧରେ ଗୋଟିଏ ପୋଥିରୁ କିଛି ସୂଚନା ପାଇଥିଲେ । ସେହି ପୋଥି ଅନୁସାରେ ଜଗବନ୍ଧୁ ବିଦ୍ୟାଧର ଭୋଇବଂଶର ପ୍ରଥମ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କ ଅଷ୍ଟମ ବଂଶଧର । ଜଗବନ୍ଧୁଙ୍କର ପଦବୀ ବିଦ୍ୟାଧର ହୋଇଥିବାରୁ ତାଙ୍କର କେତେକ ଦେଶୀୟ ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିବାରୁ ଉପରୋକ୍ତ ତଥ୍ୟ ସତ୍ୟ ବୋଲି ମନେ ହୁଏ ।



ଷ୍ଟାର୍ଲିଂ ସାହେବ ତାଙ୍କର ଓଡ଼ିଶା ଇତିହାସରେ ଗୋଟିଏ କିମ୍ବଦନ୍ତୀ ଉପରେ ଭିତ୍ତି କରି ଲେଖିଛନ୍ତି ଯେ, ଜଗବନ୍ଧୁଙ୍କ ଶାରୀରିକ ଗଠନ ସୁନ୍ଦର ଓ ବଳିଷ୍ଠ ଥିଲା ଏବଂ ସେ ଶକ୍ତିମାନ ପୁରୁଷ ଥିଲେ । ୧୮୧୭ ମସିହାରୁ ବକ୍ସି ଜଗବନ୍ଧୁ ବୀର ପାଇକମାନଙ୍କୁ ସଙ୍ଗଠିତ କଲେ । ଗଣ ବିପ୍ଳବ ଓ ଜାତୀୟ ଜାଗରଣର ସୂତ୍ରପାତ କରିଥିଲେ । ତେଣୁ ସେ ହେଉଛନ୍ତି ସ୍ୱାଧୀନତା ସଂଗ୍ରାମର ପ୍ରଥମ କର୍ଣ୍ଣଧାର । କୁହୁଳୁଥିବା ନିଆଁ ଜଳିବା ପାଇଁ ଏକ ସ୍ଫୁଲିଙ୍ଗ ଦରକାର କରେ । ୧୮୧୭ ମସିହାରେ ଇଂରେଜମାନେ ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଗୋଟିଏ ହତ୍ୟା ମାମଲା ସମ୍ପର୍କରେ ଗିରଫ କଲେ । ସେହି ଘଟଣାର ପ୍ରତିବାଦରେ ଘୁମୁସରର ୩୦୦/୪୦୦ କନ୍ଧ ବାଣପୁରରେ ପଶି ସରକାରୀ ଖଜଣାଖାନା ଲୁଟ୍ କଲେ ଓ ସରକାରୀ ଦପ୍ତର ସବୁ ଆକ୍ରମଣ କଲେ । କୁହୁଳୁଥିବା ବିଦ୍ରୋହର ନିଆଁ ପ୍ରବଳ ଭାବରେ ଜଳି ଉଠିଲା । ଖୋର୍ଦ୍ଧାର ପାଇକମାନେ ଏହି ସୁଯୋଗ ନେଇ ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହ କଲେ । ଜଗବନ୍ଧୁଙ୍କର ପରମ ଶତ୍ରୁ ଚରଣ ପଟ୍ଟନାୟକ ତାଙ୍କର କ୍ରୋଧାଗ୍ନିର ପ୍ରଥମ ଶିକାର ହେଲେ ।

ହଠାତ୍ ପାଇକ ବିଦ୍ରୋହ ହେବାରୁ ଇଂରେଜ କର୍ତ୍ତୃପକ୍ଷ ବିବ୍ରତ ହୋଇ ପଡ଼ିଲେ । ପାଇକମାନେ ବାଣପୁର ଓ ଖୋର୍ଦ୍ଧାରେ ଥିବା ସବୁ ସରକାରୀ ଅଫିସ୍ ଭାଙ୍ଗି ଦେଲେ, ଖଜଣାଖାନା ଲୁଟ୍ କଲେ । ପାଇକମାନଙ୍କ ସାଙ୍ଗରେ ଇଂରେଜ ସୈନ୍ୟଙ୍କର ଗଙ୍ଗପଡ଼ା, ବାଳକାଟି, ପିପିଲି ଇତ୍ୟାଦି ସ୍ଥାନମାନଙ୍କରେ ସଂଘର୍ଷ ହୋଇଥିଲା । ତଦ୍ୱାରା ପାଇକମାନଙ୍କର ଗତିରୋଧ ହୋଇ ପାରିଲା ନାହିଁ । ପାଇକମାନେ ପୁରୀ ଆଡ଼କୁ ଅଗ୍ରସର ହେଲେ । ପୁରୀରେ ପାଇକମାନେ ଇଂରେଜ ସୈନ୍ୟଙ୍କ ପ୍ରତିରୋଧ କରି ପାରିଲେ ନାହିଁ । ଇଂରେଜମାନେ ରାଜା ମୁକୁନ୍ଦ ଦେବଙ୍କୁ ବନ୍ଦୀ କରି କଟକ ଆଣିଲେ ।

୧୮୧୭ ମସିହା ଏପ୍ରିଲ ମାସ ୧୨ ତାରିଖରେ ସାମରିକ ଆଇନ ପ୍ରବର୍ତ୍ତନ କରାଗଲା । କ୍ରମେ ସେ ଆଇନ ପୁରୀ ଓ ପିପିଲିରେ ପ୍ରବର୍ତ୍ତନ କରାଗଲା । ମେଜର୍ ସାର୍ ଜି. ମାଟିନ୍‌ଡ଼େଲ୍‌ଙ୍କୁ ସାମରିକ କମିଶନର ରୂପେ ନିଯୁକ୍ତି କରାଗଲା । ସେହିବର୍ଷ ଅକ୍ଟୋବର ମାସ ଶେଷ ବେଳକୁ ଇଂରେଜମାନେ ବିଦ୍ରୋହକୁ ସମ୍ପୂର୍ଣ୍ଣ ଭାବରେ ଦମନ କରି ଦେଇଥିଲେ । କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ଶାନ୍ତିରେ ନିଃଶ୍ୱାସ ମାରି ପାରିଲେ ନାହିଁ । କାରଣ ଜଗବନ୍ଧୁ ବିଦ୍ୟାଧର, କୃଷ୍ଣଚନ୍ଦ୍ର ଭ୍ରମରବର ଓ ସେମାନଙ୍କ ଅନୁଚରମାନେ ଜଙ୍ଗଲରେ ଆତ୍ମଗୋପନ କରି ରହିଲେ । ପୁଣି କେତେବେଳେ ବିଦ୍ରୋହର ନିଆଁ ଜଳି ଉଠିବ ଏହି ଭୟରେ କର୍ତ୍ତୃପକ୍ଷ ସବୁବେଳେ ସତର୍କ ହୋଇ ରହିଥିଲେ । ୧୮୧୮ ମସିହାରୁ ଇଂରେଜ ସୈନ୍ୟ ଓ ଆତ୍ମଗୋପନକାରୀ ପାଇକମାନଙ୍କ ମଧ୍ୟରେ ଲୁଚକାଳି ଖେଳ ଚାଲିଲା । ଶତଚେଷ୍ଟା ସତ୍ତ୍ୱେ ଏପରିକି ଜଗବନ୍ଧୁଙ୍କ ପରିବାରକୁ ବନ୍ଦୀ କରି ରଖିବା ସତ୍ତ୍ୱେ ମଧ୍ୟ ଇଂରେଜମାନେ ବିଦ୍ରୋହୀ ନେତା ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଭ୍ରମରବର ଓ ତାଙ୍କର ଅନୁଚରବର୍ଗଙ୍କୁ ଧରି ପାରିଲେ ନାହିଁ । ଶେଷରେ ବଡ଼ଲାଟ୍ ନିମ୍ନଲିଖିତ ସର୍ତ୍ତରେ ୧୮୨୨ରେ ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କୁ କ୍ଷମା ଦେବା ବିଷୟ ଘୋଷଣା କଲେ :

(୧) ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ସେମାନଙ୍କର ବଂଶାନୁକ୍ରମିକ ପଦବୀ 'ବକ୍ସି' ଓ 'ଦେଓ୍ୱାନ୍' ବ୍ୟବହାର କରିବେ ନାହିଁ ।

(୨) ସେମାନେ କଟକରେ ରହିବେ ଓ ବିନା ଅନୁମତିରେ କଟକ ଛାଡ଼ିବେ ନାହିଁ ।

(୩) ସେମାନଙ୍କୁ ଯଥାକ୍ରମେ ୧୦୦ ଟଙ୍କା ଓ ୫୦ ଟଙ୍କା ମାସିକ ଭତ୍ତା ଦିଆଯିବ ।

ଏହି ଘୋଷଣା ସତ୍ତ୍ୱେ ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଓ ତାଙ୍କର ଅନୁଚରମାନେ ଆତ୍ମସମର୍ପଣ କଲେ ନାହିଁ, କିନ୍ତୁ ବିଦ୍ରୋହୀମାନଙ୍କ ଅବସ୍ଥା କ୍ରମେ ଶୋଚନୀୟ ହୋଇ ଉଠିଲା । ଇଂରେଜ କର୍ତ୍ତୃପକ୍ଷଙ୍କ ସତର୍କତା ଯୋଗୁଁ ସେମାନେ କୌଣସି ସୂତ୍ରରୁ ସାହାଯ୍ୟ ପାଇ ପାରିଲେ ନାହିଁ । ନୟାଗଡ଼ ଓ ଅନ୍ୟାନ୍ୟ ରାଜାମାନଙ୍କୁ ସତର୍କ କରାଇ ଦିଆଗଲା ଯେ,ସେମାନେ ଯଦି କୌଣସି ପ୍ରକାରର ସାହାଯ୍ୟ କରନ୍ତି, ତେବେ ସେମାନଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ସୁତରାଂ ରାଜାମାନେ ମଧ୍ୟ ଭୟରେ ବିଦ୍ରୋହୀମାନଙ୍କୁ ସାହାଯ୍ୟ କଲେ ନାହିଁ । ଏପରି ପରିସ୍ଥିତିରେ ବିଦ୍ରୋହୀମାନଙ୍କର ଆତ୍ମସମର୍ପଣ ବ୍ୟତୀତ ଅନ୍ୟ କିଛି ଉପାୟ ରହିଲା ନାହିଁ । ଶେଷରେ ନୟାଗଡ଼ ରାଜା ଓ ତାଙ୍କର ଦେଓ୍ୱାନ୍ ବରଜୁ ପାଇକରାୟ ଜଗବନ୍ଧୁଙ୍କୁ ସରକାରଙ୍କର ସର୍ତ୍ତ ଗ୍ରହଣ କରି ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇଲେ । ଜଗବନ୍ଧୁ ଅନନ୍ୟୋପାୟ ହୋଇ ସେହି ସର୍ତ୍ତକୁ ଗ୍ରହଣ କରି ମଇ ମାସ ୨୭ ତାରିଖ ୧୮୨୫ ମସିହାରେ ଆତ୍ମସମର୍ପଣ କଲେ । ତାଙ୍କ ସହ ତାଙ୍କର ୮ ଜଣ ବିଶ୍ୱସ୍ତ ପାର୍ଶ୍ୱଚର ମଧ୍ୟ ଆତ୍ମସମର୍ପଣ କଲେ ।

ବକ୍ସି ଜଗବନ୍ଧୁଙ୍କୁ ଇଂରେଜ ସରକାର କଟକସ୍ଥିତ ବକ୍ସି ବଜାରଠାରେ ଗୃହବନ୍ଦୀ କରି ରଖିଲେ । ସେହିଠାରେ ୧୮୨୯ ମସିହା ଜାନୁଆରୀ ୨୪ ତାରିଖରେ ବକ୍ସିଙ୍କର ଜୀବନଦୀପ ନିର୍ବାପିତ ହେଲା ଏବଂ ଏକ ମହାନ୍ ଜୀବନର ଅବସାନ ଘଟିଲା ।






# ବୀର ସୁରେନ୍ଦ୍ର ସାଏ

ସିପାହୀ ବିଦ୍ରୋହର ପ୍ରାୟ ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ଓଡ଼ିଶାରେ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା । ବୀର ଓଡ଼ିଆ ପାଇକମାନେ ସେମାନଙ୍କର ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ଓଡ଼ିଶା ମାଟିରୁ ଗୋରା ଫିରିଙ୍ଗି ଶାସକମାନଙ୍କୁ ହଟାଇବା ନିମନ୍ତେ ତରବାରୀ ଧରିବା ପାଇଁ ପଶ୍ଚାତପଦ ହୋଇନଥିଲେ । ଯାହାଫଳରେ ଫିରିଙ୍ଗି ଶାସନର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । କିନ୍ତୁ ପାଇକମାନେ ନିରାଶ ହୋଇଥିଲେ । କାରଣ ଏହି ବିଦ୍ରୋହର ମୁଖ୍ୟ ଗୋପର କରୁଣାକର ସର୍ଦ୍ଦାରଙ୍କୁ ବନ୍ଦୀ କରାଗଲା, କୁଜଙ୍ଗର ନାରାୟଣ ପରମଗୁରୁ ଓ କନିକାର ବାମଦେବ ପାଟ୍ଟଯୋଷୀ ଦ୍ୱୀପାନ୍ତର ଦଣ୍ଡ ଭୋଗ କଲେ ଏବଂ ଜୟୀ ରାଜଗୁରୁ ଫାଶି ପାଇଲେ । ବିପ୍ଳବୀ ବକ୍ସି ଜଗବନ୍ଧୁ ବିଦ୍ୟାଧର ବିଶ୍ୱାସଘାତକତାର ଶିକାର ହୋଇ ମୃତ୍ୟୁବରଣ କଲେ । ପରିଶେଷରେ ମୁକୁନ୍ଦ ଦେବ ବନ୍ଦୀ ହେଲେ । ପାଇକ ବିଦ୍ରୋହର ତେଜିୟାନ୍ ଅଗ୍ନିଶିଖା ଲିଭିଗଲା । ପୁନର୍ବାର ପଶ୍ଚିମ ଓଡ଼ିଶାରେ ୧୮୨୭ ମସିହାରେ ବୀର ସୁରେନ୍ଦ୍ର ସାଏ ଏହି ନିର୍ବାପିତ ଅଗ୍ନିଶିଖାକୁ ପ୍ରଜ୍ୱଳିତ କରି ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ସମ୍ବଲପୁର ମାଟିରୁ ବ୍ରିଟିଶ ଶାସନ ଲୋପ କରିବା । ତେଣୁ ସେ ୧୮୨୭-୧୮୬୪ ମସିହା ଜାନୁଆରୀ ୨୩ ତାରିଖ ପର୍ଯ୍ୟନ୍ତ ବିଦ୍ରୋହର ବହ୍ନିକୁ ପ୍ରଜ୍ୱଳିତ କରି ରଖିଥିଲେ । ପ୍ରଥମ ପର୍ଯ୍ୟାୟରେ ଇଂରେଜମାନଙ୍କ ବିରୁଦ୍ଧରେ ତାଙ୍କର ସଂଗ୍ରାମ ୧୮୨୭-୧୮୪୦ ମସିହା ପର୍ଯ୍ୟନ୍ତ ବିକ୍ଷିପ୍ତ ଏବଂ ସୀମିତ ଥିଲା । କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟରେ ଏହା ଅଧିକ ସୁସଙ୍ଗଠିତ, ସୁସଂହତ ତଥା ବୀରତ୍ୱପୂର୍ଣ୍ଣ ଥିଲା । ସୁରେନ୍ଦ୍ର ସାଏଙ୍କ କୌଶଳପୂର୍ଣ୍ଣ ଗରିଲା ଯୁଦ୍ଧ, ରଣସଜ୍ଜା, ଦୃଢ଼ମନୋବଳ, ଅସୀମ ଧୈର୍ଯ୍ୟ ଓ ସାହସ ନିକଟରେ ଇଂରେଜମାନେ ହାର ମାନି ଥିଲେ । ଓଡ଼ିଶାର ଏହି ବରପୁତ୍ର, ବିପ୍ଳବୀ ବୀର ସୁରେନ୍ଦ୍ର ସାଏଙ୍କ ବିପ୍ଳବର ଜୟଗାଥା ଓଡ଼ିଶା ଇତିହାସରେ ଚିରଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ପୃଷ୍ଠା ମଣ୍ଡିତ କରୁଥିବ ।



ସେହି ମହାନ୍ ବୀର ପୁରୁଷ ଓ ଭାରତର ସର୍ବଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ୧୮୦୯ ମସିହା ଜାନୁଆରୀ ମାସ ୨୩ ତାରିଖ ଦିନ ସମ୍ବଲପୁର ସହରର ଉତ୍ତରକୁ ପ୍ରାୟ ୨୧ ମାଇଲ ଦୂରରେ ଅବସ୍ଥିତ ବରଗାଁ ବା ଖିଣ୍ଡା ଗ୍ରାମରେ ଚୌହାନ୍ ରାଜ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସୁରେନ୍ଦ୍ର ସାଏ ଗାଙ୍ଗପୁର ରାଜ୍ୟର ହାତୀବାଡ଼ି ଜମିଦାରଙ୍କ କନ୍ୟାଙ୍କୁ ବିବାହ କରିଥିଲେ ଏବଂ ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଥିଲା । ତାଙ୍କ ପୁତ୍ରର ନାମ ହେଉଛି ମିତ୍ରଭାନୁ ସାଏ ।

୧୮୨୭ ମସିହାରେ ସମ୍ବଲପୁରର ରାଜା ମହାରାଜା ସାଏ ଅପୁତ୍ରିକ ହୋଇ ମୃତ୍ୟୁବରଣ କଲେ । ମହାରାଜା ସାଏଙ୍କ ଉତ୍ତରାଧିକାରୀ କିଏ ହେବ ତାହା ନିରୂପଣ କରିବା କ୍ଷମତା ଇଂରେଜ ସରକାର ନିଜ ହାତକୁ ନେଲେ । ରାଜଗାଦି ଦାବି କରିଥିବା ବହୁ ବ୍ୟକ୍ତିଙ୍କୁ ଉପେକ୍ଷା କରି ବିଧବା ରାଣୀ ମୋହନ କୁମାରୀଙ୍କ ହାତରେ ଶାସନ ଦାୟିତ୍ୱ ନ୍ୟସ୍ତ କଲେ । ସେହି କାରଣରୁ ବହୁ ଆଦିବାସୀ ଜମିଦାର ବିଦ୍ରୋହ କରିଥିଲେ । ବଳରାମ ସାଏ ଓ ସୁରେନ୍ଦ୍ର ସାଏ ଏହି ବିପ୍ଳବର ନେତୃତ୍ୱ ନେଇଥିଲେ । ଇଂରେଜମାନେ ନିଶ୍ଚିତ



ଥିଲେ ଯେ ରାଣୀ ମୋହନ କୁମାରୀ ସୁଚାରୁରୂପେ ଶାସନ କାର୍ଯ୍ୟ ପରିଚାଳନା କରିପାରିବେ ନାହିଁ । ତେଣୁ ରାଣୀ ସେମାନଙ୍କ ହାତରେ ଖେଳନା ହୋଇ ରହିବେ ଏବଂ ଇଂରେଜମାନେ ନିଜର ରାଜନୈତିକ ଅଭିସନ୍ଧି ହାସଲ କରିପାରିବେ । ପ୍ରକୃତ ପକ୍ଷେ ସମ୍ବଲପୁର ରାଜବଂଶର ସୁରେନ୍ଦ୍ର ସାଏ ରାଜଗାଦି ଲାଭ କରିବା କଥା, ମାତ୍ର ଇଂରେଜମାନେ ଜାଣିଥିଲେ ସୁରେନ୍ଦ୍ର ସାଏ କେବେ ହେଲେ ତାଙ୍କର ଅନୁଗାମୀ ହେବେ ନାହିଁ । ତେଣୁ ରାଣୀ ମୋହନ କୁମାରୀ ରାଜ୍ୟ ଶାସନ ପରିଚାଳନା କରିବା ପ୍ରତିବାଦରେ ସମ୍ବଲପୁର ଅଞ୍ଚଳରେ ବିଦ୍ରୋହର ବହ୍ନି ଜଳି ଉଠିଥିଲା ।

ସୁରେନ୍ଦ୍ର ସାଏଙ୍କ ଜୀବନ କାଳ ୭୫ ବର୍ଷ ମଧ୍ୟରୁ ଦୀର୍ଘ ୩୭ ବର୍ଷ କାରାଗାରରେ କଟିଥିଲା । ସେ ୧୮୨୭ରୁ ୧୮୪୦ ପର୍ଯ୍ୟନ୍ତ ୧୩ ବର୍ଷ ଓ ୧୮୫୭ରୁ ୧୮୬୪ ପର୍ଯ୍ୟନ୍ତ ୭ ବର୍ଷ ଏହିପରି ଦୁଇଟି ପର୍ଯ୍ୟାୟରେ ମୋଟରେ ୨୦ ବର୍ଷ ଇଂରେଜ ସରକାରଙ୍କ ବିରୁଦ୍ଧରେ ନିରବଚ୍ଛିନ୍ନ ଭାବରେ ଘମାଘୋଟ ଲଢ଼େଇ କରିଥିଲେ । ତାଙ୍କର ଅଦ୍ଭୁତ ସଂଗଠନ ଶକ୍ତି, ଅସୀମ ପରାକ୍ରମ, ଅସାଧାରଣ ରଣକୌଶଳ ବ୍ରିଟିଶ୍ ଶାସକ ଓ ସୈନ୍ୟବାହିନୀକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେତେବେଳେ କ୍ୟାପ୍ଟେନ୍ ହିଗ୍ନସ୍‌ଙ୍କ ଅଧିନାୟକତ୍ୱରେ ସମ୍ବଲପୁରରେ ଇଂରେଜମାନଙ୍କ ରାମଗଡ଼ ବାଟାଲିୟନ୍ ଅବସ୍ଥାପିତ ହୋଇଥାନ୍ତି । ସୁରେନ୍ଦ୍ର ସାଏଙ୍କ ପକ୍ଷରୁ ତାଙ୍କ ଅନୁଗାମୀମାନେ ଧନୁଶର ଧରି ଗରିଲା ଯୁଦ୍ଧ କରିଥିବାରୁ ଇଂରେଜ ସୈନ୍ୟମାନେ ତାର ମୁକାବିଲା କରିପାରି ନଥିଲେ । ପରେ ହଜାରୀବାଗ୍‌ର କ୍ୟାପ୍ଟେନ୍ ଉଇଲକିନସନ୍‌ଙ୍କ ନିର୍ଦ୍ଦେଶରେ ଆଉ ଏକ ସୈନ୍ୟବାହିନୀ ସମ୍ବଲପୁରରେ ଆସି ଯୋଗ ଦେଲେ । ଏହାପରେ ବିଦ୍ରୋହ କିଛି ମାତ୍ରାରେ ଦମନ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ପ୍ରଶମିତ ହୋଇପାରି ନଥିଲା । ଇଂରେଜମାନେ ବାଧ୍ୟ ହୋଇ ରାଣୀ ମୋହନ କୁମାରୀଙ୍କୁ ଗାଦିଚ୍ୟୁତ କରି ପୁନର୍ବାର ରାଜବଂଶର ଦୂର ସମ୍ପର୍କୀୟ ବ୍ୟକ୍ତି ନାରାୟଣ ସିଂହଙ୍କୁ ସମ୍ବଲପୁର ରାଜଗାଦି ପ୍ରଦାନ କଲେ । ମାତ୍ର ସେ ଥିଲେ ସମ୍ପୂର୍ଣ୍ଣ ଅଯୋଗ୍ୟ । ଏହା ଫଳରେ ପୁଣି ବିଦ୍ରୋହ ମୁଣ୍ଡ ଟେକିଲା । ୧୮୩୭ ଖ୍ରୀଷ୍ଟାବ୍ଦରେ ରାସପୂର୍ଣ୍ଣିମା ମଧ୍ୟରାତ୍ରିରେ ଦେବ୍ରୀଗଡ଼ଠାରେ ସୁରେନ୍ଦ୍ର ସାଏ, ଉଦ୍ଦ୍ୟନ୍ତ ସାଏ, ବଳରାମ ସିଂହ ଓ ଲୋଚନପୁର ଜମିଦାର ବଳଭଦ୍ର ଦେଓ ମିଳିତ ହୋଇ ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିବା ସମୟରେ ଇଂରେଜମାନେ ଅଚାନକ ସେଠାରେ ପହଞ୍ଚି ବଳଭଦ୍ର ଦେଓଙ୍କୁ ହତ୍ୟା କଲେ । ସୌଭାଗ୍ୟକ୍ରମେ ସୁରେନ୍ଦ୍ର ସାଏ ତାଙ୍କ ଭାଇମାନଙ୍କ ସହ କୌଶଳ କରି ଖସି ଯାଇଥିଲେ । ୧୮୪୦ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ–ପଶ୍ଚିମ ସୀମାନ୍ତର ତତ୍କାଳୀନ ଇଂରେଜ ଏଜେଣ୍ଟ କର୍ଣ୍ଣେଲ ଆଉସ୍ଲେଙ୍କ ସହାୟତାରେ ସୁରେନ୍ଦ୍ର ସାଏ, ଉଦ୍ଦ୍ୟନ୍ତ ସାଏ ଓ ବଳରାମ ସିଂହଙ୍କୁ ବନ୍ଦୀ କରାଯାଇ ଆଜୀବନ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା । ସେମାନେ ହଜାରୀବାଗ ଜେଲରେ ବନ୍ଦୀ ହୋଇ ରହିଲେ । ଏହିଠାରେ ସୁରେନ୍ଦ୍ର ସାଏଙ୍କ ପ୍ରଥମ ପର୍ଯ୍ୟାୟ ସଂଗ୍ରାମର ଯବନିକା ପଡ଼ିଲା ।

୧୮୪୯ ଖ୍ରୀଷ୍ଟାବ୍ଦରେ ନାରାୟଣ ସିଂହଙ୍କର ମୃତ୍ୟୁ ବେଳକୁ ସୁରେନ୍ଦ୍ର ସାଏ ହଜାରୀବାଗରେ ବନ୍ଦୀ ଜୀବନଯାପନ କରୁଥାନ୍ତି । ୧୮୫୭ରେ ଭାରତର ସିପାହୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । ସେହିବର୍ଷ ଜୁଲାଇ ମାସ ୩୦ ତାରିଖ ଦିନ ସିପାହୀମାନେ ବଳ ପ୍ରୟୋଗପୂର୍ବକ ହଜାରୀବାଗ୍ ଜେଲରେ ପ୍ରବେଶ କରି ସୁରେନ୍ଦ୍ର ସାଏଙ୍କ ସମେତ ୩୨ ଜଣ ବନ୍ଦୀଙ୍କୁ ମୁକ୍ତ କରି ଦେଇଥିଲେ । ମୁକ୍ତି ପାଇ ସୁରେନ୍ଦ୍ର ସାଏ ସଙ୍ଗେ ସଙ୍ଗେ ସମ୍ବଲପୁର ଫେରି ଆସିଲେ ଏବଂ ସମ୍ବଲପୁରବାସୀଙ୍କୁ ସୁସଙ୍ଗଠିତ କରି ପୁନର୍ବାର ସଂଗ୍ରାମ କରିବାକୁ ଆଗେଇ ଆସିଲେ । ଦେବ୍ରୀଗଡ଼ ହେଲା ସୁରେନ୍ଦ୍ରଙ୍କ ସଂଗ୍ରାମର କେନ୍ଦ୍ରସ୍ଥଳ । କୌଶଳକ୍ରମେ ସୁରେନ୍ଦ୍ର ସାଏ ପ୍ରଥମେ ସମ୍ବଲପୁର ଅଞ୍ଚଳରେ ଥିବା ଇଂରେଜମାନଙ୍କର ବାହ୍ୟ ଯୋଗାଯୋଗ ସମ୍ପର୍କ ଛିନ୍ନ କଲେ । ବଡ଼ ବଡ଼ ପଥର ଖଣ୍ଡ ରଖି ରାସ୍ତା ଅବରୋଧ କରିବା ସହ ପାହାଡ଼ ଉପରେ ଥିବା ଶିଆଳୀ ଲତାରେ ବଡ଼ ବଡ଼ ପଥରକୁ ବାନ୍ଧିରଖି ଆବଶ୍ୟକ ସ୍ଥଳେ ଲତାକୁ କାଟି ଦେଉଥିଲେ । ଫଳରେ ପଥରଖଣ୍ଡମାନ ପଡ଼ି ଇଂରେଜମାନଙ୍କୁ ଆଘାତ ଦେଉଥିଲା । ଅନ୍ୟ ପକ୍ଷରେ ଇଂରେଜମାନଙ୍କ ଗୁଳିଗୁଳା ଘଞ୍ଚ ଜଙ୍ଗଲରେ ଥିବା ଗଛଗୁଡ଼ିକରେ ବାଜି ସବୁ ନଷ୍ଟଭ୍ରଷ୍ଟ ହୋଇଯାଉଥିଲା । ପାହାଡ଼ ମଧ୍ୟସ୍ଥ ଘଞ୍ଚ ଜଙ୍ଗଲରେ ସୁରେନ୍ଦ୍ରଙ୍କ ପକ୍ଷର ଆକ୍ରମଣକାରୀମାନେ ଲୁଚିଛପି ଗରିଲା ଯୁଦ୍ଧ କରିବା ପାଇଁ ବେଶ୍ ସୁବିଧା ପାଉଥିଲେ । ଇଂରେଜମାନଙ୍କ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ଆଗରେ ସମ୍ବଲପୁରବାସୀଙ୍କ ଧନୁତୀର, ବର୍ଚ୍ଛା, ଖଣ୍ଡା, ନିଆଁଧରା ବନ୍ଧୁକ ଆଦି ବିଶେଷ କିଛି କାମ ଦେବ ନାହିଁ ବୋଲି ସେ ଗରିଲା ଯୁଦ୍ଧର ଆଶ୍ରୟ ନେଇଥିଲେ ।

୧୮୬୧ରେ ମେଜର ଇମ୍ପେଙ୍କୁ ସମ୍ବଲପୁରର ଡେପୁଟୀ କମିଶନର ରୂପେ ନିଯୁକ୍ତି ଦିଆଗଲା । ମେଜର ଇମ୍ପେ ଯୁଦ୍ଧ ନୀତି ପରିତ୍ୟାଗ କରି ଶାନ୍ତି ନୀତି ଅନୁସରଣ କଲେ । ସୁରେନ୍ଦ୍ର ସାଏଙ୍କ ବିରୁଦ୍ଧରେ ଯୁଦ୍ଧ ବନ୍ଦ ଘୋଷଣା କଲେ । ଆତ୍ମସମର୍ପଣ କରିଥିବା ବିଦ୍ରୋହୀମାନଙ୍କୁ କ୍ଷମା ପ୍ରଦାନ କରି ସେମାନଙ୍କର ବାଜ୍ୟାପ୍ତ ସମ୍ପତ୍ତି ଫେରସ୍ତ କରି ଦିଆଯିବାର ନିଷ୍ପତ୍ତି ନେଲେ । ଏହାପରେ




ସୁରେନ୍ଦ୍ରଙ୍କର ଭାଇ ଓ ପୁତ୍ର ଆତ୍ମସମର୍ପଣ କରିଥିଲେ । ସେମାନଙ୍କୁ ଇମ୍ପେ ସମ୍ମାନର ସହ ଖୁଣ୍ଡା ଗ୍ରାମରେ ଆଶ୍ରୟ ଦେଇଥିଲେ । ପରେ ପରେ ୧୮୬୨ ମସିହା ମଇ ମାସ ୧୬ ତାରିଖ ଦିନ ରାତିରେ ଘୋର ଜଙ୍ଗଲ ମଧ୍ୟରେ ଇମ୍ପେ ସାହେବଙ୍କ ସହ ସୁରେନ୍ଦ୍ର ସାଏଙ୍କର ସାକ୍ଷାତ ହେଲା ଏବଂ ସେହିଠାରେ ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କରିଥିଲେ । ୧୮୬୩ରେ ଇମ୍ପେ ସାହେବଙ୍କର ମୃତ୍ୟୁ ହେବାରୁ ସମ୍ବଲପୁରର ରାଜନୈତିକ ପରିସ୍ଥିତି ବଦଳିଗଲା । ମେଜର ଇମ୍ପେଙ୍କ ସ୍ଥାନରେ କ୍ୟାପ୍‌ଟେନ୍ କମ୍ବରଲେଜ୍ ନିଯୁକ୍ତି ପାଇଲେ । କମ୍ବରଲେଜ୍ ଉଚ୍ଚ ପୋଲିସ୍ ଅଫିସର କ୍ୟାପ୍‌ଟେନ୍ ଷ୍ଟୁଆର୍ଟ ଓ ମିଷ୍ଟର ବେରିଲ୍‌ଙ୍କ ସହାୟତାରେ ୧୮୬୪ ମସିହା ଜାନୁଆରୀ ୨୩ ତାରିଖ ରାତ୍ର ୧୧ ଘଣ୍ଟା ସମୟରେ ସୁରେନ୍ଦ୍ର ସାଏ ଓ ତାଙ୍କ ପରିବାରବର୍ଗ ଶୋଇଥିବା ସମୟରେ ତାଙ୍କ ଘର ଉପରେ ଚଢ଼ାଉକରି ସେମାନଙ୍କୁ ବନ୍ଦୀ କଲେ । ସେହି ରାତ୍ରିରେ ସେମାନଙ୍କୁ ରାୟପୁର ନିଆଗଲା । ପରେ ସେମାନଙ୍କୁ ନାଗପୁର ଜେଲ୍ ଓ ଆଜୀବନ ଦେଶାନ୍ତର ଦଣ୍ଡରେ ଦଣ୍ଡିତ କରାଯାଇ ୧୮୬୬ ମସିହାରେ ଅସୀରଗଡ଼ ଦୁର୍ଗକୁ ପଠାଇ ଦିଆଗଲା । ଉକ୍ତ ଅସୀରଗଡ଼ ଦୁର୍ଗରେ ୧୮୮୪ ମସିହା ଫେବୃୟାରୀ ମାସ ୨୮ ତାରିଖରେ ବୀର ସୁରେନ୍ଦ୍ର ସାଏଙ୍କ ଜୀବନଦୀପ ନିର୍ବାପିତ ହେଲା ।

ଘୋର ଅରଣ୍ୟ ମଧ୍ୟରେ ଲୁଚି ରହି ସାହସୀ ଓଡ଼ିଆମାନଙ୍କୁ ଏକତ୍ର କରି ବିଭିନ୍ନ ରଣକୌଶଳରେ ସେମାନଙ୍କୁ ତାଲିମ ଦେଇ ଶୃଙ୍ଖଳାବୋଧ ଓ ନୈତିକତାକୁ ବଜାୟ ରଖି ସୁରେନ୍ଦ୍ର ସାଏ ଇଂରେଜମାନଙ୍କ ବିରୁଦ୍ଧରେ ଏକକ ସଂଗ୍ରାମର ନେତୃତ୍ୱ ନେଇଥିଲେ । ଏହା ଓଡ଼ିଆ ଜାତିର ଇତିହାସରେ ଏକ ସ୍ମରଣୀୟ ଘଟଣା । ଓଡ଼ିଶାର ଏହି ଜାତୀୟ ବୀରଙ୍କର ଧୈର୍ଯ୍ୟ, ସାହସ, ଦୃଢ଼ ନେତୃତ୍ୱ ଓ ମନୋବଳ ତଥା ଶୃଙ୍ଖଳା ଓ ନୈତିକତା ଏବଂ ମହତ୍ ଆଦର୍ଶ ଯୁଗେ ଯୁଗେ ଓଡ଼ିଆ ଜାତି ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଥିବ ।

# ଆମେରେ ଭାରତବାସୀ

**ସରିତା ସାହୁ**

ଫିରିଙ୍ଗି ଚାଲିଲେ ଫିରିଙ୍ଗି ବାଟରେ
ସ୍ୱାଧୀନ ହୋଇଲା ଦେଶ
ଅହିଂସାର ହେଲା ବିଜୟ ଏଠାରେ
ଜାଣିଗଲା ସାରା ବିଶ୍ୱ ।
ଜାତିର ଜନକ ଗାନ୍ଧିଜୀ ହୋଇଲେ
ନେହେରୁ ଧରିଲେ ଡୋରୀ
ଭାରତ ମାତାର ଜୟଗାନ କରି
ଚାଲିଲା ଜାତିର ତରୀ
ଆମ୍ବେଦକର ଗଢ଼ିତୋଳି ଦେଲେ
ଆମ ଦେଶ ସମ୍ବିଧାନ
ଯେଉଁ ସମ୍ବିଧାନ ବିଶ୍ୱ ଇତିହାସେ
ରଚିଲା ନିଜର ମାନ ।
କେତେ ଯେ ଦେଶର ଭଲ ଭଲ ନୀତି
ସବୁ ଏକଠାବ କରି
ଜନତାଙ୍କ ହିତ ପାଇଁ ଲେଖିଗଲେ
ଜ୍ଞାନୀ ମାନି ଗୁଣୀ ଧରି ।

ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବରେ
ଗଣା ହେଲା ଆମ ଦେଶ
ସାଧାରଣତନ୍ତ୍ର ଜନରାଜ୍ୟ ପୁଣି
ଗଣତନ୍ତ୍ରର ଦିବସ ।
ଜାନୁଆରୀ ମାସ ଛବିଶି ତାରିଖ
ଆମ ପାଇଁ ବଡ଼ଦିନ
ମିଳିମିଶି ଆମେ ପାଳୁଛେ ତାହାକୁ
ଗାଇକରି ଜାତିଗାନ ।
ତ୍ରିରଙ୍ଗା ପତାକା ଉଡେ ଫରଫର
ଆମେରେ ଭାରତବାସୀ
ଜାତୀୟ ଗାନକୁ ଗାଇ ଗାଇ ଯିବା
ସଭିଏଁ ଆମେରେ ମିଶି ।

ଗ୍ରାମ–ସରସଦା
ବରୁଣ୍ଡାଇ, ଯାଜପୁର


